# କଥାକାର ରାଜକିଶୋର

(ଜୀବନ ଆଲେଖ୍ୟ ଓ ସାହିତ୍ୟ ମୂଲ୍ୟାୟନ)

ପ୍ରକାଶକ :
ରାଜକିଶୋର ପଟ୍ଟନାୟକ ଜୟନ୍ତୀ ସମିତି
ତାରାଚାନ୍ଦ ପାଟଣା, କଟକ-୯,

ପ୍ରଥମ ପ୍ରକାଶ :
୮୧ତମ ଜୟନ୍ତୀ, ୮ ଏପ୍ରିଲ୍ ୧୯୯୭

ପ୍ରାପ୍ତିସ୍ଥାନ :
କଟକ ଲେଖକ ସହଯୋଗ ସମିତି ଲିଃ.
ରାଜାବଗିଚା, ଲେବର କଲୋନୀ, କଟକ-୯

ଅକ୍ଷର ସଜ୍ଜା ଓ ମୁଦ୍ରଣ :



କଲ୍ୟାଣୀ ନଗର, କଟକ-୧୩

ମୂଲ୍ୟ : ଟ. ୬୦/-
(ଷାଠିଏ ଟଙ୍କା ମାତ୍ର)

## KATHAKARA
## RAJKISHORE

(JIBANA ALEKHYA O SAHITYA MULYAYANA)

Published by :
**Rajkishore Pattanayak Jayanti Samiti**
Tarachand Patna, Cuttack-9

1st Publication : 8th April 1997

Price : **Rs. 60/-**
(Rupees Sixty Only)

# ଅଗ୍ରଲେଖ

କଥାକାର ରାଜକିଶୋର ପଟ୍ଟନାୟକଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ପ୍ରତାରିତ-ପୁରୁଷ କହିଲେ ଅତ୍ୟୁକ୍ତି ହେବ ନାହିଁ ଆଦୌ । ତମାମ୍ ଜୀବନ ତାଙ୍କର ଉତ୍ସର୍ଗୀକୃତ ସାହିତ୍ୟର ସର୍ଜନାରେ, ଓଡ଼ିଶାର ସମକାଳୀନ ସାରସ୍ୱତ ସଂସ୍କୃତିକୁ ଋଦ୍ଧିମନ୍ତ କରିବାରେ । କୃତି ଅଜସ୍ର – କିନ୍ତୁ ସେ· ତୁଳନାରେ ସ୍ୱୀକୃତି କାହିଁ ?

ଏତେବଡ଼ ଜଣେ ପ୍ରତିଭାଦୀପ୍ତ ସାହିତ୍ୟିକ ଆଉ କେଉଁଠି ଜନ୍ମ ହୋଇଥିଲେ ସେ ଭୂମି କୃତକୃତ୍ୟ ହୋଇଥାନ୍ତା ତାଙ୍କ ପାଇଁ । ମାତ୍ର ବଞ୍ଚି ଥାଉ ଥାଉ ଆମର ଏ ଓଡ଼ିଶା ଭୂଇଁରେ ତାଙ୍କୁ ଦିନ କାଟିବାକୁ ପଡ଼ିଛି – ବହଳ ବିସ୍ମୃତିର ବଳୟ ମଧ୍ୟରେ !

ଶେଷ ଜୀବନରେ ସେ ହୋଇ ପଡ଼ିଥିଲେ ନିତାନ୍ତ ସିନିକ୍ !

ଆଉ ଅଳ୍ପ ଦିନ ବଞ୍ଚି ରହିଥିଲେ ଆମେ ପାଳିଥାନ୍ତୁ ତାଙ୍କର ୮୧ ତମ ଜନ୍ମ ଜୟନ୍ତୀ । କିନ୍ତୁ ଏଥିପାଇଁ ଅପେକ୍ଷା ନଥିଲା ତାଙ୍କର । ସେ ଚାଲିଗଲେ ଆମକୁ ଫାଙ୍କି ଦେଇ – ଅଶୀ ବର୍ଷ ବୟସରେ ।

ରାଜକିଶୋର ପଟ୍ଟନାୟକ, ସାହିତ୍ୟ ଓ ଜୀବନ, ଏ ଉଭୟ କ୍ଷେତ୍ରରେ ଥିଲେ ଏକାନ୍ତ ନିଆରା ମଣିଷଟିଏ ।

ତାଙ୍କୁ ଚିହ୍ନିବାର ଖୁବ୍ ଡେରି କରିଦେଲୁ ଆମେ ।

ତାଙ୍କ ଜୀବନ-ଆଲେଖ୍ୟ ଓ ସାହିତ୍ୟ ମୂଲ୍ୟାୟନକୁ ନେଇ ଏ 'କଥାକାର ରାଜକିଶୋର' ପୁସ୍ତକର ପରିକଳ୍ପନା ଓ ପ୍ରସ୍ତୁତି । ଓଡ଼ିଆ ପାଠକସମାଜ ଏହାକୁ ଆନ୍ତରିକ ଭାବରେ ଗ୍ରହଣ କରିପାରିଲେ ଆମେ ଅନୁଗୃହୀତ ହେବୁ ନିଶ୍ଚୟ ।

– ସମ୍ପାଦନା ମଣ୍ଡଳୀ

# ସୂଚୀ ଓ ସୂଚନା

**ବ୍ୟକ୍ତି : ବ୍ୟକ୍ତିତ୍ୱ : ବ୍ୟକ୍ତିଗତ :**



**କୃତି :**



**ସ୍ମୃତି :**

କଥାକାର

# ରାଜକିଶୋର

(ଜୀବନ ଆଲେଖ୍ୟ ଓ ସାହିତ୍ୟ ମୂଲ୍ୟାୟନ)



ସମ୍ପାଦନା

ରବିନାରାୟଣ ମହାପାତ୍ର

ରଘୁନାଥ ମହାପାତ୍ର

ଗୋବିନ୍ଦ ଚନ୍ଦ୍ର ଚାନ୍ଦ

**ରାଜକିଶୋର ପଟ୍ଟନାୟକଙ୍କ ଜନ୍ମକୁଣ୍ଡଳୀ**



**ନିଜ ସମ୍ପର୍କରେ ନିଜେ**

# ଓଡ଼ିଆ ସାହିତ୍ୟର ଜଣେ ଯୁଗ-ପ୍ରବର୍ତ୍ତକ କଥାକାର

**ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କର ସଂକ୍ଷିପ୍ତ ପରିଚୟ**

(୧) ପିତା ⁄ ଶ୍ରୀବତ୍ସ ପଟ୍ଟନାୟକ ମୃତ୍ୟୁ । ୧୬-୮-୫୬

ମାତା ⁄ ଶ୍ରୀମତୀ ସୁନ୍ଦରମଣି ଦେଈ । ମୃତ୍ୟୁ ୪-୨-୬୯

ପିତା ଆଦିବାସ : ନୂଆଗାଁ (ଜଗନ୍ନାଥ ପ୍ରସାଦ) ଗଞ୍ଜାମ । ଜଗନ୍ନାଥ ହେଉଛି ମୋର ବାପାଙ୍କର ବାପାଙ୍କ ନାମ ।

ସଂପୂର୍ଣ୍ଣ ଠିକଣା : ତେଲଙ୍ଗା ବଜାର, କଟକ-୯

ଘର କିଣା—୧୯୧୬ । ସେଇ ଭଙ୍ଗା ଘରେ ରହଣି । ଭଙ୍ଗା ଟିଣ ଫାଟକରେ ଲେଖା ଅଛି କୁକୁରଙ୍କୁ ସାବଧାନ । ଅଛନ୍ତି ଗୋଟିଏ ବୁଲା କୁତୀ ଓ ତାହାର ଶେଷ ଛୁଆ ଅନ୍ଧୁଣୀ କୁତୀ ।

(୨) ଜନ୍ମ : ୬୭ ଗ୍ରେ ଷ୍ଟ୍ରୀଟ୍, ହାତୀ ପୁକୁର; କର୍ଣ୍ଣୱାଲିସ ଷ୍ଟ୍ରିଟ ଛକ । ସେଇ ଘରେ ଯୋଗୀ ଅରବିନ୍ଦ ଆତ୍ମଗୋପନ କରିଥିଲେ । କଲିକତାରେ ଜନ୍ମ ୮-୪-୧୯୧୭ ବୈଶାଖ କୃଷ୍ଣ ପ୍ରତିପଦା ରବିବାର ।

(୩) ପଢ଼ାପଢ଼ି: ସାଧାରଣ । ବି.ଏସ୍‌ସି. ବି.ଏଲ. ୧୯୩୨ ମାଟ୍ରିକ୍, ୧୯୩୬ ଗ୍ରାଜୁଏଟ୍ ।

(୪) ବୃତ୍ତି : ଓକିଲ । ୧୯୪୦ରୁ ଅଣଚାଶ ବର୍ଷ ଚାଲିଛି ।

(୫) ସାମ୍ବାଦିକତା ଇଂରାଜୀ : ବିଶେଷ ଭାବରେ New Orissa,

(ପ୍ରୋ : ଶ୍ରୀ ମଦନ ଲାଲ ଯାଜୋଡ଼ିଆ ଓ ସଂପାଦକ ଶ୍ରୀ କେ. ଏନ୍. ଆଚାରୀ (N. Krishna Swamy ଙ୍କର ବାପା) । ତା'ପରେ Orissa Times ତା'ପରେ ୧୯୪୭ ରୁ ୧୯୫୨ । ୧୯୫୨ରେ ନିଜର ଇଂରାଜୀ ପାକ୍ଷିକ Scrutiny । ଇଏ ବନ୍ଦ ହୋଇ ସାପ୍ତାହିକ ହିସାବରେ ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓ ଓ ଶ୍ରୀ ହରିହର ପଟେଲଙ୍କର ସହଯୋଗରେ ୧୯୬୪-




ରାଜକିଶୋର ପଟ୍ଟନାୟକଙ୍କ ଜନ୍ମକୁଣ୍ଡଳୀ



## ନିଜ ସମ୍ପର୍କରେ ନିଜେ

# ଓଡ଼ିଆ ସାହିତ୍ୟର ଜଣେ ଯୁଗ-ପ୍ରବର୍ତ୍ତକ କଥାକାର

### ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କର ସଂକ୍ଷିପ୍ତ ପରିଚୟ

(୧) ପିତା ୰ ଶ୍ରୀବଂଶ ପଟ୍ଟନାୟକ ମୃତ୍ୟୁ । ୧୬-୮-୫୬

ମାତା ୰ ଶ୍ରୀମତୀ ସୁନ୍ଦରମଣି ଦେଈ । ମୃତ୍ୟୁ ୪-୨-୬୯

ପିତା ଆଦିବାସ : ନୂଆଗାଁ (ଜଗନ୍ନାଥ ପ୍ରସାଦ) ଗଞ୍ଜାମ । ଜଗନ୍ନାଥ ହେଉଛି ମୋର ବାପାଙ୍କର ବାପାଙ୍କ ନାମ ।

ସଂପୂର୍ଣ୍ଣ ଠିକଣା : ତେଲଙ୍ଗା ବଜାର, କଟକ-୯

ଘର କିଣା—୧୯୧୬ । ସେଇ ଭଙ୍ଗା ଘରେ ରହଣି । ଭଙ୍ଗା ଟିଣ ଫାଟକରେ ଲେଖା ଅଛି କୁକୁରଙ୍କୁ ସାବଧାନ । ଅଛନ୍ତି ଗୋଟିଏ ବୁଲା କୁତୀ ଓ ତାହାର ଶେଷ ଛୁଆ ଅନ୍ଧୁଣୀ କୁତୀ ।

(୨) ଜନ୍ମ ୬୭ ଗ୍ରେ ଷ୍ଟ୍ରୀଟ୍, ହାତୀ ପୁକୁର, କର୍ଣ୍ଣୱାଲିସ ଷ୍ଟ୍ରିଟ ଛକ । ସେଇ ଘରେ ଯୋଗୀ ଅରବିନ୍ଦ ଆତ୍ମଗୋପନ କରିଥିଲେ । କଲିକତାରେ ଜନ୍ମ ୮-୪-୧୯୧୭ ବୈଶାଖ କୃଷ୍ଣ ପ୍ରତିପଦା ରବିବାର ।

(୩) ପଢ଼ାପଢ଼ି: ସାଧାରଣ ବି. ଏସସି. ବି. ଏଲ. ୧୯୩୨ ମାଟ୍ରିକ୍, ୧୯୩୬ ଗ୍ରାଜୁଏଟ୍ ।

(୪) ବୃତ୍ତି : ଓକିଲ । ୧୯୪୦ରୁ ଅଣଚାଶ ବର୍ଷ ଚାଲିଛି ।

(୫) ସାମ୍ବାଦିକତା ଇଂରାଜୀ : ବିଶେଷ ଭାବରେ New Orissa,

(ପ୍ରୋ : ଶ୍ରୀ ମଦନ ଲାଲ ଯାଜୋଡ଼ିଆ ଓ ସଂପାଦକ ଶ୍ରୀ କେ. ଏନ୍. ଆଚାରୀ (N. Krishna Swamy ଙ୍କର ବାପା) । ତା'ପରେ Orissa Times ତା'ପରେ ୧୯୪୭ ରୁ ୧୯୫୨ । ୧୯୫୨ରେ ନିଜର ଇଂରାଜୀ ପାକ୍ଷିକ Scrutiny । ଇଏ ବନ୍ଦ ହୋଇ ସାପ୍ତାହିକ ହିସାବରେ ବଲାଙ୍ଗୀର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓ ଓ ଶ୍ରୀ ହରିହର ପଟେଲଙ୍କର ସହଯୋଗରେ ୧୯୬୪-

୧୯୬୬। ଇଂରାଜୀ ସାମ୍ଭାଦିକତା ଏହିପରି ଭାବରେ ଛିଣ୍ଡାକଟା ହୋଇ ୧୯୪୪-୬୬।

(୬) ସାମ୍ଭାଦିକତା ଓଡ଼ିଆ : ପତ୍ରିକା (ସାମୟିକ)। ଶ୍ରୀ କାହ୍ନୁ ଚରଣ ମହାନ୍ତି, ଶ୍ରୀ ଗୋପୀନାଥ ମହାନ୍ତି, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ଗୋଦାବରୀଶ ମହାପାତ୍ର (ନିଆଁଖୁଣ୍ଟା) ଇତ୍ୟାଦିଙ୍କ ସହିତ। ଏହାଛଡ଼ା ମିନି ଓଡ଼ିଆ ଦୈନିକ ପାଠକକ୍କ ୧୯୬୭ ଭୋଟ ଯାଏ – କେତେବେଳେ ନିୟମିତ ଓ ଅନିୟମିତ ହୋଇ ବାହାରିଛି।

(୭) ସାମ୍ଭାଦିକତା (ଆଇନ) : Law Fortnightly ଓ ଆମର ଆଇନ ଇତ୍ୟାଦି। ବିଶେଷ ଲୋକପ୍ରିୟ ହୋଇ ନାହିଁ।

(୮) ପ୍ରଥମ ଲେଖା : ମ୍ୟୋର ଚିଠି ପାଇଲ। ମାସିକ ନବଭାରତରେ ୧୯୩୭ରେ। ଏହା ପୂର୍ବରୁ ସିନ୍ଦୂରଗାର୍ଣ୍ଣି ଉପନ୍ୟାସ ମାସିକ ସହକାରରେ। ବହି ୧୯୩୮। ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଓ ରାଜକିଶୋର ପଟ୍ଟନାୟକଙ୍କ ୧୯୩୮ର ନାଟିକା ଲେଖା ଭଲ ପାଇବାର ଶେଷ କଥା।

(୯) ଶେଷ ଲେଖା : ଗଛ ଲଟାର ଆତ୍ମା (୧୯୮୭), ପ୍ରକାଶକ ମହତାବ ମିସନ, କଟକ ଓ ଓଡ଼ିଆରେ ଉପନିଷଦ ଭାଗ ଛପା, ମାର୍ଚ୍ଚ ୧୯୮୮।

(୧୦) ଲେଖାବନ୍ଦ : ପ୍ରୀତିର ବଣିଜ ଉପନ୍ୟାସ ପରେ ପ୍ରାୟ ଦଶ ବର୍ଷ।

(୧୧) କେଉଁ ବିଷୟରେ ଅଳ୍ପ ବହୁତ ଜ୍ଞାନ ଅଛି ?
ସାମୁଦ୍ରିକ, ଲେଖାରୁ ବିଚାର, ଆକୃତିରୁ ବିଚାର, ଭବିଷ୍ୟତ ବାଣୀ ସମୀକ୍ଷା, ଇତିହାସ ଇତ୍ୟାଦି ଅନେକ ବିଷୟରେ ଅଳ୍ପ ବିଦ୍ୟା ଭୟଙ୍କର।

(୧୨) ଜୀବନର ପ୍ରଧାନ ଶିକ୍ଷା

(କ) ଯୋଗ୍ୟତା ଗୋଟିଏ ଶବ୍ଦ। ଏହାର ବ୍ୟବହାର ହେଉଛି ଖୁସାମଦ ଦ୍ୱାରା।

(ଖ) ଯୋଗ୍ୟତା ସହିତ ଧନର ସଂପର୍କ ନାହିଁ। ଆୟ ସହିତ ଧନର ସଂପର୍କ ନାହିଁ। ଆୟ ସହିତ ଯୋଗ୍ୟତାର ବନ୍ଧନ ନାହିଁ।

(ଗ) ଯୋଗ୍ୟତା ସହିତ ଲୋକ-ସ୍ୱୀକୃତି, ରାଷ୍ଟ୍ର-ସ୍ୱୀକୃତି ଓ ପରିବାରର ସ୍ୱୀକୃତିର ସମ୍ବନ୍ଧ ନାହିଁ। ଯୋଗ୍ୟତା ଗୋଟିଏ ବହୁମୁଖୀ ଅର୍ଥର ଶବ୍ଦ। ହୋଇଗଲା ପରେ ଯୋଗ୍ୟତାକୁ ଆଣି ଲୋକେ ଥାପିଥାନ୍ତି।

(ଘ) ବଞ୍ଚିବା ପାଇଁ ଯୋଗ୍ୟତା ନୁହେଁ ଅନ୍ୟର ଦୟା ବେଶି ଦରକାର।



(୧୩) ମୁଁ ଭାଗ୍ୟବାନ୍ ନା ଭାଗ୍ୟହୀନ ?

ଏହାର ଉତ୍ତର ହଉଛି ଯେ ମୁଁ ଜଣେ ଅତ୍ୟନ୍ତ ଭାଗ୍ୟବାନ୍ ଲୋକ । ଏତେ ସହଜରେ ଏତେ ସ୍ୱୀକୃତି ଏଇ ଅନଗ୍ରସର ମଫସଲ ଛଡ଼ା ଅନ୍ୟତ୍ର ସମ୍ଭବ ହୋଇ ନଥାନ୍ତା । ମୋ ପରି ଅସଂଖ୍ୟ ଭାଗ୍ୟବାନ୍ ୧୯୪୭ ରୁ ୧୯୭୪ ମଧ୍ୟରେ ଓଡ଼ିଶାରେ ଦେଖାଦେଇଛନ୍ତି । ସମୂହ ଭାବରେ ଓଡ଼ିଶାରେ ଓଡ଼ିଆଙ୍କର ସୌଭାଗ୍ୟର ସୂର୍ଯ୍ୟ ଅସ୍ତାଚଳକୁ ଚାଲିଲେଣି । '୧୯୪୭' ପରେ ଜନ୍ମ ହୋଇଥିବା ଲୋକେ ବୁଝିବାକୁ ଆରମ୍ଭ କଲେଣି ।

(୧୪) ଓଡ଼ିଆ ସାହିତ୍ୟରେ ଗତ ପଚାଶ ବର୍ଷରେ ଶ୍ରେଷ୍ଠ ସାହିତ୍ୟିକ କିଏ ?

ମୋ' ବିଚାରରେ ଡକ୍ଟର ଗୋପୀନାଥ ମହାନ୍ତି ଥିଲେ । ତାଙ୍କର ଦୁର୍ଭାଗ୍ୟକୁ ସେ ତଳକୁ ଚାଲିଗଲେ ତାଙ୍କର କିଛି ଦୋଷ ପାଇଁ । ପ୍ରତିଦ୍ୱନ୍ଦ୍ୱିତା ଅଭାବରୁ ନିଜେ ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟିକ ହେବାର ସୌଭାଗ୍ୟ ପାଇଲି । କର୍ମର ଅର୍ଜନ ନୁହେଁ । ଇଏ ବିଧାତାଙ୍କର ଦାନ ।

ମୋର ମୃତ୍ୟୁର ଅନ୍ତତଃ ଦଶ ବର୍ଷ ପରେ ଏଇ ନାମରେ ଓଡ଼ିଆ ସାହିତ୍ୟରେ ଯୁଗ ଚାଲିବ । କାରଣ ତଳକୋଟିଆ ଓକିଲ । ମଫସଲିଆ ଓକିଲ । ସାମ୍ବାଦିକତା, ସ୍ପୋର୍ଟସ । ସାରା ଭାରତର ଅଳ୍ପ ବହୁତ ପରିଚିତି ଥାଇ ଏକସ୍ତରି ବର୍ଷ ପାର ହୋଇ କଲମ ଧରିବାର ସାମର୍ଥ୍ୟ ଥିବା ଓଡ଼ିଆ ଲେଖକ ନାହାନ୍ତି ।

(୧୫) ସାହିତ୍ୟ ପୁରସ୍କାର ମିଳିଲା ନାହିଁ କାହିଁକି ?

ଡକ୍ଟର ହରେକୃଷ୍ଣ ମହତାବଙ୍କର ସାହିତ୍ୟ ପ୍ରତିଭାକୁ ୧୯୪୫ରେ ସ୍ୱୀକୃତି ଦେଇ ନଥିବାରୁ । ବିଷୁବର ଦଶ ବର୍ଷ—ଦୁଇଟି ଦଶନ୍ଧିର ଦୁଇ ଖଣ୍ଡ ବହି—ଦେଖିଲେ କିଛିଟା ଜାଣି ହେବ ।

(୧୬) ସାମ୍ବାଦିକତା ପୁରସ୍କାର ମିଳିଲା ନାହିଁ କାହିଁକି ?

୧-୪-୩୭ ପରେ Statesman ପାଇଁ ଶ୍ରୀ ଏନ୍. ଆର୍. ସ୍ୱାମୀଙ୍କ ସହିତ କିଛି ପ୍ରତିଦ୍ୱନ୍ଦ୍ୱିତା ଥିଲା । ସେ ମୋଠାରୁ ଯୋଗ୍ୟ । ତେଣୁ ଜଣେ ଅନଗ୍ରସର ଓଡ଼ିଆ ଲୋକ ଏତେ ଆଶା କରିବା ଅନୁଚିତ ।

ମହତାବବାବୁ କୌଣସି କାରଣରୁ ଶ୍ରୀ ବିଶ୍ୱନାଥ ରଥଙ୍କୁ ଉଠାଇଲେ । ସେ ଯୋଗ୍ୟ ଲୋକ । ଚାକିରି ରଖି ପାରିଲେ ।

କିନ୍ତୁ ପୁରସ୍କାର ଓ ଯୋଗ୍ୟତା ପରସ୍ପର ବନ୍ଧୁ ନୁହନ୍ତି । ଏଇ ଈଶ୍ୱରଙ୍କର କାମ ।





(୧୭) ଆଇନ କ୍ଷେତ୍ରରେ ପୁରସ୍କାର ମିଳିଲା ନାହିଁ କାହିଁକି ?

ପ୍ରଥମ ଓଡ଼ିଆ ଜଜ୍‌ଙ୍କର ମତାମତ ପ୍ରତି ଯେଉଁମାନେ ନଜର ଦେଉଥିଲେ ସେମାନେ ଆଜି ଉପଦେଶ ଦେଉଛନ୍ତି । ମଫସଲରେ ଥିବା ଲୋକ ବେଶି ଚାତର କରିବା ଅନୁଚିତ୍ । ଏତିକି ମୁଁ ବୁଝି ନଥିବାରୁ ଶ୍ରୀ ବୀର କିଶୋର ରାୟ, ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଓ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମତେ ଆଡ଼େଇ ଦେଲେ । କିନ୍ତୁ ସେମାନେ ଗୋଟିଏ ବିଶେଷ ଉପକାର କରିଗଲେ । ନିଜର ଧାରଣା କେତେ ଭୁଲ୍ ବୁଝାପଡ଼ିଲା । ଗୋଟିଏ ଗୋଟିଏ ବିଷୟରେ ସ୍ୱଷ୍ଟ ଉତ୍ତର ପାଇବା ପାଇଁ ଗୋଟିକରୁ ଅଧିକ ଜଜ୍ଜ ଦରକାର ହୋଇ ନାହିଁ । ଇଏ ହେଉଛି ପରମ ସୌଭାଗ୍ୟ ।

(୧୮) ଆଉ ଥରେ ଜନ୍ମ ନେଲେ କେମିତି ଚଳିବା ଉଚିତ୍ ହେବ ?

ଠିକ୍ ଏହି ପରି । କିନ୍ତୁ ନିଜକୁ ଶକ୍ତି ମୂଳରୁ କମାଇ ଦେବା ଦରକାର । ପ୍ରତିଭାର ପରମ ବନ୍ଧୁ ହେଉଛି ଦାରିଦ୍ର୍ୟ । ପ୍ରତିଭାର ପରମ ଶତ୍ରୁ ହେଉଛି ଅଦରକାରୀ ଧନ ।

ଏଥି ସହିତ ଜଜ୍‌ଙ୍କର ନିମିତ୍ତଭିତ୍ତି କଲେକ୍ଟରେଟ୍ ଓ ଡିଷ୍ଟ୍ରିକ୍ଟ ବାର୍‌ର କେତେକ ମତାମତର ସଂକ୍ଷିପ୍ତ ସାର ଦେଖିଲେ ଗୋଟିଏ ବିଷୟ ଆସେ—

ଲୋକଟା କ୍ରାକ୍ ।

ଏହି କଥା ମହାତ୍ମାଗାନ୍ଧୀ ହରିଜନ ପତ୍ରିକାରେ ବୋଧ ହୁଏ ୧୯୪୩ ଆଖପାଖରେ ଲେଖିଥିଲେ :

I do not know whether I am a crack or not, but I attract cracks.

କ୍ରାକ୍ ଆଉ ବୁଦ୍ଧିଆ ପାଗଳ ଅଲଗା । ଓଡ଼ିଶାରେ ଯିଏ କ୍ରାକ୍, ବଡ଼ ଜାଗାରେ ସେ ଫୁଲ୍ ।

ଓଡ଼ିଶା ହେଉଛି ଏହି ପ୍ରକାରର ମତାମତର ମୂଳକ ।

(୧୯) ଜୀବନର ବିଶେଷ ଘଟଣା କ'ଣ ?

(କ) ଯିଏ ୧୯୪୭ରୁ ଇନକମ୍ ଟିକସ୍ ଦେଇଥିଲେ ସେ ୧୯୮୮ରେ ଅନ୍ୟର ଦାନ ଉପରେ ବଞ୍ଚୁଛି ।

(ଖ) ଯିଏ ୧୯୪୮ରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପାଇଁ ପ୍ରାର୍ଥୀ ହୋଇଥିଲା ସେ ୧୯୮୮ରେ ଜଣେ ଅଧା ପାଠୁଆ ।





(ଗ) ଯିଏ ୧୯୬୫ରେ ରାଜ୍ୟସଭା ପାଇଁ ପ୍ରାର୍ଥୀ ଥିଲା ସେ ୧୯୮୮ରେ ଓଡ଼ିଶା ରାଜନୀତିରେ ଟହଲିଆ ବି ନୁହେଁ ।

(ଘ) ଯିଏ ୧୯୩୬ ଡିସେମ୍ବର କୋଡ଼ିଏ ନିର୍ବାଚନରେ କଟକରୁ ଅଂଶ ଗ୍ରହଣ କରିଥିଲା ସେ ପରେ ଏଇ ଦିଗରେ ଶୂନ୍ୟ ହୋଇଗଲା ।

(ଙ) ୧୯୪୯-୫୧, ୧୯୫୧-୫୩, ୧୯୫୩-୫୫, ୧୯୫୫-୫୭ ଯାହାର ଗଳ୍ପ ବହି ତୁଠପଥର, ପଥିକି, ଶାଳଗ୍ରାମ ଓ ନିଶାଣ ଖୁଣ୍ଟ ମାଟ୍ରିକୁଲେସନ ଓ ଆଇ.ଏ.ରେ ଅତିରିକ୍ତ ପାଠ୍ୟ ଥିଲା ସେ ୧୯୮୮ରେ ଓଡ଼ିଆ ସାହିତ୍ୟର ଗୋଟିଏ ଭଲ ପାଠକ ବି ନୁହେଁ ।

ଏଇ ଯାହା ଯେପରି ଘଟିଛି । ସେଥିରୁ ଭବିଷ୍ୟତରେ ଅନେକ ପ୍ରତିଭାର ପ୍ରତିଶ୍ରୁତକୁ ଧରି ଭାବିଲେ ଜାଣିବେ ଯେ ଯୋଗ୍ୟତା ଓ ପ୍ରତିଭା ଓ ସ୍ୱୀକୃତି ଓ ଧନ ହେଉଛି ସଂସାରର ଗୋଟିଏ ପ୍ରହେଳିକା, ପାଣି ଫୋଟକା ଉପରେ ଇନ୍ଦ୍ରଧନୁ ପରି । ମଫସଲରେ ସ୍ୱପ୍ନ ହେଉଛି ବିଶେଷ ଘଟଣା ।

(୧୦) ଓଡ଼ିଆ ସାହିତ୍ୟର ଭବିଷ୍ୟତ କ'ଣ ?

ଗତି ରହିବ । କିନ୍ତୁ ଗଳ୍ପକୁ । ସାହିତ୍ୟ Cosmetic Ornament ପିନ୍ଧିବ । ବହି ଦୋକାନୀ ପ୍ରଚ୍ଛଦପଟ୍ଟ ଦେଖିକରି ଓ ଅଳଙ୍କାର କିଣିବେ । ତେଣୁ ଚିତ୍ର କର, ବ୍ଲକ-ମେକର, କ୍ୱାଲିଟି ପ୍ରିଣ୍ଟର ଓ ବାଇଣ୍ଡର ଉନ୍ନତି କରିବେ । ଲେଖା ବା ସାହିତ୍ୟ ହେବ ବନସାଇ ସାହିତ୍ୟ, ମିନି ସାହିତ୍ୟ ହେଲା ସମ୍ପାଦନା କିନ୍ତୁ ବନସାଇ ହେଲା ସଂକ୍ଷିପ୍ତୀକରଣ କାର୍ଯ୍ୟ ।

କିନ୍ତୁ ଓଡ଼ିଆ ସାହିତ୍ୟକୁ ଟି.ଭି, ସାଙ୍ଗରେ ପାରିବ ନାହିଁ । କାରଣ ଟି.ଭି.ରେ ରୂପ ଲାବଣ୍ୟ ଓ କଣ୍ଠ ସ୍ୱର ରହିଛି । ଓଡ଼ିଆ ସାହିତ୍ୟରେ ଚିନ୍ତା ଓ ଚେତନାର ସ୍ପର୍ଶ ରହୁ ନାହିଁ । ନକଲ କରିବାର ଯୋଗ୍ୟତା ବେଶୀ ହେଉଛି । ଫଳରେ ପ୍ରଚାର-ଧର୍ମୀ ଚିନ୍ତାଧାରା ଆସିବ ।

ଓଡ଼ିଆମାନେ ଯୁକ୍ତି-ସିଦ୍ଧ ଓ ଯୁକ୍ତି-ଯୁକ୍ତ ଅହଂକାର ହରାଇବାର ଆଶଙ୍କା ଥିବାରୁ ଓଡ଼ିଆ ସାହିତ୍ୟ ଅନ୍ତତଃ ଗୋଟିଏ ପୀଢ଼ି ଶୋଇ ଯିବ ।

୧୯୭୪ ପରେ ଜନ୍ମ ହେଉଥିବା ଓଡ଼ିଆମାନେ କଲମଧାରୀ ହେଲେ ପୁଣି ଥରେ କିଛି ଉନ୍ନତି ଦେଖାଯିବ ।



ରାଜକିଶୋର ପଟ୍ଟନାୟକ

୫-୪-୮୮





ସ୍ୱେଚ୍ଛାକୃତ ସ୍ୱକୀୟ ଅଭିନନ୍ଦନ

# ମୋ' ପେଁକାଳି ବଜେଇ ଦିଅ

## — ସ୍ୱୟଂ-ସଂବର୍ଦ୍ଧନା —

(ତା ୪.୧୨.୯୬ରେ ଲିଖିତ ସ୍ୱୟଂ ସମ୍ବର୍ଦ୍ଧନା ସମ୍ପର୍କରେ ରାଜକିଶୋରଙ୍କ ଏକ ମନନଶୀଳ ଆଲେଖ୍ୟ)

ନିଜେ ନିଜକୁ ଅଭିନନ୍ଦନ ଜଣାଇବା ମଣିଷର ଗୋଟିଏ ଚିରାଚରିତ ପ୍ରବୃତ୍ତି । ପଡ଼ାପଡ଼ୋଶୀ ଓ ବନ୍ଧୁ ମିତ୍ରଙ୍କର ନିନ୍ଦା ଓ ପ୍ରଶଂସାକୁ ଅଧିକ ଗୁରୁତ୍ୱ ଦିଆ ହେଉଥିବାରୁ ମଣିଷ ଏହି ମଣିଷ-ସୁଲଭ ପ୍ରବୃତ୍ତିକୁ ଚରିତାର୍ଥ କରିଥାଏ।

କିନ୍ତୁ ଦିନେ ଦିନେ ଏହି ଉତ୍ସ ଫିଟି ଯାଏ । କେଉଁଠି ପାଇଁ ମୋର ପୁଅ ଆଉ ଝିଅ ତାଙ୍କର ସ୍କୁଲରେ ଚାନ୍ଦା ଦେଲେ । ଭାବପ୍ରବଣ ହୋଇ ଦେଇ ଦେଲେ କି କ୍ଲାସର ମାଷ୍ଟ୍ରଙ୍କର ଇଙ୍ଗିତ ବା ନିର୍ଦ୍ଦେଶରେ ଦେଲେ ସେହି କଥା ପ୍ରକାଶ ପାଏ ନାହିଁ । କିନ୍ତୁ ଚାନ୍ଦା ଦେବା ଲୋକଙ୍କର ତାଲିକାରେ ସେହି ପଢ଼ୁଆ ପିଲାଙ୍କର ନାଁ ଉଠେ ।

ଏବେ ତ ହେଲା ଟାଉଟରୀ, ଯୁଝା । ବାପା ତାଙ୍କର ଅଫିସରୁ ଆସି ଶୁଣିଲେ ଯେ ତାଙ୍କର ବାଇଆ ଆଉ କୁନି ଦି' ଟଙ୍କା ଚାନ୍ଦା ଦେଇଛନ୍ତି । ସେଇଠୁ ସେ କହିଲେ— ହେଲା । ମାଷ୍ଟ୍ର ଚାହିଁଗଲେ ନା ? ଭାରି ବୁଦ୍ଧିଆ ବୋଲି ପିଲାଙ୍କୁ ଭେଣ୍ଡି ଦେଲେ । ହଉ— ହଉ । ଆମେ କଣ ଓଲୁ ?

ଧାଇଁଲେ ଖବର କାଗଜ ଅଫିସକୁ ଏରାଧରି କରିବା ପାଇଁ । ଖବର ଛପା ହେଲା ଯେ ଅମୁକ ବାବୁଙ୍କର ଅମୁକ କମ୍ପାନୀର କର୍ମଚାରୀଙ୍କର ଦୁଇଟି ପିଲା ନିଜର ଜଳଖିଆ ପଇସାରୁ କାଟି ଅମୁକ ବିଷୟ ପାଇଁ ଚାନ୍ଦା ଦେଇଛନ୍ତି । ଇଏ ହେଲା ଗୋଟିଏ ପ୍ରକାରର ସ୍ୱୟଂ-ସଂବର୍ଦ୍ଧନା । ଅମୁକ ବାବୁ ନିଜେ ନିଜକୁ ସଂବର୍ଦ୍ଧିତ କରେଇ ନେଲେ ।

ଆମର ସମାଜ ମଧ୍ୟ ଏହାକୁ ସ୍ୱୀକାର କରେ—ପିଲାଟି ଜନ୍ମ ହେଲା ଦିନୁ । ତାହାର ଏକୋଇଶିଆ ଓ ବାରରାତ୍ରର ଭୋଜୀଭାତ ମଧ୍ୟ ବାପମାନଙ୍କର ନିଜର ଖର୍ଚ୍ଚରେ ଘଟାଟୋପରେ ନିଜକୁ ଅଭିନନ୍ଦିତ କରିବାର ସ୍ଥାୟୀ ଯୋଜନା ।

ଏଥିରେ ଭାଗ ନେବାକୁ କେହି କେବେ ଇତସ୍ତତ କଲାପରି ଶୁଣାଯାଏ ନାହିଁ ।



ହାତରେ ଛୋଟ ସୁନା ଗୋଠ, ରୂପା ଚାମୁଚ, ମୋଜା, ପୋଷାକ'ଆଉ ବେବୀ-ସେଟ୍ ଧରି ବେଶ୍ ଆସି ପହଞ୍ଚନ୍ତି । ଓଠରେ ଥାଏ ହସ ଆଉ କଣ୍ଠରେ ଥାଏ ଆନନ୍ଦ । ବାପ ମା' ପଛକୁ ନ ହଟି ପିଲାକୁ ଆଣି ବୁଲେଇ ବୁଲେଇ ଯାନ୍ତି । ନିଜକୁ ସାବାସ୍ ଦେବାର, ନିଜର ଅହଙ୍କାର ପ୍ରଦର୍ଶନ ପାଇଁ ।

ସେମିତି ଆମରି ନେତାଙ୍କର ଇଙ୍ଗିତରେ ତାଙ୍କର ପାଳିଆମାନେ ନେତାଙ୍କ ପାଇଁ ରାସ୍ତାରେ ତୋରଣ କରନ୍ତି । ଚାନ୍ଦୁଆ ଟାଣନ୍ତି । କର୍ପୁରମାଳ ପିନ୍ଧାନ୍ତି । ମୋଟରେ ସେମାନେ ତାଙ୍କୁ ନିଜର ପ୍ରାଣ ଖୋଲା ସଂବର୍ଦ୍ଧନା ଜଣାନ୍ତି । ପ୍ରକୃତରେ ଏତକ ବି ହେଉଛି ଗୋଟିଏ ପ୍ରକାରର ସ୍ୱୟଂ ସମ୍ବର୍ଦ୍ଧନା ।

ସମାଜ ଓ ରାଜନୀତି କ୍ଷେତ୍ରରେ ଏହି ସ୍ୱୟଂ-ସଂବର୍ଦ୍ଧନା ନାନପ୍ରକାରର ରୂପ ନେଇ ଦେଖା ଦେଉଛି । ପ୍ରକୃତ କଥା ଏହା ଅଧିକାଂଶ ସମ୍ପୃକ୍ତଙ୍କୁ ଜଣା । କିନ୍ତୁ କେହି ବାହାରେ ସେଇଟା କହିଲେ—ନିନ୍ଦୁକ ହୁଣ୍ଡା ବିରୋଧୀ ଓ ହାଉଳି ଆଖ୍ୟା ପାଇବେ ବୋଲି ପାଟି ବୁଜି ରହନ୍ତି ।

ସେଇଠୁ ଆସିଲା ଗୋଟିଏ ଅନୁଜ୍ଜ୍ୱଳ ଅସ୍ପୃଷ୍ଟ ଓ ଅଣମୁଖ୍ୟ ବିଭାଗ—ଏଇଟା ହେଲା କଳା ବିଭାଗର ସାହିତ୍ୟ ଅଂଶ । ସାହିତ୍ୟିକମାନେ ସବୁବେଳେ କାଳର ମୂଲ୍ୟାୟନ ଉପରେ ଆସ୍ଥା ରଖନ୍ତି ବୋଲି କହି ହୁଅନ୍ତି । ସେମାନେ କ'ଣ ସ୍ୱୟଂ ସବର୍ଦ୍ଧନାକୁ ଆଦର କରିପାରିବେ ?

ପ୍ରକୃତରେ ସେମାନେ କ'ଣ କରନ୍ତି ବା କରିଥାନ୍ତି ଜାଣିବାକୁ ଚାହିଁଲେ ସେହି ସମ୍ବାଦ ପତ୍ରରେ ଆଖି ବୁଲାଇବାକୁ ହେବ । ଅମୁକଙ୍କର ପୁଅ ମାଇନର ପରୀକ୍ଷାରେ ଅମୁକ ଥାନା, ସବଡ଼ିଭିଜନ୍, ଜିଲ୍ଲା ବା ଡିଭିଜନ୍‌ରେ ଦ୍ୱିତୀୟ ହେଲେ । ଅମୁକଙ୍କର ପୁଅ ବା ଜୋଇଁ ସରକାରୀ ବୃତ୍ତିରେ ଯୁକ୍ତରାଷ୍ଟ୍ର ଆମେରିକା ଗଲେ । ଏହି ଓଡ଼ିଆ ଯୁବକ ଓ ଓଡ଼ିଆ ଛାତ୍ରଙ୍କର କୃତିତ୍ୱ ପ୍ରଦର୍ଶନ ଓ ବାହାଦୁରି ପ୍ରଚାରର କଥା କହିଲେ ଶେଷ ନାହିଁ । ତେଣୁ ଏଥି ଭିତରେ ସଂପୃକ୍ତ ହେଉଥିବା ସାହିତ୍ୟିକ ବନ୍ଧୁମାନେ ଏହି ସ୍ୱୟଂ ସମ୍ବର୍ଦ୍ଧନାରେ ଆସ୍ଥାବାନ୍ ନୁହନ୍ତି—ଏକଥା କେମିତି କୁହାଯିବ ?

କୁହାଯାଇ ପାରନ୍ତା ଯଦି ସେମାନେ ଚା' ଜଳଖିଆ ଦେଇ, ଚାଟୁଗାନ କରି ସଭାସମିତି ଇତ୍ୟାଦିର ସଭାପତି, ଉଦ୍‌ଘାଟକ ଓ ମୁଖ୍ୟବକ୍ତା ବା ମୁଖ୍ୟ ଅତିଥି ହେବାରେ ସମୟ ଶକ୍ତି ନଷ୍ଟ ନ କରନ୍ତେ । ଲୋକେ କହୁଛନ୍ତି ଯେ ସେହିପରି ହୁଏ । ତେଣୁ ସାହିତ୍ୟିକମାନେ ମଧ ସ୍ୱକୀୟ ଓ ସ୍ୱେଚ୍ଛାକୃତ ସଂବର୍ଦ୍ଧନା ଘଟାଇବାରେ ନିରଳସ ଅଧବସାୟୀ ।

ତେବେ ସ୍ୱୟଂ ସମ୍ବର୍ଦ୍ଧନାକୁ ସେମାନେ କାହିଁକି ପ୍ରକାଶ୍ୟରେ ଗ୍ରହଣ କରୁନାହାନ୍ତି ?

ତାହାର ଅନ୍ତରେ ଉତ୍ତର ହେଲା ଯେ ସେମାନେ ଅନାଗତ କାଳର ମୂଲ୍ୟାୟନ ପାଇଁ ନେପଥ୍ୟରେ ମାଲମସଲା, ଶବ୍ଦ ଆଲୋକ ଖଞ୍ଜି ଦେଇଗଲେ । ଆଉ ପୁଣି ନିଜକୁ ନିଜେ ବର ବେଶରେ ସଜାଇ ନିମନ୍ତ୍ରଣ କରି କେମିତି ଯିବେ ? ଲାଜ ମାଡୁଛି ।

ଏଥିପାଇଁ ସ୍ୱୟଂ ସଂବର୍ଦ୍ଧନାର କେବେ କେମିତି ପ୍ରୟାସ ଯଦି ସାହିତ୍ୟିକଙ୍କ ତରଫରୁ ହୁଏ ତେବେ ସେମାନେ ବିରକ୍ତ ହୋଇ ଉଠନ୍ତି । କାରଣ ଏହି ଶ୍ରେଣୀରେ ଯେତୋଟି ସାହିତ୍ୟିକ ଆସ୍ପର୍ଦ୍ଧା ଦେଖାଇବାର ପୌରୁଷ ପ୍ରକାଶ କରିବେ ଠିକ୍ ସେହି ଅନୁପାତରେ ଅଭିନୟ-ଚାତୁରୀ ଖଞ୍ଜାଖଞ୍ଜି କରି ଥୋଇ ଥିବା କାଳଜୟୀ ଗୌରବ ଲୋପ ପାଇଯିବ । ତେଣୁ ବିରୋଧ ହୁଏ ।

ସେ ଦିନ ଯେତେବେଳେ ଓଡ଼ିଶାର ଚାରି ଜଣ ସାହିତ୍ୟିକ ବର୍ଷାନୁ କ୍ରମେ ନଗେନ ବେଉରିଆ, ରବି ମହାପାତ୍ର, ରବୀନ୍ଦ୍ରନାଥ ସିଂହ ଓ ମୁରାରୀ ମୋହନ ଜେନା ନିଜକୁ ଓ ପ୍ରତ୍ୟେକ ନିଜକୁ ସଂବର୍ଦ୍ଧିତ କରିବା ପାଇଁ ଓଡ଼ିଶାର ସର୍ବପ୍ରାଚୀନ ଓ ବିଦ୍ୟମାନ ସାହିତ୍ୟ-ତୀର୍ଥ କଟକର ଶ୍ରୀରାମଚନ୍ଦ୍ର ଭବନରେ ସଭା କରିବାପାଇଁ ବିଜ୍ଞାପନ ଦେଲେ ସେତେବେଳେ ପ୍ରତିବାଦର କ୍ଷୀଣ ଆଭାସ ଦେଖା ଦେଲା—ଅହଂକାର ଭଲ ନୁହେଁ ?

କାରଣ କ'ଣ ? କାଳ ଅନନ୍ତ । ମଣିଷର ପରମାୟୁ ସୀମିତ । ତାହାର କଳା ସୃଷ୍ଟି ଅଦ୍ୟାବଧି ଅସମାପ୍ତ ଠିକ୍ ଏତିକିବେଳେ ନିଜକୁ ନିଜେ ବୋଲି ପରିଚିତ କରିବାର ଡାକହାକ ଆସ୍ପର୍ଦ୍ଧା ଦେଖାଇଲେ କଳାର କ୍ଷତି ହେବ ।

ତେବେ କ'ଣ କଲେ କଳାର ଭଲ ହେବ ? ... ଜାଣନ୍ତି ନାହିଁ ଶୁଣ ତେବେ । କଳା ସୃଷ୍ଟି କରି ଯାଅ । ଶେଷରେ କାଳ ତାହାର ମୂଲ୍ୟାୟନ କରିବ । ଉତ୍ତରକାଳର ଲୋକେ ତାହାର ମର୍ଯ୍ୟାଦା ଦେବେ । ନିଜେ ନିଜକୁ ପ୍ରଶଂସା କରିବା କଳା-ପ୍ରେମୀ ଓ କଳା ସେବୀର ଅଧର୍ମ ଓ ନୀତି-ଗର୍ହିତ ।

ତେଣୁ ସ୍ପଷ୍ଟ ଦେଖାଯାଇଛି ଯେ ଲୋକେ ସଂବର୍ଦ୍ଧନାର ଯୋଗାଡ଼ରେ ଜୀବନର ପ୍ରତ୍ୟେକ ସ୍ତରରେ ଲାଗି ପଡ଼ିଲେ ଅପରଙ୍କର ସ୍ୱୟଂ ସଂବର୍ଦ୍ଧନା ଗ୍ରହଣ କରିବାର ଉଦ୍‌ଯୋଗ ଦେଖିଲେ ବିବ୍ରତ ହୋଇପଡ଼ନ୍ତି । ସେଦିନ ଶ୍ରୀରାମଚନ୍ଦ୍ର ଭାବନର ସଭାରେ କଟକର ଉପସ୍ଥିତ ସୁଧୀମଣ୍ଡଳୀରୁ କେତେକ ଏହି ବିଷୟ ପ୍ରତି ଅସହିଷ୍ଣୁ ହୋଇ ପଡ଼ିଥିଲେ । ଏଣେ କାନ୍ଥରେ ଟଙ୍ଗା ହୋଇଥାଏ କେତେକ ସାହିତ୍ୟିକଙ୍କର ତୈଳଚିତ୍ର । ସେମାନଙ୍କର ଜୀବଦ୍ଦଶାରେ ସେହି ତୈଳ ଚିତ୍ରକୁ ନିଜ ଖର୍ଚ୍ଚରେ ତିଆରି କରାଇ ପୁଣି ନିଜର ଉଦ୍‌ଯୋଗ ଓ ଆୟୋଜନରେ ସାହିତ୍ୟ-ସେବୀ ଓ ସାହିତ୍ୟ-ପ୍ରେମୀଙ୍କୁ ବସାଇ ସେହି ତୈଳ



ଚିତ୍ରମାନଙ୍କର ଆନୁଷ୍ଠାନିକ ଉନ୍ମୋଚନ କରାଇଥିଲେ । ଏହି ବିଷୟମାନ କ'ଣ ସ୍ୱୟଂ-ସଂବର୍ଦ୍ଧନା ନୁହେଁ ?

ଏହି ଉତ୍ତରଗୁଡ଼ିକ ଯେତେ ସ୍ପଷ୍ଟ ହେଉ ନା କାହିଁକି ଛି ଛି କରିବା ବି ସେମିତି ଗୋଟାଏ ଗୁଣ । ନିଜର ଯାହା ଦୋଷ ସେତକ ପରଠାରେ ଦେଖିଲେ ତାକୁ ଖୁଣିବା ଆଉ ନିଜର ଦୋଷକୁ ଗୁଣର ପଦବାଚ୍ୟ କରି ଆତ୍ମସନ୍ତୋଷ ଅନୁଭବ କରିବା ହେଲା ଜୀବର ରୀତି ।



ସଭା ଚାଲିଥିଲା । ନିନ୍ଦୁକର ବକ୍ରୋକ୍ତି ଆକାଶର ମେଘ ପରି ସରି ଯାଇଥିଲା । ଶେଷକୁ ବଳି ପଡ଼ିଥିଲା ଚାରିଜଣ ଆତ୍ମମ୍ଭର ଓ ନିଜର ଦୋଷଗୁଣରେ ଉଜ୍ଜଳ ଚାରୋଟି ପ୍ରତିଭାର ଅପ୍ରତିଭ ଚାହାଣୀ । ସେଇ ଚାହାଣୀ କହୁଥିଲା ଯେ ବଂଧୁମାନେ ଦେଖ, ଏଇ ଏତକ ହେଉଛି ଆମର ଗୁଣ । ଆମ୍ଭେ ନିଜ ଉପରେ ଆସ୍ଥା ରଖିବା ପାଇଁ ଅନ୍ୟ ଅବଲମ୍ବନ ନେଉ ନାହିଁ ।

ସେଦିନ ସ୍ୱୟଂ-ସଂବର୍ଦ୍ଧନାର ନିଷ୍ପାଣ ଅନେକ କୃତୀ ସାହିତ୍ୟିକଙ୍କୁ ଚଞ୍ଚଳ କରିଥଲା— ଆହା, ଏତିକି ସତ୍ ସାହାସ ହେଲେ ଆନ୍ତା- ଆମେ ଯୋଗ୍ୟ ବୋଲି କହିବାର ଆସ୍ପର୍ଦ୍ଧା ହେଲେ ଥାନ୍ତା । ଆମର ଲେଖା ଆମରି ପାଖରେ ଯେଉଁ ମୂଲ୍ୟ ସଚେତନ ଓ ଅଚେତନ ମନରେ ପାଇଥାଏ ସେତକ ସ୍ପଷ୍ଟ ଓ ନିର୍ଭୀକ ଭାବରେ କହିବାର ସାହାସ ହେଇ ପାରିଲା ନାହିଁ । ଏତିକି ହେଲା ଦୁଃଖ ।

ଯେଉଁମାନେ ସେତିକି କରିଦେଇ ଗଲେ ସେତିକିରେ ବାଟ ଦେଖାଇ ଦେଇ ଗଲେ । ସେଇବାଟ ହେଉଛି କଳାକାର ଓ ସୃଷ୍ଟି ସର୍ଜନାର ବାଟ । ସେଇବାଟ ହେଉଛି ସ୍ୱୟଂ ସଂବର୍ଦ୍ଧନାର ବାଟ । ଆଉ ସବୁ ପ୍ରକାରର ବାଟ ଭିତରେ ସେଇଟି ସବୁଠାରୁ ସହଜ ବାଟ ।

ବିଷୁବ-ମିଳନ

୧୯୭୦

# ଶ୍ରୀ ରାଜକିଶୋର ପଟ୍ଟନାୟକ

ଭାବର ସ୍ୱଚ୍ଛନ୍ଦ ଓ ସ୍ୱକୀୟ ପରିପ୍ରକାଶ, ତିର୍ଯ୍ୟକ୍ ବ୍ୟଞ୍ଜନା, ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଓ ଗଭୀର ଜୀବନାନୁଭୂତିର ସ୍ପର୍ଶରେ ଆପଣଙ୍କ କଥା-ସାହିତ୍ୟ ଉନ୍ନତ ଓ ରସୋତ୍ତୀର୍ଣ୍ଣ ।

ଝଙ୍କାରର ପୃଷ୍ଠାରେ ଆପଣଙ୍କ ବହୁମୂଲ୍ୟ ଅବଦାନ ପାଇଁ ଓ ଆପଣଙ୍କ ଅନବଦ୍ୟ ସୃଷ୍ଟି ତଥା ସାଧନାର ସ୍ୱୀକୃତିସ୍ୱରୂପ ଆଜିର ଏକବିଂଶ ବିଷୁବମିଳନର ଶୁଭ ଅବସରରେ ଆପଣଙ୍କୁ ଏକ ହଜାର ଟଙ୍କା ଉପହାର ପ୍ରଦାନ କରୁଛୁ ।

ସ୍ୱା : ସଦାଶିବ ମିଶ୍ର — ସଭାପତି

ସ୍ୱା : କେ.ଆର୍. ଶ୍ରୀନିବାସ ଆୟାଙ୍ଗାର — ମୁଖ୍ୟଅତିଥି

ସ୍ୱା : ଶ୍ରୀ ହରେକୃଷ୍ଣ ମହତାବ

ଚେୟାରମ୍ୟାନ୍

ପ୍ରଜାତନ୍ତ୍ର ପ୍ରଚାର ସମିତି



# ନିଃଶେଷ ଜାଡ୍ୟା ପହ୍ନା

## ବିଶିଷ୍ଟ ଔପନ୍ୟାସିକ, ଗାଳ୍ପିକ, ସମାଲୋଚକ, ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକ ସମୀପେଷୁ

ମହାଶୟ,

ଆଭିଜାତ୍ୟ ଏବଂ ମୂଲ୍ୟବୋଧର ପୃଷ୍ଠଭୂମିରେ କ୍ରମବର୍ଦ୍ଧିଷ୍ଣୁ ଓଡ଼ିଆ ମଧ୍ୟବିତ୍ତ ଶ୍ରେଣୀର ବସ୍ତୁନିଷ୍ଠ ଅନୁଶୀଳନ ହିଁ ଆପଣଙ୍କର ସାହିତ୍ୟର ନିର୍ଯ୍ୟାସ, ବିଜ୍ଞାନ-ଶିକ୍ଷାର ପ୍ରଭାବରେ ଗଠିତ ଦୃଷ୍ଟିକୋଣ ଏବଂ ଆଇନ୍ ଜୀବିକାର ତଥ୍ୟମୂଳକ ବିଶ୍ଳେଷଣ ଆପଣଙ୍କର ସାରସ୍ୱତ ସୃଷ୍ଟିରୁ ବୌଦ୍ଧିକ ଉତ୍ତାପରେ ପ୍ରାଣ ସଞ୍ଚାର କରିଛି । ଏ ଅସାମାନ୍ୟ କୃତିତ୍ୱ ପାଇଁ ସାହିତ୍ୟ ସଂସଦ ଆନୁକୂଲ୍ୟରେ ଏକବିଂଶତିତମ ଶିଶିର ଉତ୍ସବରେ ଆପଣଙ୍କର ଅନମନୀୟ ବ୍ୟକ୍ତିତ୍ୱର ଉଚ୍ଚ ପ୍ରଶଂସା କରାଯାଉଛି ।

ମମତା ଓ ସହାନୁଭୂତି ନେଇ ଆପଣ ମଣିଷର ସୁଖଦୁଃଖକୁ ବିଶ୍ଳେଷଣ କରିଛନ୍ତି ଏବଂ ମଣିଷର ବିଶ୍ୱାସଘାତକତାରେ ଅତିଷ୍ଟ ହୋଇ କୃତଜ୍ଞ କୁକୁରକୁ ସମାଜ-ସୁନ୍ଦର ପ୍ରତିଷ୍ଠିତ ଆଜୀବକ ଠାରୁ ମଧ୍ୟ ଉଚ୍ଚାସନ ଦେଇଛନ୍ତି । ଅସାଧାରଣ ଆତ୍ମବିଶ୍ୱାସରେ ଆପଣଙ୍କର ପଦକ୍ଷେପ ଅନୁପମ । ସେଥିପାଇଁ ଓଡ଼ିଆ ଲେଖକ ସମ୍ମେଳନର ଏ ଶୁଭ ଅବସରରେ ଆପଣଙ୍କୁ 'ଉତ୍କଳ-ରତ୍ନ' ଉପାଧି ପ୍ରଦାନ କରାଯାଉଛି ।

ରାଜନୀତି, ସାମ୍ବାଦିକତା, କ୍ରୀଡ଼ା, ଆଇନ୍ ଏବଂ ପୁସ୍ତକ ପ୍ରକାଶନ ଆଦି ଆଧୁନିକ ସମାଜର ବିଭିନ୍ନ କ୍ଷେତ୍ରରେ ଆପଣଙ୍କର ବଳିଷ୍ଠ ପଦକ୍ଷେପ ସାହିତ୍ୟରେ ପ୍ରତିଫଳିତ ହୋଇଛି । ପରିପକ୍ୱ ଆତ୍ମବିଶ୍ୱାସମୂଳକ ନାସ୍ତିକତା କ୍ରମେ ଆସ୍ତିକତା ଏବଂ ଆଧ୍ୟାତ୍ମିକତାରେ ରୂପାନ୍ତରିତ ମଧ୍ୟ ହୋଇଛି । ସମାଜ ଜୀବନରେ ଆଜି ମଧ୍ୟ ଆପଣ ଅନାସକ୍ତ ଜ୍ଞାନ-ଯୋଗୀ ଭାବରେ ପ୍ରେରଣାର ଉତ୍ସରେ ପରିଣତ ହୋଇଯାଇଛନ୍ତି । ଆପଣ ଦୀର୍ଘଦିନ ନିରାମୟ ଜୀବନ ଅତିବାହିତ କରି ଆଧୁନିକ ଓଡ଼ିଶାର ମୁଖ ଉଜ୍ଜ୍ୱଳ କରନ୍ତୁ; ଏହା ହିଁ ଭଗବାନ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।

ଶ୍ରୀରାମଚନ୍ଦ୍ର ଭବନ, କଟକ
୧୭.୧୨.୧୯୮୦

ବିନୟାବନତ
ସାହିତ୍ୟ ସଂସଦର ସଭ୍ୟ/ସଭ୍ୟାବୃନ୍ଦ

# ଓଡ଼ିଶା ସାହିତ୍ୟ ଏକାଡ଼େମୀ

## ଭୁବନେଶ୍ୱର

## ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର-୧୯୯୬

ମାନନୀୟ ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକ ମହୋଦୟ

ମହାଶୟ,

ଓଡ଼ିଆ ସାହିତ୍ୟର ଅନ୍ୟତମ ଲବ୍‌ଧପ୍ରତିଷ୍ଠ କଥାଶିଳ୍ପୀ ଭାବରେ ଆପଣ ଯଶସ୍ୱୀ । ଜଣେ ସମର୍ଥ ତଥା ସାର୍ଥକ ଔପନ୍ୟାସିକ ଓ ଗାଳ୍ପିକ ଭାବରେ ଅଜସ୍ର ସୃଷ୍ଟିରେ ଆପଣଙ୍କର ଚିରନ୍ତନ ସ୍ୱାକ୍ଷର ବିଦ୍ୟମାନ୍ । ଅର୍ଦ୍ଧଶତାବ୍ଦୀ ଧରି ଆପଣଙ୍କର ଏକନିଷ୍ଠ ସାରସ୍ୱତ ସାଧନା ଫଳରେ ଓଡ଼ିଆ ସାହିତ୍ୟ ହୋଇଛି ଋଦ୍ଧିମନ୍ତ ଓ ମହିମାମଣ୍ଡିତ । ଜୀବନର ନାନା ବୈଚିତ୍ର୍ୟମୟ ଓ ରହସ୍ୟାବୃତ ବିଭାବର ଉଦ୍‌ଘାଟନ କରିବାରେ ତଥା ଚାରିତ୍ରିକ ମନୋବିଶ୍ଳେଷଣ ଚାତୁରୀରେ ଆପଣ ଜଣେ ସିଦ୍ଧହସ୍ତ ଶିଳ୍ପୀ, ଅନାଡ଼ମ୍ବର, ନିତିଦିନିଆ ଲୋକଭାଷାର ଶବ୍ଦାବଳୀ ପ୍ରୟୋଗରେ, ବାସ୍ତବଧର୍ମୀ କଥାବସ୍ତୁର ନିର୍ବାଚନରେ ତଥା ପ୍ରକାଶଭଙ୍ଗୀର ନୂତନତାରେ ଆପଣଙ୍କର ନିଜସ୍ୱ ରୁଚିବୋଧ ଓ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ।

ଏ ଜାତି, ସମାଜ, ଶାସନ ଓ ଅର୍ଥନୀତିକ ବ୍ୟବସ୍ଥାର ସଂସ୍କାର ତଥା ପରିବର୍ତ୍ତନ ପାଇଁ ଆପଣଙ୍କର ଶାଣିତ ବିଦ୍ରୂପ ଓ ବ୍ୟଙ୍ଗୋକ୍ତିର ସ୍ୱର ରଚନାର ଛତ୍ରେ ଛତ୍ରେ ପ୍ରତିଧ୍ୱନିତ । ଆଇନ୍ ବୃତ୍ତିରେ ତଥା ସାହିତ୍ୟ କ୍ଷେତ୍ରରେ ଆପଣ ନିର୍ଭୀକତା ଓ ସ୍ପଷ୍ଟବାଦିତାର ପରିଚୟ ଦେଇଛନ୍ତି । 'ଶାନ୍ତନିବାସ ବାଣୀ ମନ୍ଦିର' ପୁସ୍ତକ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା ମାଧ୍ୟମରେ ଓଡ଼ିଆ ସାହିତ୍ୟର ସମୃଦ୍ଧି ଓ ବିକାଶ କଳ୍ପେ ଆପଣଙ୍କର ସାଧୁ ପ୍ରଚେଷ୍ଟା ଅତୀବ ପ୍ରଶଂସନୀୟ ।

ଆଜି ଏହି ଶୁଭ ଅବସରରେ ଆପଣଙ୍କର ଶିଳ୍ପସିଦ୍ଧି ଓ ସାରସ୍ୱତ ସାଫଲ୍ୟର ସ୍ୱୀକୃତି ସ୍ୱରୂପ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆପଣଙ୍କୁ ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର— ୧୯୯୬ ପ୍ରଦାନ କରିବାର ସୁଯୋଗ ଲାଭ କରି ନିଜକୁ ଗୌରବାନ୍ୱିତ ମନେ କରିବା ସଙ୍ଗେ ସଙ୍ଗେ ଆପଣଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି ।

**ହରପ୍ରସାଦ ପରିଛା ପଟ୍ଟନାୟକ,** **କିଶୋରୀ ଚରଣ ଦାସ**

ସଂପାଦକ ସଭାପତି

ତା ୮-୨-୧୯୯୬





# ରାଜକିଶୋରଙ୍କ ରଚନାବଳୀ

| ଉପନ୍ୟାସ | ରଚନାକାଳ | ପ୍ରକାଶକାଳ |
| --- | --- | --- |
| ପଞ୍ଜୁରୀପକ୍ଷୀ | ୧୯୩୬ | ୧୯୪୫ |
| ପ୍ରେମର ନିୟତି | ୧୯୩୭ | ୧୯୪୬ |
| ସିନ୍ଦୂରଗାର | ୧୯୩୭ | ୧୯୪୩ |
| ଅସରନ୍ତି | ୧୯୩୮ | ୧୯୪୪ |
| ସ୍ମୃତିର ମଶାଣି | ୧୯୪୩ | ୧୯୪୪ |
| ସପନ କୁହୁଡ଼ି | ୧୯୪୫ | ୧୯୫୪ |
| ବିରହିଣୀ | ୧୯୪୫ | ୧୯୫୫ |
| ଭସାମେଘ | ୧୯୫୪ | ୧୯୫୮ |
| ସଞ୍ଜବତୀ | ୧୯୫୪ | ୧୯୫୬ |
| ପ୍ରେମିକର ଡାଏରୀ | ୧୯୫୫ | ୧୯୫୫ |
| ଚଲାବାଟ | ୧୯୫୭ | ୧୯୫୭ |
| କଜଳଗାର | ୧୯୫୯ | ୧୯୫୯ |
| ଅଷ୍ଟମୀଚାନ୍ଦ | ୧୯୫୯ | ୧୯୬୬ |
| କଳାପରଦା | ୧୯୫୯ | ୧୯୬୭ |
| ସକାଳ କୁହୁଡ଼ି (ଜୀବନର ମଦିରା) | ୧୯୭୦ | ୧୯୭୦ |
| ତ୍ରିବର୍ଗର ମକରା | ——— | ୧୯୭୦ |
| ପ୍ରୀତିର ବଣିଜ | ୧୯୭୩ | ୧୯୭୩ |
| ପ୍ରୀତିର କଜଳ | ୧୯୭୩ | ୧୯୭୪ |
| ରାସ୍‌କେଲ୍ | ୧୯୮୩ | ୧୯୮୩ |

| | | |
|---|---|---|
| ରାଜକିଶୋର ପଟ୍ଟନାୟକଙ୍କ | | |
| ୧୯୮୩ର ଗଳ୍ପ ଅଡୁଆ ସୂତା | ୧୯୮୩ | ୧୯୮୩ |
| ରାଜକିଶୋର ପଟ୍ଟନାୟକଙ୍କ | | |
| ୧୯୮୩ର ଗଳ୍ପ ଅଦିନ ଛତୁ | ୧୯୮୩ | ୧୯୮୩ |
| ଜୀବନ ସନ୍ଧ୍ୟା (ଆତ୍ମଜୀବନୀର ଉପନ୍ୟାସ) | ୧୯୮୪ | ୧୯୮୪ |
| ଜୀବନରେ ସମ୍ଭବ, ହୃଦୟର ବଂଧନ, ପୋଡ଼ା କପାଳ ଇତ୍ୟାଦି | | |
| **ଗଳ୍ପ ସଂକଳନ** | | |
| ତୁଠପଥର | ୧୯୩୬-୩୮ | ୧୯୪୫ |
| ହୃଦୟର ବନ୍ଧନ | ୧୯୩୯-୪୦ | ୧୯୪୫ |
| ତୁଠପଥର | ୧୯୪୦-୪୫ | ୧୯୪୬ |
| ପଥୁକି | ୧୯୪୦-୪୬ | ୧୯୪୮ |
| ନିଶାଣ ଖୁଣ୍ଟ | ୧୯୪୫-୫୦ | ୧୯୫୪ |
| ଶାଳଗ୍ରାମ | ୧୯୫୦-୫୪ | ୧୯୫୫ |
| କଞ୍ଚନାର ଫୁଲ | ୧୯୫୦-୫୫ | ୧୯୫୮ |
| ପଥର ଢ଼ିମା | ୧୯୫୦-୬୦ | ୧୯୬୩ |
| ହାଟ ସଉଦା | ୧୯୬୦-୭୧ | ୧୯୭୧ |
| ହାଟ ବାହୁଡ଼ା | ୧୯୭୧-୭୨ | ୧୯୭୪ |
| **ଅନ୍ୟାନ୍ୟ** | | |
| ଲେଖକ ଓ ପାଠକ (୧ମ) | ୧୯୭୦-୭୧ | ୧୯୭୧ |
| ଓଡ଼ିଆ ସାହିତ୍ୟର ଆଗପଛ | ୧୯୭୩ | ୧୯୭୩ |
| ରାମକୃଷ୍ଣ କହିଛନ୍ତି | ୧୯୮୪ | ୧୯୮୪ |
| ଗୋଆ-ଡ଼ାମନ-ଡ୍ୟୁ (ଭ୍ରମଣ କାହାଣୀ) | ୧୯୮୪ | ୧୯୮୪ |
| ଦେଶବନ୍ଧୁ ଚିତ୍ତରଞ୍ଜନ | ୧୯୮୫ | ୧୯୮୫ |
| ମାଳିକା ଓ ପ୍ରଳୟ | ୧୯୮୪ | ୧୯୮୪ |
| ବିଶ୍ୱଧର୍ମ ପରିଚୟ (ଧର୍ମର ସଂକ୍ଷିପ୍ତ ବ୍ୟାଖ୍ୟା) | —— | ୧୯୮୮ |
| ୩୦ ଟି ଉପନିଷଦର ସଂକ୍ଷିପ୍ତ ରଚନା | —— | ୧୯୮୮ |
| 'ଗଛଲତାର ଆତ୍ମା' ଓ ଆହୁରି ଅନେକ | | |







# ଅବିନଶ୍ୱର ରାଜକିଶୋର

ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ସଞ୍ଜ ନଇଁ ଆସୁଥିଲା । ରକ୍ତିମ କିରଣ ବିଞ୍ଚିଦେଇ ପଶ୍ଚିମ ଦିଗନ୍ତରେ ମେଲାଣି ଘେନୁଥିଲେ ଦେବ ବିକର୍ତ୍ତନ । ଲାଜକୁଳୀ ରମଣୀର ରକ୍ତିମ ମୁଖମଣ୍ଡଳ ଭଳି ପ୍ରତୀତ ହେଉଥିଲା କାଠଯୋଡ଼ୀ ନଦୀ । ବେଶ୍ ମନୋରମ, ଅପରୂପ ଶୋଭା । ନଦୀ ତଟରୁ ଲମ୍ବିଯାଇଥିବା ପୁରୀଘାଟ ରୋଡ଼ରେ ଅଳ୍ପ କିଛି ବାଟ ଆଗେଇଗଲେ ବାମ କଡ଼େ ପଡ଼େ ସେଲ୍ଫ ଏଜୁକେଶନ ଟ୍ରଷ୍ଟ । ଧର୍ମ, ଦର୍ଶନ, ଯୋଗଶାସ୍ତ୍ରରେ ପରିପୂର୍ଣ୍ଣ ପାଠାଗାର । ହଁ, ଏହି ସେଲ୍ଫ ଏଜୁକେଶନ୍ ଟ୍ରଷ୍ଟର ପାହାଚ ଦେଇ ତଳକୁ ଓହ୍ଲାଇ ଆସୁଥିଲେ ସେ । ବେଶ୍ ଲମ୍ବା ମଣିଷ....ଶରୀରରେ ସମୟର ସ୍ୱାକ୍ଷର ସୁସ୍ପଷ୍ଟ... ମୁହଁରେ କିଛି କିଛି ପ୍ରଶ୍ନର ପ୍ରଲେପ...ହାତରେ ବ୍ୟାଗଟିଏ । ବ୍ୟାଗଟିକୁ ଦେଖିବାକୁ ଯଦି କାହାକୁ କେମିତି ସୁଯୋଗ ମିଳିଯାଏ ତେବେ କିଛି ବହି, ଖାତା ଆଉ ଗୋଟିଏ କଲମ ନିଶ୍ଚୟ ଦେଖିବାକୁ ମିଳିବ ହିଁ ମିଳିବ । ପ୍ରାୟ ଅଧିକାଂଶ ଦିନ ମୁହଁ ସଂଜରେ ତାଙ୍କୁ ଆବିଷ୍କାର କରିହୁଏ ପାହାଚରୁ ଓହ୍ଲାଉଥିବାର, ଚାଲି ଚାଲି ରାସ୍ତା ପାର ହେଉଥିବାର ଅଥବା ଦୁଇ ପାଖକୁ ଚାହିଁ ଚାହିଁ ରାସ୍ତା ପାରି ହେଉଥିବାର ।

ରାସ୍ତାକୁ ଓହ୍ଲାଇ ଆସିଥାନ୍ତି ସେ ସେଦିନ । ଛୋଟ ଛୋଟ ଛୁଆ ଦିଓଟି କେଉଁଠି ଥିଲେ କେଜାଣି ହଠାତ୍ ଆସି ଛିଡ଼ାହେଲେ ଖୁବ୍ ନିକଟରେ । ପ୍ୟାକେଟ୍ ଅଣ୍ଡାଳିଲେ ସେ । ଚକ୍‌ଚକିଆ ମୁଦ୍ରା ଦୁଇଟି ବଢ଼ାଇ ଦେଲେ ପିଲା ଦିହିଙ୍କ ହାତକୁ । ଅଳ୍ପ ସମୟ ମଧ୍ୟରେ ପିଲା ଦୁହେଁ ମିଶିଗଲେ ଝାପ୍‌ସା ଝାପ୍‌ସା ଅନ୍ଧକାର ଭିତରେ । କିନ୍ତୁ କୌଣସି ପ୍ରତିକ୍ରିୟା ନ ଥିଲା, ବେଶ୍ ନିର୍ଲିପ୍ତ ମଣିଷଟି ଭଳି ଧୀରେ ଧୀରେ ପାହୁଣ୍ଡ ପକାଇଲେ ସେ ଆଗକୁ । ଜୀବନରେ ବିତିଯାଇଥିଲା ପାଖାପାଖି ଆଠଗୋଟି ଦଶନ୍ଧି...ସମୟ ସହିତ ତାଳଦେଇ ସେତେବେଳେ ବଦଳି ଯାଇଥିଲା ପରିସ୍ଥିତି । ମାତ୍ର ସାଧନାରେ ବ୍ରତୀ ଥିଲେ ସେ । କେଉଁଆଡ଼କୁ ନଜର ନଥିଲା ଆଦୌ । ଆଗେଇ ଚାଲିବା ଏକମାତ୍ର ଯେପରି ଲକ୍ଷ୍ୟ ପ୍ରଜ୍ଞାଦୀପ୍ତ ପୁରୁଷଙ୍କର ।

ଏବେ କାଠଯୋଡ଼ୀର କୂଳେ କୂଳେ ତାଙ୍କୁ ସାଇକେଲ ଚଢ଼ିବାର ଆଉ କେହି ଦେଖୁନାହାଁନ୍ତି । ଭେଟ ମଧ ମିଳୁନାହିଁ ମନସୁର ବାବାଙ୍କ ଆରାଧନା ପୀଠରେ । କଟକ ଡିଷ୍ଟ୍ରିକ୍ଟ ବାର ଆସୋସିଏନର ଛୋଟ କୋଠରୀରେ ତାଙ୍କ ଉପସ୍ଥିତି ବିନା କେମିତି ଗୋଟେ ଖାଲି ଖାଲି । ବାଙ୍କାବଜାର, ବାଲୁବଜାରରେ ହଠାତ୍ ଭେଟ ହୋଇଯାଉ ନାହିଁ ତାଙ୍କ ସହିତ ।

ତଲତେଲଙ୍ଗା ବଜାରର ବାସଭବନ ତାଙ୍କ ବିନା ଖାଁ ଖାଁ ଲାଗୁଛି ।

ହଁ, ଯେଉଁ ସ୍ମରଣୀୟ ସାହିତ୍ୟ ସାଧକଙ୍କ କଥା କୁହାଯାଉଛି ସେ ନିଜକୁ ପରିଚିତ କରାନ୍ତି 'ଓଡ଼ିଆ ଲେଖକ ରାଜୁ' ଭାବରେ । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ପ୍ରବଳ ସମ୍ମୋହନ ତାଙ୍କର । ଏହାର ଉନ୍ନତିକଳ୍ପେ କେତେ ଚିନ୍ତା ଯେ ତାଙ୍କ ଉର୍ବର ମସ୍ତିଷ୍କରେ ଖେଳି ନଯାଏ ତା'ର କିଛି ଇୟତା ନାହିଁ । ଓଡ଼ିଆ ସାହିତ୍ୟ ଓଡ଼ିଆମାନଙ୍କ ପାଇଁ ହେଉ ସଦାସର୍ବଦା ଚାହିଁ ଆସିଛନ୍ତି ସେ—ରାଜକିଶୋର । ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ କଥାଶିଳ୍ପୀ ରାଜକିଶୋର । ଅମଡ଼ା ମାଡ଼ି ଓଡ଼ିଆ ସାହିତ୍ୟ ପାଇଁ ଚଲାବାଟ ତିଆରି କରିଚାଲିଥିବା ଅମିତ ପ୍ରତିଭାଧର ଅଥଚ ଉପେକ୍ଷିତ ସାରସ୍ୱତ ପୁରୁଷ ରାଜକିଶୋର ପଟ୍ଟନାୟକ । ଆଧୁନିକ ଓଡ଼ିଆ କଥା ସାହିତ୍ୟର ରଙ୍ଗଭୂମିରେ ଯେଉଁ ମୁଷ୍ଟିମେୟ ସ୍ରଷ୍ଟାଙ୍କ ପାଦଚିହ୍ନ ସ୍ପଷ୍ଟ, ସ୍ୱଚ୍ଛ ଓ ଅନୁସନ୍ଧେୟ, ପୁରୁଷ ପୁରୁଷଧରି ଅବିସ୍ମରଣୀୟ, ସେମାନଙ୍କ ମଧ୍ୟରୁ ସ୍ୱାଭିମାନୀ ପୁରୁଷ ରାଜ କିଶୋର ପଟ୍ଟନାୟକ ଅନ୍ୟତମ । ପ୍ରାକ୍ ସ୍ୱାଧୀନତା କାଳରୁ ସାରସ୍ୱତ ଜଗତରୁ ଅବତୀର୍ଣ୍ଣ ହୋଇଥିବା ଏହି ବାସ୍ତବବାଦୀ-ଜୀବନଧର୍ମୀ ସାର୍ଥକ ସାଧକଙ୍କ ସ୍ୱର ଓ ସ୍ୱାକ୍ଷର ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଊର୍ଦ୍ଧ୍ୱକାଳଧରି ଓଡ଼ିଆ ଗଳ୍ପ-ଉପନ୍ୟାସ ସାହିତ୍ୟକୁ ଅନୁରଂଜିତ କରି ଆସିଛି । ବୈଚିତ୍ର୍ୟମୟ ବର୍ଣ୍ଣବିଭାରେ ମନ୍ତ୍ରମୁଗ୍ଧ କରିଛି ବିଦ୍‌ଗଧମଣ୍ଡଳୀଙ୍କୁ । ସମକାଳୀନ ସମାଜର ବାସ୍ତବ ପ୍ରତିଛବି, ସମାଜର ଆବର୍ତ୍ତ ମଧ୍ୟରେ ଜଡ଼ସଡ଼ ବ୍ୟକ୍ତି ମାନସର ଅନ୍ତର୍ଦ୍ୱନ୍ଦ୍ୱ, ମାନବେତର ପ୍ରାଣୀ ଓ ଜଡ଼ ବସ୍ତୁ ମଧ୍ୟ ଦେଇ ମଣିଷର ପ୍ରବୃତ୍ତି-ସଂଘର୍ଷ ବ୍ୟକ୍ତିତ୍ୱକୁ ଉଦ୍‌ଘାଟନ ଓ ମନଗହନର ଭାବନାରାଜି ତଥା ପ୍ରତିକ୍ରିୟାକୁ ମର୍ମସ୍ପର୍ଶୀ ରୀତିରେ ପ୍ରକାଶ କରି ତହିଁରେ ମାନବିକ ଆବେଦନ ସୃଷ୍ଟି କରିବାରେ ରାଜ କିଶୋର ଅପୂର୍ବ ସିଦ୍ଧିର ଅଧିକାରୀ । ଅନୁଭୂତିର ପ୍ରାଚୁର୍ଯ୍ୟରେ ଓ ସହାନୁଭୂତିସିକ୍ତ ବ୍ୟଙ୍ଗରେ ତାଙ୍କରି ସୃଷ୍ଟି ସମଗ୍ର ଆବେଦନ ବେଶ୍ ହୃଦୟସ୍ପର୍ଶୀ । ହଁ, ହୃଦୟକୁ ଛୁଇଁବା ପୂର୍ବରୁ ଚିନ୍ତାରାଜ୍ୟରେ ଏହା ସୃଷ୍ଟିକରେ ଆଲୋଡ଼ନ । ବୌଦ୍ଧିକତାର ଚମକରେ ଚକିତ କରେ ଏହି ସାରସ୍ୱତ ସମ୍ପଦ ।

ରାଜକିଶୋରଙ୍କ ଜନ୍ମ ହୋଇଥିଲା ପୈତୃକ ବାସସ୍ଥାନ ରସୁଲକୁଣ୍ଡା ଭଞ୍ଜନଗରର ଜଗନ୍ନାଥ ପ୍ରସାଦଠାରୁ ବହୁ ଦୂରରେ । ୧୯୧୭ ମସିହା ଅପ୍ରେଲ ମାସ ୮ ତାରିଖରେ କଲିକତା ନଗରୀର ୬୭ ନମ୍ବର ଗ୍ରେ ଷ୍ଟ୍ରୀଟ୍‌ରେ । ହଁ, ଇୟେ, ଥିଲା ପିତା ଶ୍ରୀବତ୍ସ ପଟ୍ଟନାୟକଙ୍କ ସରକାରୀ ଚାକିରୀ କାଳର ରହଣୀସ୍ଥଳ । ମାତା ହେଉଛନ୍ତି ସୁନ୍ଦରମଣି



ଦେବୀ । ଶ୍ରୀବତ୍ସ ପଟ୍ଟନାୟକ ଆଉ କେହି ନୁହନ୍ତି, ସାହିତ୍ୟପ୍ରେମୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ସାନଭାଇ ତଥା ଓଡ଼ିଶାର ଜଣାଶୁଣା ବ୍ୟକ୍ତିତ୍ୱ ବିଜୁ ପଟ୍ଟନାୟକଙ୍କ ସାନବାପା । ଚାକିରୀ ଜୀବନରେ ଗୋଟିଏ ପରେ ଗୋଟିଏ ସ୍ଥାନ ଘୁରିବୁଲିବାକୁ ହେଲା ଶ୍ରୀବତ୍ସ ପଟ୍ଟନାୟକଙ୍କୁ । କଲିକତାରୁ ଟାଟା, ପୁଣି ଟାଟାରୁ ଭାଗଲପୁର । ପରିବାର ଧରି ସବୁଆଡ଼େ ବୁଲିବା କ'ଣ ସୁବିଧା ? ନା' । ଏଣୁ ପରିବାର ରହିଲା ଓଡ଼ିଶାର ସାଂସ୍କୃତିକପୀଠ କଟକରେ । କଲିକତା ନଗରୀରେ ପ୍ରଥମ ଆଲୋକ ଓ ପବନ ଛୁଇଁଥିବା ରାଜୁବାବୁଙ୍କ ଛାତ୍ରଜୀବନ ଜାରିରହିଲା ଏଇଠି । ରେଭେନ୍‌ସା କଲିଜିଏଟ୍ ସ୍କୁଲ ଓ ରେଭେନ୍ସା କଲେଜରେ ଯୋଗଦେଇ ନିଜର ମେଧାଶକ୍ତିର ପରିଚୟ ଦେଲେ ସେ । ବିଜ୍ଞାନର ସ୍ନାତକ ପରେ ଆଇନ୍ ଅଧ୍ୟୟନ । ବିଚିତ୍ର ଲାଗୁଥିଲେ ହେଁ ଏହା ଥିଲା ସତ୍ୟ ତାଙ୍କ ଜୀବନରେ । ସ୍ୱାଧୀନ ଭାବରେ ସ୍ୱାଧୀନ ବୃତ୍ତି ନେଇ ବଞ୍ଚିବାର ଲକ୍ଷ୍ୟ ଛାତ୍ରଜୀବନରୁ ହିଁ ପୋଷଣ କରିଥିଲେ । ସ୍ୱାଧୀନତାର ପ୍ରାୟ ଗୋଟିଏ ଦଶନ୍ଧି ପୂର୍ବେ ବିଜ୍ଞାନରେ ସ୍ନାତକ ଡିଗ୍ରୀ ହାସଲ କରିଥିବା ଛାତ୍ରର ଉଚ୍ଚପଦସ୍ଥ କର୍ମଚାରୀ ହେବାରେ ବାଧା ନଥିଲା ଆଦୌ ।

କେବଳ ମେଧାବୀ ଛାତ୍ର ଭାବରେ ନୁହେଁ, ଜଣେ ଖେଳଓ୍ୱାଡ଼ ଯୁବକ ହିସାବରେ ତାଙ୍କ ପରିଚୟ ଥିଲା ଖୁବ୍ ଶୀର୍ଷରେ । ସେଥିପାଇଁ ତ ଆଜି ଜୀବନର ଅପରାହ୍ନରେ ବେଶ୍ ଖେଳଓ୍ୱାଡ଼୍ ମନୋଭାବର ପରିଚୟ ମିଳେ ତାଙ୍କଠାରୁ । ରେଭେନ୍‌ସା କଲେଜର ଛାତ୍ର ଥିବାବେଳେ ତାଙ୍କର ସାଇକେଲ ରେସର ରେକର୍ଡ଼ ବଜାୟ ରହିଥିଲା ଦୀର୍ଘ ୪୦ ବର୍ଷ ଧରି । ମାଇଲ୍ ମାପଟା ବଦଳି ନଥିଲେ ଆହୁରି ଅଧିକ ଦିନ ଅତୁଟ ରହିଥାନ୍ତା ସେ ରେକର୍ଡ଼ ନିଶ୍ଚୟ । ହଁ, ଛଅ ମିନିଟ୍‌ରେ ଦୁଇମାଇଲ୍ ରାସ୍ତା । ଏତିକିରେ କଥା ସରିଯାଇନି । ୧୯୩୪ ମସିହାରୁ ରେଭେନ୍ସା କଲେଜର ଫୁଟବଲ୍ ଟିମ୍‌ରେ ରାଇଟ୍ ହାଫ୍ ଖେଳାଳୀ ଭାବେର ସ୍ଥାନ ଥିଲା ରାଜୁବାବୁଙ୍କର । ଏଗାର ଜଣଙ୍କ ମଧ୍ୟରେ ଆଗ ଧାଡ଼ିରେ ତାଙ୍କର ନାଁ । ଭଲି, କ୍ରିକେଟ୍ ଖେଳ ମଧ୍ୟ ଥିଲା ତାଙ୍କର ଅତିପ୍ରିୟ ।

ଶିକ୍ଷା ଓ କ୍ରୀଡ଼ାର ଭିଡ଼ ମଧ୍ୟରେ ସାରସ୍ୱତ ଜୀବନର ଶୁଭାରମ୍ଭ ହୋଇଥିଲା ତାଙ୍କର । ୧୯୩୪ ମାର୍ଚ୍ଚ ମାସ । wood lands,ଲାଇବ୍ରେରୀରୁ (ଜର୍ଜ ରେନୋଲଡ଼୍‌ସ୍)'mysteries of the court of Londonଙ୍କର ବହି ପଢ଼ି ଆରମ୍ଭ କରିଥିଲେ ସେ ପ୍ରଥମ ଉପନ୍ୟାସ ଲେଖା । ଅବଶ୍ୟ ଏହି ଆଦ୍ୟ ସ୍ଫୁରଣ ଅସଂପୂର୍ଣ୍ଣ ଓ ଅପ୍ରକାଶିତ । ଆଉ ଏ କ୍ଷେତ୍ରରେ ପଛାଇ ଯାଇ ନାହାନ୍ତି ସେ । ୧୯୩୭ ମସିହା । ରାଜକିଶୋର ରେଭେନ୍‌ସା କଲେଜର

ଆଇନ ଛାତ୍ର ଥିବା ସମୟରେ 'ନବଭାରତ'ରେ ଧାରାବାହିକ ଭାବେ ଆରମ୍ଭ କଲେ 'ମୋ ଚିଠି ଫାଇଲ୍' । 'ନାରୀ ଜୀବନର ବଡ଼ ପ୍ରଶ୍ନ କ'ଣ ? ବାହାବେଦୀ !', 'ସ୍ୱାମୀଠାରୁ ବଡ଼ କିଏ ? ପ୍ରେମିକ !', 'ନାରୀର ଆଦର୍ଶ କ'ଣ ? ତ୍ୟାଗ ନା ଭୋଗ !' ଏହିପରି ଶୀର୍ଷକରେ ନାରୀ ପୁରୁଷ ଜୀବନର କଥାକୁ ନେଇ ପତ୍ରଲିଖନ ଆଙ୍ଗିକରେ ରଚିତ ଏହି ମୋ ଚିଠି ଫାଇଲ୍ ପରେ 'ପଞ୍ଜୁରୀ ପକ୍ଷୀ' ନାମରେ ପ୍ରକାଶିତ ହେଲା ତାହା ୧୯୪୫ ମସିହାରେ । ଅପୂର୍ବ ଶୈଳୀ ବିଷୟବସ୍ତୁର ନୂତନତାରେ ନିଆରା ବୋଧ ହେଲେ ସେ । ତାଙ୍କ ସୃଷ୍ଟିର ଔଜଲ୍ୟତା ସେକାଳର ସାହିତ୍ୟ ପତ୍ରିକା ସଂପାଦକଙ୍କ ଆଖି ଝଲସାଇ ଦେଇଥିଲା । 'ନବଭାରତ', 'ଉତ୍କଳ ସାହିତ୍ୟ' 'ସହକାର' ଆଦି ପତ୍ରିକାର ପୃଷ୍ଠା ପଟଳରେ ରାଜୁବାବୁଙ୍କ ଗଳ୍ପମାନ ପ୍ରକାଶ ପାଇ ଆଣିଦେଲା ତାଙ୍କ ପାଇଁ ପ୍ରସିଦ୍ଧି ।

ରାଜୁବାବୁ ଗୋପୀନାଥ ମହାନ୍ତି ଓ ନିତ୍ୟାନନ୍ଦ ମହାପାତ୍ରଙ୍କ ସହ ଲେଖିଲେ 'ଭଲ ପାଇବାର ଶେଷ କଥା' ନବଭାରତର ପୃଷ୍ଠାରେ ୧୯୩୭ ମସିହାରେ । ପରେ ଏହା ପ୍ରକାଶ ପାଇଥିଲା 'ପ୍ରେମର ନିୟତି'ରେ । ସେହି ସମୟରେ କଥାକୁ ସ୍ମରଣ କରି କଥାଶିଳ୍ପୀ ନିତ୍ୟାନନ୍ଦ ମହାପାତ୍ର ଲେଖିଛନ୍ତି ସେ ଦୁହେଁ ସେତେବେଳକୁ ନବଭାରତରେ ଆରମ୍ଭ କରିଦେଇଥାନ୍ତି ଲେଖାଲେଖି । ଗୋପୀବାବୁ—ଗୋପୀନାଥ ମହାନ୍ତି ଆଉ ସେ ଖୋଜୁଥିଲେ ତିହେଁଯାକ, ଭଲ ପାଇବାର ଶେଷ କଥା କେଉଁଠି । ମୋତେ ରାଜୁବାବୁ ହିଁ କହିଲେ, ''ଆପଣ ବି ଏଥିରେ ଯୋଗ ଦିଅନ୍ତୁ ।'' ଧରିବସିଲେ; ନଛୋଡ଼ବନ୍ଧା । ମୁଁ ବୟସରେ ସେ ଦୁହିଁଙ୍କୁ ବଳିଗଲେ ବି ନୂତନ ଲେଖକ । ସେମାନେ ପ୍ରବୀଣ କିନ୍ତୁ 'ଭଲ ପାଇବାର ଶେଷ କଥା' ପାଇଁ ନୂତନ ପ୍ରେମିକ ଓ ପ୍ରବୀଣ ଲେଖକଠାରୁ ନୂତନ ଲେଖକ ହେଉ ପଛେ ପ୍ରବୀଣ ପ୍ରେମିକ ବେଶି ଲୋଡ଼ା । ବୟସ ଟିକିଏ ବେଶି ନହେଲେ ପ୍ରେମର ଅଭିଜ୍ଞତା ବା ହେବାଟା ହେବ କେମିତି । ସେଥିପାଇଁ ବୋଧହୁଏ ମୋତେ ଧଇଲେ । କିନ୍ତୁ ତାଙ୍କ ଭିତରେ ପାଇଲି ଗୋଟାଏ ନୂଆ ମଣିଷ—ଏହି ବେଶି ବେଶି ଇଂରାଜୀ ପାଠୁଆଙ୍କ ଭିତରେ । ପଢ଼ାର ପ୍ରୌଢ଼ି ନାହିଁ । ଲେଖକ ବୋଲାଇବାର ଖର୍ବ ନାହିଁ, ଅଭିମାନ ନାହିଁ । ଯେମିତି ଦୁର୍ନୀତ୍ୟ ଉଦ୍ଧତ, ସେତିକି କାକୁସ୍ଥ ବିନୟୀ । କେହି ଯଦି ଯୁଦ୍ଧ ଡାକରା ଦେଲେ, ମୁଣ୍ଡ କଟିଯିବ ପଛେ, ରାଜୁବାବୁଙ୍କ ମୁଣ୍ଡ ନଇଁବ ନାହିଁ (ମୁଁ ତାଙ୍କୁ ଯେପରି ଜାଣେ, ଅଧୁନା ୪ର୍ଥ ବର୍ଷ, ୬ଷ୍ଠ ସଂଖ୍ୟା) । ସତରେ ମଣିଷ ପରି ମଣିଷ ସେ । ଲେଖକ ପରି ଲେଖକ ଜଣେ । ଅନ୍ୟପ୍ରତି ଅମାପ ଶ୍ରଦ୍ଧା । ମାତ୍ର ସତ୍ୟ ପାଇଁ ନଛୋଡ଼ବନ୍ଧା । ଯାହାକୁ ସେ ଅନୁଭୂତିର କଷଟୀରେ ପରଖିଛନ୍ତି ତାହାହିଁ କହିବେ । ଆହ୍ୱାନକୁ ସମ୍ମୁଖୀନ



ହେବାର ଶକ୍ତି ଓ ସାମର୍ଥ୍ୟ ଭରପୂର ତାଙ୍କ ଠାରେ ।

୧୯୪୦ ମସିହାରୁ ରାଜକିଶୋରଙ୍କ ବୃତ୍ତିଗତ ଓକିଲ ଜୀବନର ଆରମ୍ଭ ଘଟେ ଏଇ କଟକ ସହରରେ । ଅଧିକରୁ ଅଧିକ ଜାଣିବାର ଆଗ୍ରହକୁ ସାକାର କରିବା ପାଇଁ ବନାରସ ଯିବାକୁ ହୁଏ ତାଙ୍କୁ । ହଁ, ୧୯୪୧ରୁ ୧୯୪୩ ବନାରସରେ ରହି ଏଲ୍. ଏଲ୍. ଏମ୍. ଅଧ୍ୟୟନ କରନ୍ତି ସେ । ୧୯୪୩ରେ ପୁଣି କଟକ ପ୍ରତ୍ୟାବର୍ତ୍ତନ । ସେହିଦିନଠାରୁ ଏହି ସହରର ପାଣି ପବନରେ ବିତାଇ ଦେଇଛନ୍ତି ଜୀବନର ଅବଶିଷ୍ଟ କର୍ମମୟ ସମୟ ।

ଓକିଲାତି ଜୀବନରେ ସାରସ୍ୱତ ସାଧନାକୁ ତ୍ୟାଗ କରି ନଥିଲେ । 'ପଞ୍ଜୁରୀ ପକ୍ଷୀ', ପ୍ରେମର ନିୟତି' ପରେ 'ସିନ୍ଦୂର ଗାର' 'ଅସଙ୍ଗତି' 'ସ୍ମୃତିର ମଣାଣି' 'ସଞ୍ଜବତୀ' 'ପ୍ରେମିକର ଡାଏରୀ', 'ଉଠପଥର', 'ପଥିକ', 'ଶାଳଗ୍ରାମ', 'ଓଡ଼ିଆ ସାହିତ୍ୟର ଆଗପଛ' ଆଦି 'ଶାଳଗ୍ରାମ', 'ଓଡ଼ିଆ ସାହିତ୍ୟର ଆଗପଛ' ଆଦି ସଂଖ୍ୟାଧିକ ସାରସ୍ୱତ ସମ୍ଭାର ତାଙ୍କୁ ପ୍ରଦାନ କରେ ସ୍ୱତନ୍ତ୍ର ଆସନ ଓଡ଼ିଆ ସାହିତ୍ୟର ସାମ୍ରାଜ୍ୟରେ । ଅଳ୍ପ କେତୋଟି ଚରିତ୍ରକୁ ନେଇ ମଣିଷ ମନର ସାତତାଳ ଗହୀର ଲୁକାୟିତ ହୋଇ ରହିଥିବା ଅସଲ ସତ୍ୟକୁ ଉପସ୍ଥାପନ କରୁଥିଲେ ସେ ବେଶ୍ ସଫଳତାର ସହ । ସ୍ୱାଧୀନତାର ପୂର୍ବ ଓ ପର ସାହିତ୍ୟରେ ଏକ ସୁଦୃଢ଼ ସେତୁର ଭୂମିକାରେ ଅବତୀର୍ଣ୍ଣ ହୋଇ ଓଡ଼ିଆ ପାଠକଙ୍କ ପାଇଁ ପରିବେଷଣ କରିଛନ୍ତି  ନୂତନ ସ୍ୱାଦ, ନବ ଅନୁଭବ । ଆହ୍ୱାନ ଦିଅନ୍ତି ପ୍ରତିଦ୍ୱନ୍ଦ୍ୱିତା କରିବାକୁ । ମାତ୍ର ଉତ୍ତର ନ ପାଇ ହୋଇପଡ଼ନ୍ତି ମ୍ରିୟମାଣ । 'ଘାସ' ଠାରୁ ଆରମ୍ଭ କରି 'ବିପ୍ଳବୀ' ଯାଏଁ, ଅନବଦ୍ୟ ଗଳ୍ପର ରଚୟିତା ସେ । କେବଳ ସେତିକି ନୁହେଁ 'ନୀଳାବାଟ' ଭଳି ସାର୍ଥକ ସୃଷ୍ଟି ଏବେ ମଧ୍ୟ ବିରଳ ଭାରତୀୟ ସାହିତ୍ୟରେ । ବୁଲା କୁକୁର, ପାଚେରିଲଗା ଘାସ ଉଠର ପଥରକୁ ନେଇ ବେଶ୍ ସୁନ୍ଦର ଗଳ୍ପଟିଏ ଅବା ଉପନ୍ୟାସଟିଏ ଲେଖିପାରନ୍ତି ସେ । ଓଡ଼ିଆ ସାହିତ୍ୟ ସମ୍ପର୍କରେ ବହୁ ତଥ୍ୟ ତ କଥା ପଦପଦକେ ବାହାରି ଆସେ ତାଙ୍କ ଭଣ୍ଡାରୁ । ଲେଖାରେ , କଥାରେ ଫୁଟିଉଠେ ମଣିଷ ଜୀବନର ଦର୍ଶନ । ସମାଜର ବ୍ୟବସ୍ଥା ଆଉ ଅବ୍ୟବସ୍ଥା । ପ୍ରକୃତରେ ବିଚକ୍ଷଣ ସ୍ରଷ୍ଟା ସେ । କଲମ ଧରିଲେ ଝରିଆସେ ଶବ୍ଦର ସମ୍ଭାର । ଖୁବ୍ କମ୍ ସମୟରେ ଗଳ୍ପଟିଏ ଲେଖି, ଅଳ୍ପ କେତୋଟି ଘଟଣାରେ ଉପନ୍ୟାସ ଲେଖି ଧରାଇ ଦେବେ ସେ । କଥାକାର କାହ୍ନୁଚରଣଙ୍କ ସହ ବାଜିମାରି ବାର ଘଣ୍ଟାରେ ଦଶଟି ଗଳ୍ପ ଲେଖିବାର ସାମର୍ଥ୍ୟ ତ ପ୍ରମାଣ କରି ଦେଇଛନ୍ତି ନିଜ ଜୀବନରେ । ଏକାଥରକେ ଏକାଧିକ ରଚନା ପାଇଁ ଡିକ୍‌ଟେସନ ଦେଇପାରିଛନ୍ତିସେ । ତୀକ୍ଷ୍ଣ ଧୀଶକ୍ତି ପାଖରେ ପରାଜିତ ହେବାକୁ ପଡ଼େ । ଯୁକ୍ତି କରିବାକୁ ଆରମ୍ଭ କରିଛନ୍ତି ତ

ନିଜ ସପକ୍ଷରେ ସମର୍ଥନ ନେବେ ହିଁ ନେବେ । ସହରୀ ପରିବେଶରେ, ଶିକ୍ଷିତ ମହଲରେ ତାଙ୍କର ସମସ୍ତ ଜୀବନ ଅତିବାହିତ ହୋଇଯାଇଥିଲା । ସେ ଗଭୀର ଭାବେ ପ୍ରତ୍ୟକ୍ଷ କରିଥିଲେ ସହରୀ ସଭ୍ୟତା ଓ ସହରୀ ମଣିଷର ଅବସ୍ଥା ଓ ପ୍ରକୃତିକୁ । ସେଥିପାଇଁ ତାଙ୍କ ସୃଷ୍ଟିରେ ତାଙ୍କ ଅନୁଭବସିଦ୍ଧ ବାସ୍ତବତାର କଳାତ୍ମକ ପରିପ୍ରକାଶ ଘଟିଛି । ସେ ଉଚ୍ଚ-ଚିନ୍ତନ-ଗୋଷ୍ଠୀର ପ୍ରିୟ ସାହିତ୍ୟିକ ହୋଇଯାଇଛନ୍ତି କାଳେ କାଳେ । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ମାଧ୍ୟମରେ ହିଁ ସେ ଆଧୁନିକ ମଣିଷ ହୃଦୟର ନିଗୂଢ଼ ରହସ୍ୟ ସନ୍ଧାନ କରିବାକୁ ସକ୍ଷମ ହୋଇଛନ୍ତି । ବାସ୍ତବତା ଆନୟନରେ ମଧ୍ୟ ସଫଳ ହୋଇଛନ୍ତି । ପ୍ରାୟ ଅଧିକାଂଶ ସୃଷ୍ଟିରେ ଏପରିକି ଉପନ୍ୟାସରେ ବହୁ ଚରିତ୍ରର କୋଳାହଳ ନକରାଇ ମଣିଷ ଜୀବନର ସତ୍ୟତାକୁ ମନନଧର୍ମୀ କରି ଗଢ଼ି ତୋଳିଛନ୍ତି ଅଳ୍ପ କେତୋଟି ଚରିତ୍ର ମଧ୍ୟଦେଇ ।

ରାଜକିଶୋରଙ୍କର କ୍ଷୁଦ୍ରଗଳ୍ପକୁ ଲକ୍ଷ୍ୟକଲେ ସେଥିରେ ପ୍ରବନ୍ଧର ଚିନ୍ତା-ଅନୁଚିନ୍ତା ଓ କାହାଣୀର ପ୍ରବହମାନତାକୁ ଯେ କେହି ଲକ୍ଷ୍ୟ କରିପାରିବ । ଗଳ୍ପ ମଧ୍ୟଦେଇ ଚିନ୍ତାର ଅପୂର୍ବ ବିଳାସ ତାଙ୍କୁ ଏକ ସ୍ୱତନ୍ତ୍ର ଆସନ ପ୍ରଦାନ କରିବାକୁ ବାଧ୍ୟ । କେତେକ ଗଳ୍ପରେ ନାଟକୀୟ ଆତ୍ମକଥନ (Dramatic Monologue)ର ବୈଚିତ୍ର୍ୟ ଉପଲବ୍ଧ । ଉଭୟ ଯୌବନସିକ୍ତ ଓ ଯନ୍ତ୍ରଣାସିକ୍ତ ଜୀବନକୁ ବିଶ୍ଳେଷଣ କରିଛନ୍ତି ସେ । ଆଙ୍ଗିକରେ ବୈଚିତ୍ର୍ୟ ସୃଷ୍ଟି କରିବାର ଅଭିପ୍ସା ପୋଷଣ ନକରି ଗଭୀର ଜୀବନ ଦର୍ଶନ ଓ ତୀକ୍ଷ୍ଣ ଦୃଷ୍ଟିଭଙ୍ଗୀନେଇ ଆତ୍ମିକ ଭାବସମ୍ପଦକୁ ସମୃଦ୍ଧ କରିବାରେ ସଫଳ ହୋଇଛନ୍ତି । 'ଘାସ' ଠାରୁ 'ସୁଲ୍‌ତାନ୍' ଯାଏ 'ତୁଠ ପଥର'ରୁ 'ବିଶ୍ୱାସ' ଯାଏ ଶତଶତ ଗଳ୍ପରେ ତାଙ୍କର ରହିଛି ନୂତନତାର ସ୍ପର୍ଶ । ସୂକ୍ଷ୍ମ ଦୃଷ୍ଟିକୋଣର ମନୋରମ ପରିପ୍ରକାଶ ।

କେବଳ ଗଳ୍ପ ଓ ଉପନ୍ୟାସରେ ରାଜକିଶୋରଙ୍କ ଲେଖକ ଜୀବନ ସୀମିତ ନଥିଲା । ତାଙ୍କର 'ଲେଖକ ଓ ପାଠକ' ଏବଂ 'ଓଡ଼ିଆ ସାହିତ୍ୟର ଆଗପଛ' ଶୀର୍ଷକ ଆଲୋଚନା ଗ୍ରନ୍ଥ ମୌଳିକ ଚିନ୍ତନର ପରିଚୟ ଦିଏ । ଅନୁଭୂତି ଲବ୍ଧ ତଥ୍ୟରେ ଏହି ଆଲୋଚନା ଗ୍ରନ୍ଥ ଦ୍ୱୟ ଚିନ୍ତା ଉଦ୍ରେକକାରୀ । ଏତଦ୍‌ବ୍ୟତୀତ ଭ୍ରମଣ କାହାଣୀ 'ଗୋଆ-ଡାମନ-ଡ୍ୟୁ', ଜୀବନୀ 'ଦେଶବନ୍ଧୁ ଚିତ୍ତରଂଜନ' ଓ ଭିନ୍ନସ୍ୱାଦର ରଚନା 'ମାଳିକା ଓ ପ୍ରଳୟ', 'ଗଛଲତାର ଆତ୍ମା' ପାଠକ ମନକୁ ଛୁଏଁ । ସଂଖ୍ୟାଧିକ ଉପନିଷଦ ଓ ବିଭିନ୍ନ ଧର୍ମର ସଂକ୍ଷିପ୍ତ ବ୍ୟାଖ୍ୟା ରାଜକିଶୋରଙ୍କ ମୌଳିକ ଚିନ୍ତର ଉଜ୍ଜ୍ୱଳ ସ୍ମାରକୀ ।



ରାଜକିଶୋରଙ୍କ ରଚନାଚୟ ବିଶେଷ ଶ୍ରେଣୀର ପାଠକଙ୍କ ଦ୍ୱାରା ଆଦୃତ । ନିର୍ଦ୍ଦିଷ୍ଟ ପାଠକବର୍ଗ ସୃଷ୍ଟି କରିବାରେ ସିଦ୍ଧି ତାଙ୍କ ସୃଷ୍ଟିକର୍ମର ଅନ୍ୟତମ ସଫଳତା । ପ୍ରିୟ ପାଠକମାନଙ୍କ ପାଇଁ ନିଜ ସୃଷ୍ଟିରେ ବିଶେଷ କରି ଉପନ୍ୟାସରେ ଅନ୍ୟୂନ ଏକ ପୃଷ୍ଠା ପାଠକୀୟ ମତାମତ ପାଇଁ ସର୍ବଦା ଥାଏ ସଂରକ୍ଷିତ । ପାଠକର ମତାମତକୁ ସମ୍ମାନ ଦେବାର ମାନସିକତା ଏଥିରୁ ବେଶ୍ ସ୍ପଷ୍ଟ । ମଧ୍ୟବିତ୍ତ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀର ପାଠକମାନଙ୍କ ପାଇଁ ତାଙ୍କ ସୃଷ୍ଟି ସମୂହ ଉନ୍ମୁଖ । କାରଣ ଏହି ଶ୍ରେଣୀୟ ଚରିତ୍ରକୁ ନେଇ ତାଙ୍କର ରଚନା ସମ୍ଭାର ଗତିଶୀଳ । ପାଠକାନୁସାରୀ ଭାଷାଶୈଳୀ ସହ ଜୀବନାନୁଭୂତିର ସଫଳ ସମ୍ମିଶ୍ରଣରେ ରାଜକିଶୋରୀୟ କଥାକୋଣାର୍କ ସୌନ୍ଦର୍ଯ୍ୟମୟ ।

୧୯୩୪ରୁ ଶେଷ ଜୀବନ ଯାଏ ଲେଖନୀ କେବେ ତାଙ୍କର ଥମି ଯାଇ ନଥିଲା । ତେଣୁ ଆଜିର ପୀଢ଼ିଙ୍କୁ ପତ୍ର ମାଧ୍ୟମରେ କିଛି ଲେଖିଲା ବେଳେ ଲେଖି ଦେଉଥିଲେ ଗୋଟଇଏ ଧାଡ଼ି 'ଯେହେତୁ ମୋତେ ଅଠାଅଶି/ଅଣାଅଶି/ ଅଶି ତେଣୁ ମୁଁ ଅଧିକ ତତ୍ପର ।' କଲମ ଚାଲିଥିବ ଯେ ଚାଲିଥିବ ଖୁବ୍ କ୍ଷିପ୍ର ଗତିରେ । ପୋଷ୍ଟକାର୍ଡ଼ ପରେ ପୋଷ୍ଟ କାର୍ଡ଼ ସରି ଚାଲିଥିବ । ଆଶ୍ଚର୍ଯ୍ୟ ହେଲେ ଏହା ସତ୍ୟ, ଦିନେ ଦିନେ ତାଙ୍କ କୌଣସି ଛୋଟ ବଡ଼ ବନ୍ଧୁଙ୍କ ପାଖରେ ପହଞ୍ଚଯାଏ ୧୫/୨୦ ଖଣ୍ଡ ପୋଷ୍ଟକାର୍ଡ଼ । ସବୁଥିରେ ଆଜିର ସମସ୍ୟାର କଥା, ସମୟ କଥା ଆଉ ସମାଜର କଥା । ଏକାଥରକେ ଏତେ ପୋଷ୍ଟକାର୍ଡ଼ ଚିଠି ପାଇ ଯଦି କେହି ଏହାର କାରଣ ପଚାରନ୍ତି, ତେବେ ହସି ହସି କହିଉଠନ୍ତି, ''ତୁମେ ଯେଉଁଠି ରହିବ ସେଠି ପୋଷ୍ଟମ୍ୟାନ ଯଦି ତୁମକୁ ନ ଚିହ୍ନିଲା ତେବେ ଲାଭ କ'ଣ । ଦ୍ୱିତୀୟରେ ଗୋଟିଏ ଲଫାପାରେ ଲେଖି ପଠାଇଥିଲେ ଯଦି ସେଇଟା ହଜିଯାଇଥାନ୍ତା, ତେବେ କଥା ସରିଲା । ସବୁ ଶ୍ରମ ପାଣିରେ... ୧୨/୧୫ ପୋଷ୍ଟକାର୍ଡ଼ ମଧ୍ୟରୁ ୪/୫ ହଜିଗଲେ, ''ମୁଁ କ'ଣ ଲେଖିଛି ତହିଁରୁ କିଛି ତ ଜାଣିହେବ ।'' କିଛି ପୋଷ୍ଟକାର୍ଡ଼ ମହଜୁଦ୍ ସବୁବେଳେ ରହିଥିବ ତାଙ୍କ ପାଖରେ ଭାବର ବିନିମୟ ପାଇଁ । ହଁ, କେବଳ ପୋଷ୍ଟକାର୍ଡ଼ ନୁହେଁ ତା ସହିତ ପଢ଼ିବା ପାଇଁ ଲେନସ, ସାହିତ୍ୟ, ଧର୍ମ ଓ ସଂସ୍କୃତ ସଂପର୍କୀୟ କିଛି ଲେଖା, କଲମ,' ଲମ୍ବାବିଡ଼ିର ପ୍ୟାକେଟ, ଦିଆସିଲି ।

୧୯୪୭ ରୁ ୪୮ ଓ ୧୯୪୯ରୁ ୫୨ ମସିହା ଭିତରେ ଆଇନ କଲେଜର ଅଧ୍ୟାପନ କରୁଥିବା ସମୟରେ ରାଜୁବାବୁ ଥିଲେ ଓଡ଼ିଶା ଟାଇମ୍ସର ଧାରାବାହିକ ଲେଖକ । ଲେଖକ କେବଳ ମଧ ତାଙ୍କ ପରିଚୟ ନୁହେଁ । କିଛି ପତ୍ରିକାର ସଂପାଦନା କରିଥିଲେ ସେ ।

୧୯୫୨ରେ ଆଇନ କଲେଜରେ ଅଧ୍ୟାପକ ଥିବା ବେଳେ ସେ ସଂପାଦନା କରୁଥିଲେ 'Scrutiny' ନାମକ ପାକ୍ଷିକ ପତ୍ରିକା । ପୂର୍ବରୁ 'ଦେଶକଥା' (୧୯୩୬) ମଧ୍ୟ ତାଙ୍କ ସଂପାଦନାରେ ପ୍ରକାଶ ପାଉଥିଲା । ପ୍ରଥମେ ସାପ୍ତାହିକୀ ଓ ପରେ ଦୈନିକ ଭାବେ ପ୍ରକାଶ ପାଇଥିବା ସମ୍ବାଦ ବୁଲେଟିନ୍ 'ପାଠଚକ୍ର'ର (୧୯୭୧) ମଧ୍ୟ ସେ ଥିଲେ ସଂପାଦକ । ତେଣୁ ସାମ୍ବାଦିକତା କ୍ଷେତ୍ରରେ ପ୍ରଚୁର ଅଭିଜ୍ଞତା ରହିଛି ତାଙ୍କର । ସେ ମଧ୍ୟ ପ୍ରକାଶ କରିଥିଲେ 'ଆମର ଆଇନ' 'କଟକ ଲ' ନୋଟିସ୍' ନାମରେ ଦୁଇଟି ପାକ୍ଷିକ ପତ୍ରିକା ।

କେବଳ ପୁସ୍ତକ ପ୍ରଣେତା ଭାବେ ନୁହେଁ ପୁସ୍ତକ ପ୍ରକାଶକ ଭାବେ ରାଜୁ ପଟ୍ଟନାୟକ ମଧ୍ୟ ସ୍ମରଣୀୟ । କୌଣସି ପ୍ରକାଶକ ଲେଖକ ହେବା ଅଧିକାଂଶ ସ୍ଥଳେ ଦେଖାଯାଇଛି, ମାତ୍ର ଜଣେ ପ୍ରତିଷ୍ଠିତ ଲେଖକ ପ୍ରକାଶକ ହେବାର ନମୁନା ଦେଖାଇଛନ୍ତି ଏହି ପୁରୁଷ । ୧୯୫୮ ମସିହାରେ ସେ ପ୍ରତିଷ୍ଠା କରିଥିଲେ 'ଶାନ୍ତି ନିବାସ ବାଣୀମନ୍ଦିର' ପୁସ୍ତକ ପ୍ରଣୟନ ସଂସ୍ଥା । ନିଜ ବହିଗୁଡ଼ିକୁ ପ୍ରକାଶ କରିବା ପାଇଁ ପ୍ରକାଶକମାନଙ୍କ ଦ୍ୱାରାସ୍ଥ ନ ହେବା କାରଣ ଯେତେଟା ନୁହେଁ, ଓଡ଼ିଆ ସାହିତ୍ୟକୁ ସମୃଦ୍ଧି ପଥରେ ବାଟ କଢ଼ାଇନେବା ପାଇଁ ଏହି ପୁସ୍ତକ ପ୍ରଣୟନ ସଂସ୍ଥା ପ୍ରତିଷ୍ଠା କରିବା ଥିଲା ତାଙ୍କର ପ୍ରକୃତ ଉଦ୍ଦେଶ୍ୟ । ନିଜର ବହୁ ଗଳ୍ପ ଓ ଉପନ୍ୟାସର ପ୍ରକାଶକ ଥିଲା ଏହି 'ଶାନ୍ତି ନିବାସ ବାଣୀମନ୍ଦିର ।' ଏହି ପ୍ରକାଶନ ସଂସ୍ଥାରୁ ମଧ୍ୟ ପ୍ରକାଶ ପାଇଥିଲା ଭଗ୍ନୀ ତଥା ଓଡ଼ିଆ ଉପନ୍ୟାସ ସାହିତ୍ୟର ଅନ୍ୟତମ ବରିଷ୍ଠ ଲେଖିକା ବସନ୍ତ କୁମାରୀ ପଟ୍ଟନାୟକଙ୍କ ବହୁ କୃତି । ମାତ୍ର ପ୍ରକାଶନ ସଂସ୍ଥା ତିଷ୍ଠି ରହିଥିଲା ଦୀର୍ଘକାଳ । ସଙ୍କୋଚତା ହିଁ କାଳ ହେଲା । ଲେଖକମାନେ ବୁଝିଲେ ନି କିମ୍ବା ବେପାରୀ ଭଳି ହୋଇପାରିଲେନି ରାଜକିଶୋର । ଏ ବିଫଳତା କେବେ କେମିତି ମନରେ ଉଙ୍କିମାରେ ମାତ୍ର କେବେ ବିବ୍ରତ ହୁଅନ୍ତି ନାହିଁ ସେ ଏ ସଂପର୍କରେ କହନ୍ତି, "ଆମେ ପ୍ରକାଶକ ଦୃଷ୍ଟିକୋଣରୁ ଚିନ୍ତା କରିନଥିଲୁ । ଓଡ଼ିଆ ଲେଖକ ବହିଛାପି ନିଜେ କିଛି ପଇସା ପାଇବ ସେଥିପାଇଁ ଚେଷ୍ଟା କରିଥିଲୁ । ସାହିତ୍ୟ ସେବା ହିଁ ଆମ ଆଗରେ ଥିଲା ମୁଖ୍ୟ କଥା ।"

ସମସାମୟିକ ରାଜନୀତିରେ ମଧ୍ୟ ପ୍ରବେଶ ଥିଲା ରାଜକିଶୋରଙ୍କର । ସୁବିଧାବାଦୀ ରାଜନୀତିକୁ ପସନ୍ଦ କରୁନଥିଲେ ସେ । ସ୍ୱତନ୍ତ୍ରଦଳର ସଂଗଠନ ସମ୍ପାଦକ, ସ୍ୱତନ୍ତ୍ର ଦଳ ପକ୍ଷରୁ ୧୯୬୪ରେ ରାଜ୍ୟସଭାକୁ ନିର୍ବାଚିତ ହେବାପାଇଁ ପ୍ରତିଦ୍ୱନ୍ଦ୍ୱିତା ଓ ପରେ ସ୍ୱତନ୍ତ୍ର ଦଳ ତ୍ୟାଗକରି ସ୍ୱାଧୀନ ଓଡ଼ିଶା ଦଳ ଗଠନ ତାଙ୍କ ରାଜନୈତିକ ଜୀବନର ଗୋଟିଏ



ଗୋଟିଏ ଅଧ୍ୟାୟ । ଅବଶ୍ୟ ସଚ୍ଚୋଟତା, ସ୍ପଷ୍ଟବାଦିତା ଏ କ୍ଷେତ୍ରରେ ତାଙ୍କ ପାଇଁ ସେପରି ଉଲ୍ଲେଖନୀୟ ସଫଳତା ଆଣିପାରି ନଥିଲା । ରାଜ୍ୟସଭା ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ପରାଜିତ ହୋଇଥିଲେ ସେ ।

ସ୍ୱାଧୀନଚେତା ମଣିଷ ଜଣେ ରାଜକିଶୋର । ଜୀବନରେ କାହା ସହିତ ସମଝୋତା କରିନାହାନ୍ତି ସେ । ଗାଦିରେ ବସିଥିବା ମଣିଷମାନଙ୍କ ସହ, କୌଣସି ଲୋକ ସହ, ପ୍ରକାଶକମାନଙ୍କ ସହ କିମ୍ବା ନିଜ ଆଇନ୍ ବ୍ୟବସାୟ ସହ । ଏପରିକି ଛାତ୍ରମାନଙ୍କ ସପକ୍ଷରେ ଯାଇ ସେ ପରିତ୍ୟାଗ କରିଥିଲେ ଆଇନ୍ କଲେଜର ଅଧ୍ୟାପନା କାର୍ଯ୍ୟ ୧୯୫୨ ମସିହାରେ । ୧୯୫୨ରେ ସୁଦାନରେ ଚାକିରୀ ସୁପାରିଶ, ୧୯୬୧ରେ ଭାରତ ସରକାରଙ୍କ ଚାକିରୀ ସୁପାରିଶ ଓ ୧୯୬୯ରେ ଓଡ଼ିଶା ହାଇକୋର୍ଟ ପାଇଁ ତାଙ୍କୁ ମନୋନୟନ କରାଯାଇଥିଲେ ହେଁ, ସିଗୁଡ଼ିକୁ ଏଡ଼ାଇ ଦେଇଥିଲେ ସେ । ଅନ୍ୟାୟ, ଅନୀତିର ବିରୋଧରେ କାର୍ଯ୍ୟ କରିବାର ଜନ୍ମଜାତ ପ୍ରବଣତା କାର୍ଯ୍ୟକାରୀ ହେଉଥିଲା ସର୍ବଦା ତାଙ୍କଠାରେ । ସେଥିପାଇଁ ତ ସେ ଥିଲେ ସ୍ୱାଭିମାନର ସ୍ୱାକ୍ଷରିତ ପୁରୁଷ । ନିଜର ଅତି ଆପଣାର ମଣିଷମାନେ ବିଭିନ୍ନ କ୍ଷେତ୍ରରେ ଉଚ୍ଚ ଆସନରେ ଅଧିଷ୍ଠିତ ହୋଇଥିଲେ ମଧ ସେ ଦିନେ ହେଲେ ସେମାନଙ୍କ ଦ୍ୱାରସ୍ଥ ହୋଇନାହାନ୍ତି । ସେ ବୁଝିଥିଲେ ସାହିତ୍ୟ ସିଂହାସନ ପାଖକୁ ନ ଯାଇ ସିଂହାସନ ସାହିତ୍ୟ ପାଖକୁ ଆସୁ । ଜୀବନରେ ଝଡ଼ଝଞ୍ଜା ଆସିଛି ମାତ୍ର କୌଣସିଥିକୁ ଭ୍ରୂକ୍ଷେପ ନାହିଁ । ଜୀବନର ପ୍ରତିଟି ମୁହୂର୍ତ୍ତରେ ନିଜର ଆତ୍ମପ୍ରତ୍ୟୟ ଉପରେ ସେ ଖୁବ୍ ଆସ୍ଥାବାନ୍ ହୋଇ ରହିଛନ୍ତି । ଓଡ଼ିଆ ସାହିତ୍ୟର ଲବ୍ଧପ୍ରତିଷ୍ଠ ସ୍ରଷ୍ଟା ହୋଇ ପ୍ରତିଷ୍ଠା ଓ ପୁରସ୍କାରରେ ଆଦୌ ବିଶ୍ୱାସ ରଖିନାହାନ୍ତି ସେ । ବହୁ କ୍ଷେତ୍ରରେ ତାଙ୍କ ପ୍ରାପ୍ୟରୁ ତାଙ୍କୁ ବଞ୍ଚିତ କରାଯାଇଛି ମାତ୍ର ତାକୁ ଖାତିର କରିନାହାନ୍ତି । ମଣିଷକୁ ଖୁବ୍ ଭଲ ପାଉଥିବାରୁ ଓ ବାସ୍ତବତାକୁ ଅନୁଭବ କରିପାରୁ ଥିବାରୁ ବୃତ୍ତି କ୍ଷେତ୍ରରେ ସେ ଆର୍ଥିକ ଲାଭବାନ ହୋଇପାରି ନାହାନ୍ତି । ଏତେ ସ୍ୱାଭିମାନ ଯେ କାହିଁକି ତାହା ବୁଝି ହୁଏ ନାହିଁ । ପଚାରିଲେ କହନ୍ତି "ସ୍ୱାଭିମାନୀ ଅର୍ଥ ମୁଁ ବୁଝେନା । ଆଉ ସ୍ୱାଭିମାନ ହେଉଛି ବିଭିନ୍ନ ସ୍ତରର ଲୋକଙ୍କ ଭିତରେ ଉତ୍କର୍ଷତା । ଓଡ଼ିଶାର ଲୋକ ଅଣଓଡ଼ିଆ । ଲୋକଙ୍କ ପଶ୍ଚାଦ୍‌ଗାମୀ ହେବାକୁ ଗୌରବ ମନେକରନ୍ତି । ଏଣୁ ଓଡ଼ିଶାରେ ସ୍ୱାଭିମାନ ବୋଲି ଗୋଟିଏ ବିଷୟ କସ୍ମିନ୍‌କାଳେ ଆସିପାରେନା । ତେଣୁ ସ୍ୱାଭିମାନ ପାଇଁ ସୁଯୋଗ ନାହିଁ । କେହି ଏକକ ଭାବରେ ସ୍ୱାଭିମାନୀ ହୋଇପାରିବ ନାହିଁ ।" ଗୋଡ଼ାଣିଆ ହୋଇ ନଥିବାରୁ ୧୯୭୦ରେ 'ଝଙ୍କାର ପୁରସ୍କାର' ଛଡ଼ା ଅନ୍ୟ କିଛି ପୁରସ୍କାର ମିଳିନି ତାଙ୍କୁ । ଯଦିଓ

କେତେଟି ଅନୁଷ୍ଠାନ ପକ୍ଷରୁ ତାଙ୍କୁ ପୁରସ୍କୃତ କରିବା ଘୋଷଣା କରାଯାଇଥିଲେ ହେଁ ସେ ସେହି ପୁରସ୍କାରଙ୍କୁ ଗ୍ରହଣ କରି ନାହାନ୍ତି । ନିକଟରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ୧୯୯୬ର ସର୍ବୋଚ୍ଚ ପୁରସ୍କାର 'ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର' ପ୍ରଦାନ କରି ଦୀର୍ଘ ଦିନରୁ ତାଙ୍କ ପ୍ରତି ହୋଇଆସିଥିବା ଅବହେଳାର ପ୍ରାୟଶ୍ଚିତ କରିଛି । ବିଳମ୍ବରେ ହେଲେହେଁ ଓଡ଼ିଆ ସାହିତ୍ୟ ପାଇଁ ଏହାଥିଲା ସବୁଠାରୁ ସୁଖଦ ସମାଚାର । ରାଧାମୋହନ ଗଡ଼ନାୟକ (୧୯୯୩), କୃଷ୍ଣଚନ୍ଦ୍ର ତ୍ରିପାଠୀ (୧୯୯୪) ଓ ନବେର ସାମନ୍ତରାୟ (୧୯୯୫)ଙ୍କ ପରେ ଚତୁର୍ଥ ମାତ୍ର ପ୍ରଥମ ଗାଳ୍ପିକ ଔପନ୍ୟାସିକ ଭାବେ ଏ ପୁରସ୍କାର ମିଳିଥିଲା ରାଜ କିଶୋରଙ୍କୁ ।

ଶରୀରରେ ତାଙ୍କର ବାର୍ଦ୍ଧକ୍ୟ ଆସିଥିଲା ମାତ୍ର ଦୀପ୍ତି ମଉଳି ନଥିଲା । ସମାଜର ସମସ୍ୟାକୁ ଉଚ୍ଚସ୍ତରରେ ଉଠାଇବାରେ ବିରତ ହୋଇ ନଥିଲେ ସେ । ନିର୍ବାଚନ କମିଶନର, ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି ଯାଏ ଚାଲିଛି ତାଙ୍କର ପତ୍ରାଳାପ । ବୁଝିହୁଏନା ଯେଉଁ ସମାଜ ତାଙ୍କୁ ବୁଝିପାରିନି, ତାଙ୍କ ପାଇଁ ଆହା ପଦେ କହିବାକୁ ତୁଣ୍ଡ ଖୋଲିନି, ତାହା ପାଇଁ ଏତେ କିଆଁ ବ୍ୟସ୍ତ ବିବ୍ରତ । ହଁ, ମଣିଷ ପରି ମଣିଷଟିଏ ପରା ସିଏ । ସବୁ ବୁଝନ୍ତି ବୁଝାଇବାକୁ ଚେଷ୍ଟା କରନ୍ତି ସେ । ଦୃଢ଼ ମନୋବଳ ତ ପାଖରେ ଅଛି ନା, କିଏ ନପଚାରୁ । ଏହି ମନୋବଳ ତ ୧୯୪୮ ମସିହାରେ ତାଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦ ପାଇଁ ପ୍ରାଣକୃଷ୍ଣ ପରିଜାଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପ୍ରୋତ୍ସାହନ ଯୋଗାଇଥିଲା । ମନୋବଳ ସହଯୋଗରୁ ସେ ତୀକ୍ଷ୍ଣ ଧୀଶକ୍ତିକୁ ନେଇ ଆଗେଇ ଥିଲେ ଦୀର୍ଘ ଜୀବନ୍ୟା ।

୧୯୯୬ ମସିହା ମାର୍ଚ୍ଚମାସ ୧ ତାରିଖ ରାତ୍ରି ତିନିଟା । ଏହି ଆଜୀବନ ସାରସ୍ୱତ ସାଧକଙ୍କ ଜୀବନାବସାନ ଘଟିଲା । ଜୀବନର ଶେଷ ପର୍ଯ୍ୟାୟ ଯାଏ ତାଙ୍କ ଲେଖନୀ ଥିଲା ସକ୍ରିୟ । ସେ ବାଣ୍ଟି ଚାଲିଥିଲେ ନିଜ ଚିନ୍ତା ଚେତନାକୁ । ତାଙ୍କ ନଶ୍ୱର ଶରୀରର ଅବସାନ ଘଟିଛି ସିନା ସ୍ୱଚ୍ଛନ୍ଦ ଭାବ, ତୀର୍ଯ୍ୟକ୍ ବ୍ୟଞ୍ଜନା, ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଓ ଜୀବନାନୁଭୂତିରେ ସମୃଦ୍ଧ ତାଙ୍କ ସାରସ୍ୱତ କୃତି ସମ୍ଭାରର ଦୀପ୍ତି, ତାଙ୍କ ଅମରତ୍ୱର ବାର୍ତ୍ତା ବହନ କରିଚାଲିଥିବ ଯୁଗଯୁଗ ଧରି ।





# ଜୀବନର ଆଶାନ୍ୱିତ ରାଗିଣୀ:
# ସିନ୍ଦୂର ଗାର

**ଡ଼ଃ. ରତ୍ନାକର ଚଇନି**

...ଏବଂ ଏଇଥିପାଇଁ ବୋଧହୁଏ ପିଲା ଦିନେ ଆମକୁ ଉପନ୍ୟାସ ବହି ପଢ଼ିବାକୁ ବାରଣ କରାଯାଉଥିଲା । ଏତେ ବାରଣ ସତ୍ତ୍ୱେ ଯଦିବା ଆମେ କେହି ଉପନ୍ୟାସ ପଢ଼ିବାର ମୋହ ସମ୍ବରଣ କରି ପାରୁ ନଥିଲୁ,—ପଢୁଥିଲୁ ଲୁଚେଇ ଚୋରେଇ, ପଢ଼ା ବହି ଭିତରେ ରଖି କିମ୍ବା ସମସ୍ତେ ଶୋଇ ସାରିଲା ପରେ । ଠିକ୍ ଅସରନ୍ତି ଭାବାବେଗକୁ ହୃଦୟ ଭିତରେ ଚାପି ରଖି ପ୍ରେମିକ ପ୍ରେମିକା ହେବାର ସ୍ୱପ୍ନ ଦେଖିଥିବା ସାରଦା ଓ ମିନି ଭଳି । ଏମାନେ ଆମରି ଭଳି ଦୁଇଟି ଚରିତ୍ର 'ସିନ୍ଦୂରଗାର'ର ।

'ସିନ୍ଦୂରଗାର' କଥାକାର ରାଜକିଶୋର ପଟ୍ଟନାୟକଙ୍କ ପ୍ରାଥମିକ ସ୍ରଷ୍ଟା ସ୍ୱାକ୍ଷର । ଗୋଟାଏ ଶକ୍ତିମାନ ଲେଖନୀର ପହିଲି ସ୍ପର୍ଶ । ଉଭୟ ମାଟି ଓ ମଣିଷଙ୍କୁ ଚିହ୍ନିବାର ପ୍ରାରମ୍ଭିକ ପ୍ରଚେଷ୍ଟା । ସେତେବେଳକୁ ଏତେବଡ଼ ମାନବାୟିତ-ଭୂଖଣ୍ଡ ଭାରତ ବର୍ଷ ପରଧୀନତାର ଶୃଙ୍ଖଳରୁ ମୁକୁଳି ଆସିଥାଏ । ଶିକ୍ଷା ଆଉ ପରବର୍ତ୍ତିତ ସଭ୍ୟତା ଧାପେ ଧାପେ କରି ଆଗେଇ ଯାଉଥାଏ କେଉଁ ଏକ କଳ୍ପଲୋକୀୟ ଆବେଗ ଧରି । ଅର୍ଥନୀତିର ମୁନିଆଁ ଦାନ୍ତର ଖାପ୍‌ଚରୁ ଖସି ପ୍ରଗତିର ଉଚ୍ଚ ପାହାଚ ଆଡ଼କୁ ମୁହାଁଉଥାଏ ଭାରତୀୟ ତରୁଣ-ମନ । ଠିକ୍ ସେତିକିବେଳେ 'ସିନ୍ଦୂରଗାର'ର ରକ୍ଷଣଶୀଳ ଗ୍ରାମୀଣ ପରିବାରରେ ଦେଖା ଦେଇଥିଲେ ଜୀବନଙ୍କୁ ନୂଆ ମାପ କାଠିରେ ପରଖିବାକୁ ଚେଷ୍ଟା କରୁଥିବା ସାରଦା ଓ ସୌଦାମିନୀ ।

ପରସ୍ପର ପରସ୍ପରକୁ ଭେଟିବାର ଏକମାତ୍ର ପୃଷ୍ଠଭୂମି ଥିଲା 'ଗଣେଶ ପୂଜା' । ନନ୍ଦିପୁର ଗ୍ରାମର ବିସ୍ମୟକର ବାଳିକା ସୌଦାମିନୀ ଏଠା'ରେ ଦେଖା ହୋଇଛି ସାରଦା ସହିତ,—ଯାହାଙ୍କର ସହରରେ ନଡ଼ିଆ ଗଛ ଘେରା କୋଠାଘର ଖଣ୍ଡେ ଅଛି । ସୌଦାମିନୀର ବଡ଼ପଣ ହେଉଛି—ସେ ଅପର ପ୍ରାଇମେରୀ ବୃତ୍ତି ପାଇଛି; ନନ୍ଦିପୁର ଭଳି ଅଖ୍ୟାତ ଗ୍ରାମର ନାଁ ସୌଦାମିନୀର ଫଟୋ ସହିତ ଖବର କାଗଜରେ ବାହାରିଛି । ସୌଦାମିନୀ ପାଠ ପଢ଼ିଛି, ଯେଉଁ ପାଠ ସେଇ ଗାଁରେ ପରିବେଶ ଭିତରେ ଉପଲବ୍ଧ । ରକ୍ଷଣଶୀଳ ପରିବାର ଓ ପରିବେଶ ଗୋଟିଏ ଭୌଗୋଳିକ ସୀମାଟପି ଅନ୍ୟତ୍ର ପାଠ ପଢ଼ିଯିବାକୁ ସୌଦାମିନୀକୁ ଛାଡ଼ି ନାହାନ୍ତି । ସୌଦାମିନୀର ପରିବେଶ ଏତିକିରେ ସୀମିତ ନୁହେଁ; ସେ କାହାକୁ ଚିଠି





ଖଣ୍ଡେ ଲେଖି ପାରିବ ନାହିଁ; ସେ ସର୍ବସାଧାରଣରେ କୌଣସି ପୁଅ ପିଲା ସାଙ୍ଗରେ ମିଶି ପାରିବ ନାହିଁ, କି କାହାକୁ ମନ ଖୋଲି ହସି ପଦେ କଥା କହିପାରିବ ନାହିଁ ।

ଅନ୍ୟପଟରେ ଅଭିଜାତର ମୋହର ପାଇବା ଅପେକ୍ଷାରେ ଥିବା ସାରଦାର ପରିବାର ଆହୁରି ରକ୍ଷଣଶୀଳ । ତାକୁ ଧାରଣା ଦିଆ ଯାଇଛି ତାଙ୍କ ପରିପାର୍ଶ୍ୱରେ ବାସ କରୁଥିବା ପ୍ରତ୍ୟେକ ପରିବାର ମାନ ସଂଭ୍ରମତାରେ ତାଙ୍କଠୁଁ ଛୋଟ । ଅତଏବ ସାରଦା କାହା ସାଙ୍ଗରେ ମିଶିଲା, ବସିଲା, ହସିଲା—ଏସବୁକୁ ପରିବାରର ସଦସ୍ୟମାନେ ଲକ୍ଷ୍ୟ କରିବାର କଥା । ମୋଟ ଉପରେ ନବ୍ୟ-ଅଭିଜାତ ପ୍ରେମୀ ପରିବାରର ଲକ୍ଷ୍ମଣ ରେଖା ଭିତରେ ଆବଦ୍ଧ ରହିବାକୁ ବାଧ ହୋଇଥିବା ଚିର ସଙ୍କୁଚିତ ପ୍ରେମିକଟିଏ ସାରଦା । ସେ ପ୍ରେମ ପାଗଳ; ମାତ୍ର ପାରିବାରିକ ଆଦର୍ଶର ଡ୍ରିଗାର ଟପିପାରୁ ନ ଥିବା ସୁନା ପିଲାଟିଏ । ଊନବିଂଶ ଶତାବ୍ଦୀର ଆଦର୍ଶବାଦରେ ବନ୍ଧା ହୋଇଥିବା ଗୃହପାଳିତ ପଶୁଟିଏ ସେ । ସେ ତା ନିଜର ନୁହେଁ, ସେ ତା' ପରିବାରର ।

ଏମାନଙ୍କ ପରିବେଶ ଭିନ୍ନ ଥିଲା । ପରିସ୍ଥିତିକୁ ଅତିକ୍ରମ କରି ବାହାରକୁ ଆସ ପାରୁନ ଥିଲେ ସେମାନେ । ଆଜିର ସମୟଠାରୁ ପଚାଶ ବର୍ଷ ତଳକୁ ଫେରିଗଲେ ଏଭଳି ଚରିତ୍ରମାନଙ୍କୁ ଚିହ୍ନି ହେବ—ବୁଝି ହେବ ସେମାନଙ୍କର ଅନ୍ତର୍ଦାହୀ ସମସ୍ୟାକୁ । ସେଥିପାଇଁ ଏମାନଙ୍କୁ ପାଠକମାନଙ୍କ ସହିତ ପରିଚିତ କରାଇବାକୁ ଯାଇ ଲେଖକ କହିଛନ୍ତି—'ପୁଅଟିଏ ଆଉ ଝିଅଟିଏ, ସେତିକି । ସେମାନଙ୍କର ପରିଚୟ ହେଉଚି ତାଙ୍କ ଘରର, ବାପ-ମା ଓ ଗୁରୁଜନଙ୍କର ପରିଚୟ । ସେମାନଙ୍କର କିଛି ସ୍ୱାତନ୍ତ୍ର୍ୟ, ବିଶେଷତ୍ୱ ଅବା ସ୍ୱକୀୟ ମନ, ଇଚ୍ଛା, ବୁଦ୍ଧି ନଥିଲା । ଅଧିକ ପରିଚୟ ଅବା କାହିଁ ଆସିବ ?'' ଅତଏବ ସେମାନଙ୍କ ଭିତରେ କିଛିଟା ଆନ୍ତରିକତାର ସୂତ୍ରପାତ ହେଲେ ପରିବାର୍କୁ ଆଇଁଷିଣିଆ ଗନ୍ଧ ହୁଏ । ସେଥିପାଇଁ ପରିବାରର ଏତେ ବାଧା ।

ସାରଦା ଓ ମିନି ପରସ୍ପରକୁ ଭଲ ପାଇ ପାରି ନ ଥିଲେ । ଲେଖକଙ୍କର ସମାଜ ପାଖରେ ସେ କଥା ପ୍ରକାଶ କରିବାର ଶକ୍ତି ସାହସ ମଧ ନଥିଲା । ତେଣୁ ସେ ଗୋଟାଏ ନିର୍ଦ୍ଦିଷ୍ଟ ସରହଦ ପର୍ଯ୍ୟନ୍ତ ପାଠକର ମାନସିକତାକୁ ଉତ୍ତରଣ କରି କହୁଥିଲେ—''ସାରଦା ଓ ମିନି ପ୍ରଥମ ଦେଖାପରେ ପରସ୍ପରକୁ 'ସୁଖ' ପାଉଥିଲେ ।'' ସମ୍ଭବତଃ ତତ୍‌କାଳୀନ ଭାରତୀୟ ସମାଜ 'ଭଲ ପାଇବା' ଅପେକ୍ଷା 'ସୁଖ ପାଇବାକୁ' ଅଧିକ ଶାଳୀନ ମନେ କରୁଥିଲା । ସେଇଥିପାଇଁ ବୋଧହୁଏ, ଆମେ ଉପନ୍ୟାସ ପଢ଼ିଲେ—(ପିଲାଦିନେ; ଏବେ ଏ ସଂକ୍ରାମକ ବ୍ୟାଧି ଡେଇଁବାର ଆଉ ସମ୍ଭାବନା ନାହିଁ )—କାଳେ ଆମକୁ ଭଲ ପାଇବା/ ବା ସୁଖ



ପାଇବା ବ୍ୟାଧି ସଂକ୍ରମିତ ହେବ, ତେଣୁ ଆମ ପରିବାର ଆମକୁ ନିରାପଦ ଦୂରତ୍ୱରେ ରଖିବାକୁ ଉଚିତ ମନେ କରୁଥିଲା ।

ଅବଶ୍ୟ ଓଡ଼ିଆ ଉପନ୍ୟାସର ଏହି ପର୍ଯ୍ୟାୟ ଆମର ଜାତୀୟ ଜୀବନର ଅସଂଖ୍ୟ ସମସ୍ୟାଠାରୁ ଦୂରେଇ ରହି, କେବଳ ପ୍ରେମପ୍ରଣୟର ଲୋରୀ ଶୁଣାଇବାକୁ ଅଧିକ ପସନ୍ଦ କରିଥିବା ଲକ୍ଷ୍ୟ କରାଯାଏ । ଲେଖକ ରାଜକିଶୋରଙ୍କ ଅନୁଜା ବସନ୍ତ କୁମାରୀଙ୍କ 'ଅମଡ଼ାବାଟ'ର ସମସ୍ୟା 'ସିନ୍ଦୂରଗାର'ରେ ନାହିଁ । ବରଂ ଏକଥା ମୁକ୍ତ କଣ୍ଠରେ କୁହାଯାଇ ପାରିବ ଯେ, 'ସିନ୍ଦୂରଗାର'ର ପଟ୍ଟଭୂମି ପ୍ରେମ-ପ୍ରଣୟର ହା-ହୁତାଶରେ କାରୁଣ୍ୟ ଜର୍ଜରିତ । ସୌଦାମିନୀ ଜୀବନର ପରିପକ୍ୱ ବୟସରେ ଅସଫଳତାର ସ୍ୱୀକାରୋକ୍ତି ଗାଇ ଉଠି କହି ଉଠିଛି—''ସତେ କ'ଣ ମୁଁ ଭଲ ପାଇ ଜାଣି ନାହିଁ ? ପିଲାଦିନରୁ ଆଜିଯାଏ ମୁଁ କ'ଣ ଥିରେ ହେଲେ ସାରଦା ବାବୁଙ୍କୁ, ଶୁଭଙ୍କର ବାବୁଙ୍କୁ ଆଉ ତୁମକୁ—କାହାରିକୁ ଭଲ ପାଇ ନାହିଁ ? ସବୁ କ'ଣ ମିଛ ? ଏ ଜୀବନଟା କ'ଣ ଆଉଥରେ ନୂଆକରି ଗଢ଼ି ହେବ ନାହିଁ । ସବୁଦିନେ ମୁଁ କ'ଣ ନିଜ ସମସ୍ତଙ୍କ ପାଖରେ ଲୁଚାଇ ମନକୁ କହୁଥିବି—ମୁଁ ଭଲ ପାଇଛି ।''

'ସିନ୍ଦୂରଗାର' ପଢ଼ିଲେ ଠକ ମନରେ ଏଭଳି ପ୍ରତିକ୍ରିୟା ଆସିବା ସ୍ୱାଭାବିକ ଯେ—ଲେଖକ ସାରଦା-ରାଜୀବ-ଶୁଭଙ୍କର ଅପେକ୍ଷା ସୌଦାମିନୀ ପାଇଁ ଅଧିକ ସମ୍ବେଦନଶୀଳ । ସୌଦାମିନୀ ଲଇଲା/ଗୌରୀ/ଜୁଲିଏଟ୍ କିମ୍ବା ବିଶ୍ୱର ଅନ୍ୟତମା ପ୍ରେମିକା ତରୁଣୀ ଭଳି ହତାଶା ଜର୍ଜରିତା ନିଷ୍ଫଳା ପ୍ରେମିକାଟିଏ । ସେ ସାରା ଜୀବନ ମନର ମଣିଷକୁ ପାଇବା ପାଇଁ ତପସ୍ୟା କରିଛି; ମାତ୍ର ସେଥିରେ ସେ ବିଫଳ ହୋଇଛି । ଯାହାକୁ ସ୍ୱାମୀ ରୂପେ ପାଇଛି (ଶୁଭଙ୍କର), ତାଙ୍କ ଆଗରେ ପ୍ରେମିକାର କ୍ଷତାକ୍ତ ଜୀବନକୁ ଲୁଚାଇ ଭୟରେ ଜଡ଼ସଡ଼ ହୋଇ ବଂଚି ରହିଛି । ପ୍ରତି ମୁହୂର୍ତ୍ତରେ ନିଜର ଗୋପନୀୟ ଅତୀତ ପ୍ରକାଶ ପାଇଯିବାର ଭୟ ତାକୁ କାବୁ କରି ରଖିଛି । ପ୍ରଥମ ପ୍ରେମର ସ୍ମୃତିକୁ ପୁଂଜି କରି ସେ ବଂଚି ରହିବାକୁ ଇଚ୍ଛା କରୁଥିଲେ ମଧ୍ୟ, ସେଥିରେ ସେ ସଫଳ ହୋଇପାରୁନି । ପାପ-ପୁଣ୍ୟର ଦ୍ୱାହୀ ସାରା ଜୀବନ ପାଇଁ ପ୍ରେମିକା ହୋଇ ରହିବାର ବାଧା ଦେଇଛି ।

ଅଶିକ୍ଷା, ଅନ୍ଧବିଶ୍ୱାସ ଓ ଆର୍ଥନୀତିକ ଦୁଃସ୍ଥିତି ଭାରତୀୟ ଯୁବମାନସକୁ ଅକାଳରେ କିପରି ଜରାଜୀର୍ଣ୍ଣ କରି ପକାଉଥିଲା, ତାହାର ଏକ ମୁକ୍ତ ଇସ୍ତାହାର ଏଇ 'ସିନ୍ଦୂରଗାର' । ଇପ୍‌ସିତ ପୁରୁଷ ହାତରୁ ଟିପାଏ ସିନ୍ଦୂର ପାଇଁ ଭାରତୀୟ ଯୁବତୀର ଯେଉଁ ଅସୀମ ଆକାଂକ୍ଷା ତାହାରି ଚିରନ୍ତନୀ ସାମ-ସଙ୍ଗୀତ ଶୁଣାଇଚି ଏ ଉପନ୍ୟାସ । ଭାଷାର ସାବଲୀଳ ପରିପ୍ରକାଶ

ସ୍ଥଳ ବିଶେଷରେ ଲେଖକୀୟ ମନ୍ତବ୍ୟରେ ଦାର୍ଶନିକ ହୋଇ ଉଠିଛି । ମୋଟ ଉପରେ ଏହାର ସୁଖପାଠ୍ୟ ଢଙ୍ଗ ଚରିତ୍ରମାନଙ୍କର ବ୍ୟକ୍ତିସତ୍ତା ଭିତରୁ ଅନ୍ତଃସତ୍ତାକୁ ଚିହ୍ନିବାରେ ସହାୟକ ହୁଏ । କାହାଣୀରେ ଘଟାଟୋପ ନ ଥିଲେ ବି ଚରିତ୍ର କେତୋଟିର ମାନବୀୟ ଆବେଦନ ବେଶ୍ ହୃଦ୍ୟ ।

'ସିନ୍ଦୂରଗାର' ଅର୍ଦ୍ଧ ଶତାବ୍ଦୀ ତଳର ଉତ୍କଳୀୟ ଜନଜୀବନର ଇତିହାସ । ଆମ ଜୀବନର ସୀମାହୀନ ସମସ୍ୟାର କାହାଣୀ, ଆମ ନିର୍ବାକ ଜୀବନଧାରାରେ କିପରି ପ୍ରସ୍ଫୁଟିତ ତାହା ଏଥିରୁ ଜଣାପଡ଼େ । ଲେଖକ ସବୁ ଚରିତ୍ରଙ୍କ ପ୍ରତି ସମାନ ଦୃଷ୍ଟି ଦେଇ ପାରି ନଥିବାରୁ ମୁଖବନ୍ଧରେ ଦୁଃଖ ପ୍ରକାଶ କରିଛନ୍ତି । ବିଶେଷକରି ତାଙ୍କ ଅନସୂୟା ଅବିଚାରର ଶିକାର ହୋଇଛି ବୋଲି ସେ କହିଛନ୍ତି । ସମାଲୋଚକମାନେ ଲେଖକଙ୍କର ଏ ଦୁର୍ବଳତାକୁ ଜାଣି କହି ଆସିଛନ୍ତି—ଜଣେ ଲେଖକ ଜୀବନସାରା ଚେଷ୍ଟା କରି ତାହାର କଳ୍ପିତ ସର୍ବଶେଷ ଉପନ୍ୟାସ ଲେଖିପାରେ ନାହିଁ । ରାଜକିଶୋର ପଟ୍ଟନାୟକଙ୍କର ଅବଶୋଷ ଠିକ୍ ସେଇ ଧରଣର ।

'ସିନ୍ଦୂରଗାର' ଉପନ୍ୟାସ ତାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ ହୋଇ ନପାରେ; କିନ୍ତୁ ଜୀବନର ସର୍ବଶ୍ରେଷ୍ଠ ସତ୍ୟକୁ ପ୍ରକାଶ କରିବାର ପ୍ରୟାସ କରିଛି । ସେଇଥିପାଇଁ ବୋଧେ ମିନି କହିଚି—'ସାରା ଜୀବନ ଚେଷ୍ଟା କରି ମୁଁ ଭଲ ପାଇ ଜାଣିଲି ନାହିଁ ।'

ବାଦାମବାଡ଼ି

କଟକ-୧୨





# 'ପଥୁକି'ର ଚଲାପଥ

ରସରାଜ ନାରାୟଣ ପ୍ରସାଦ ସିଂହ

''ଦିନେ ସେ ଥିଲେ ଏଇ ଦୁନିଆଁ ପଥର ପଥୁକି ।

ଆଜି ସେ ହେଲେ ଦୁନିଆଁ ସେ'ପାରି ପଥର ପଥୁକି ।

ଆଜି ଆଉ କାଲି ଭିତରେ କେତେ ପାର୍ଥକ୍ୟ—କେତେ ବ୍ୟବଧାନ । ଦିନେ ତାଙ୍କ ଲେଖନୀରୁ ମଧୁ ଝରୁଥିଲା । ଗଳ୍ପ ଛଳରେ ସେ କହୁଥିଲେ ମଣିଷର ଅନ୍ତର ତଳର ବ୍ୟଥାର କଥା । ବହୁ ଉପନ୍ୟାସ, ବହୁ ଗଳ୍ପ ସଂକଳନର ସେ ଥିଲେ ପ୍ରଣେତା । ତାଙ୍କରି ଗଳ୍ପ ସଂକଳନ 'ପଥୁକି' କଥା କହି ଆଜି ମୁଁ ତାଙ୍କର ଜନ୍ମ ଜୟନ୍ତୀରେ ବାଢୁଛି ତାଙ୍କ ପ୍ରତି ପ୍ରୀତିର ନୈବେଦ୍ୟ ।

ତାଙ୍କର ବହୁ ଗଳ୍ପ ସଂକଳନ ମଧ୍ୟରୁ ଏକ ସଂକଳନ -'ପଥୁକି' (୧୯୫୧) । ଦୁନିଆଁର ଅଙ୍କା ବଙ୍କା ସର୍ପିଳ ପଥର ପରିଧିରେ ସେ ରଚନା କରିଥିଲେ ଏକ ଏକ ଚରିତ୍ର ଯାହା ପରିପୂର୍ଣ୍ଣ ଥିଲା—ବାସ୍ତବତାର ନିଚ୍ଛକ ପ୍ରତିଛବିରେ । ଉକ୍ତ ଗଳ୍ପ ସଂକଳନର ଦଶଟି ଗଳ୍ପର ସମାରୋହ । ସତେ ଯେମିତି ଦଶଟି ଚରିତ୍ର । ସେଗୁଡ଼ିକ ସେ କାଳର ଗୋଟିଏ ଗୋଟିଏ ଜୀବନ୍ତ ଚିତ୍ର ଭଳି ମନେ ହୁଏ ।

ସଂକଳନଟିର ପ୍ରଥମ ଗଳ୍ପ—''ବାଟୋଇ'' । ବିଧବା ମାତାର ସନ୍ତାନ ପ୍ରତି ବାତ୍ସଲ୍ୟ ମମତା ଓ ସଦ୍ୟ ପୁତ୍ରହରା ମାତାର ଶୋକ ବିହ୍ୱଳତାର ସେଇ ଗଳ୍ପଟି ହେଲା ଏକ ଜୀବନ୍ତ ଆଲେଖ୍ୟ ।

ଦ୍ୱିତୀୟ ଗଳ୍ପଟିର ନାମ—'ପୋଡ଼ା ଦାଗ' । ମଣିଷ ଯାହା ଚାହେଁ ତାହା ପାଏନା । ଦାମୋଦର ଚାହିଁଥିଲା କବିଟିଏ ହେବ । ବହି ଲେଖିବ । ସେ ବହଟି ହେବ ତା'ର ସ୍ମୃତିସ୍ତମ୍ଭ । ସାହିତ୍ୟ ସମାଜରେ ବା ମଲା ମଶାଣିରେ ତା' ପାଇଁ ପ୍ରସ୍ତର ଖଣ୍ଡିକର ଆବଶ୍ୟକତା ରହିବ ନାହିଁ । କାରଣ ବହିଟି ଭଲ ହେଲେ ତାହା ଓଡ଼ିଆ ସାହିତ୍ୟର ଇତିହାସ ଭିତରକୁ ଯାଇ, ଯୁଗ ଯୁଗ ଧରି ତାହା ଲୋକ ଲୋଚନକୁ ଆସିବ । ଦାମୋଦର ବହୁ ଚେଷ୍ଟା କରି ବହି ଖଣ୍ଡେ ଲେଖିଲା । ସେ ବହିର ନାଁ ଦେଲା—'ଚଳନ୍ତିକା' । ସେଇ 'ଚଳନ୍ତିକା'ରେ ଦାମୋଦର ଲେଖିଲା—ଖିଆଲ ପାଇଁ ଜୀବନ କିଛି ନୁହେଁ— ବଞ୍ଚିବା ପାଇଁ ଧନ କିଛି ନୁହେଁ । ଧନ ସଂସାରରେ ବଡ଼ ନୁହେଁ—ମନ ବଡ଼ । ଇଚ୍ଛା ଥିଲେ ଉପାୟ ଆସେ । ଏହିପରି

କେତେ ବଡ଼ ବଡ଼ କଥା । କିନ୍ତୁ ବାସ୍ତବତାର କଷଟି ପଥରରେ ଘସିହୋଇ ଶେଷରେ ଜାଣିଲା—ସଂସାରରେ ବଡ଼ ହେଉଛି ଧନ । ତାହା ପରେ ହେଲା ମନ ଓ ମନର ଇଚ୍ଛା । କାରଣ ଦେହ ଉପରେ ମନ ବଡ଼ ଓ ମନ ଉପରେ ବଡ଼ ହେଲା ସଂସାର । ଗାନ୍ଧିକଙ୍କ ସୃଜନଶୀଳ ଆତ୍ମାର କଥା ଓ ସଂସାରର ବାସ୍ତବତାର ସୁସମନ୍ୱୟ ଘଟିଛି ଉକ୍ତ ଗଳ୍ପରେ –

''ପଥୁକି''ର ତୃତୀୟ ଗପଟିର ନାମ ହେଲା—'ପାଉଁଶ' । ସଂସାରର ଘୋରଣା ଭିତରେ କେତେ ମଣିଷ ସେମିତି ଅକାରଣରେ, ଅସମୟରେ ଅକାଳରେ ପେଷି ହୋଇ ଯାଆନ୍ତି—ଯେମିତି ପେଷି ହୋଇ ଯାଆନ୍ତି ଜ୍ୟେଷ୍ଠ ମାସର ଧୂମାଳରେ ବଗିଚାରେ ସୌଖୀନ ଗଛମାଳ ଗୋଟିକ ପରେ ଗୋଟିଏ ଏବଂ ଶୋଇ ଯାଆନ୍ତି ମାଟି ଉପରେ । ପେଷି ହୋଇଗଲା ନଟବର । ସେମିତି ଦୁଇ ବର୍ଷ ଅକାରଣରେ ଜେଲ ଦଣ୍ଡ ଭୋଗିବା ପରେ ସେ ବାହାରକୁ ଆସି ଦେଖିଲା—ଯେଉଁମାନଙ୍କୁ ସେ ଭଲ ପାଏ ସେମାନେ ତାକୁ ଘୃଣା କରନ୍ତି । ଅକାରଣରେ ଅବେଳରେ ରାସ୍ତା କଡ଼ରେ ଝରିଗଲା—ନଟବରର ଜୀବନର ଫୁଲ । ଅଦରକାରୀ କୁଟା ଯେମିତି ନଈ ସୁଅରେ ଭାସିଯାଏ ଆଉ ନଈପାଣିରେ ସଢ଼ି ଯାଏ—ସେମିତି ନଟବରର ପ୍ରାଣ ପକ୍ଷୀ ଉଡ଼ିଗଲା ଓ ଦେହ ମିଳେଇ ଗଲା କଟକ ସହରର ରାସ୍ତା କଡ଼ରେ ।

ବହିର ଚତୁର୍ଥ ଗଳ୍ପଟିର ଶୀର୍ଷକ—'ବାଲି' । ସେ ଏକ ଚୋରାବାଲି । କଥାକାର ରାଜକିଶୋର ସେଇ ଗପଟିର ପ୍ରଥମ ପରିଚ୍ଛେଦରେ କହିଛନ୍ତି ସେଇଟି ଗପ ନୁହେଁ । କାରଣ କଳ୍ପନାରୁ କାଢ଼ି, ମନରୁ ଗଢ଼ି ଅଜା ବୁଢ଼ାଟା ର ପିଲା ନାତିମାନଙ୍କୁ ଆଗରେ ଯାହା ବାଢ଼ି ଦିଏ ସେହି ହେଉଛି ଗପ । କିନ୍ତୁ ନିତିଦିନିଆ ଜୀବନରେ ଯାହା ଘଟେ, ସଂସାରର ବଡ଼ ଦାଣ୍ଡରେ ଯେଉଁ ମଡ଼ ବୁହାହୁଏ, ଦାଣ୍ଡର ଧୂଳିରେ ଯେଉଁ ଭିକାରୀ ଗଡ଼ି ଗଡ଼ି ମରେ । ତା'ର ଦୁଃଖମୟ ଜୀବନର କରୁଣ ଚିତ୍ର ଗପ ନୁହେଁ । ଯେଉଁ ଦୁଃଖରେ ସରସତା ନଥାଏ, ଯେଉଁ କରୁଣ କାହାଣୀରେ ମନ ହସେ ନାହିଁ, ସେହିପ୍ରକାର ଅଶାନ୍ତି ଭରା ଜଂଜାଳ ଆସି ପହଂଚେ ବହୁତ ବେଶୀ, କେବଳ ଗରୀବର ଜୀବନରେ । ପାନ ଦୋକାନୀ ଶତ୍ରୁରା ଓରଫ ଶତ୍ରୁଘ୍ନ ଜୀବନରେ ସେମିତି ହତାଶିଆ ଦୁଃଖର ଜୁଆର ଅକାଳରେ ଝରିଗଲା । ବାପ ଶତ୍ରୁରା ମନରେ ପୁଅ ପ୍ରତି ସ୍ନେହ ଥିଲା । କିନ୍ତୁ ଜଞ୍ଜାଳର କୋଳାହଳ ଭିତରେ ସେଇ ସ୍ନେହ ମର୍ମର କେଉଁଠି ହଜି ଗଲା । ଧଳା ବାଲି ଉପରେ ଯେମିତି ଘାସ ଉଠେ ନାହିଁ, ସେମିତି ଦୁଃଖି ଜୀବନର ନିରିମାଖିଆ ଭାବନା ଭିତରେ ସୁଖ, ଶାନ୍ତି, ଆଶା, ଆକାଂକ୍ଷା, ଦୟା କୃପା ଆଉ ସ୍ନେହର ମଂଜି ବୁଣି ହୋଇ ରହିଥିଲେବି ଗଛ ଉଠେ ନାହିଁ କି ଉଠିଲେ ବି ଉଧାଏ ନାହିଁ ।



ଗଳ୍ପ ସଂକଳନର ପଞ୍ଚମ ଗଳ୍ପ 'ଦୁଇ ପାଖ'ରେ କବି ଗରୀବ ଓ ଧନୀ ଦୁଇ ଜୀବନର ଦୁଇ ପାଖ ଚିତ୍ରିତ କରିଛନ୍ତି । ଜଣେ କେଉଟ—କଳା କାଠ ରଂଗ—କାଳୀ ଅନ୍ଧାରରୁ ନଈ ପୋଖରୀରେ ଡଙ୍ଗା ବାହେ । ସବୁ ଦୁଃଖ, କଷ୍ଟ ସହି ଜୀବନ ମୂର୍ଚ୍ଛା, କାମ କରେ ପେଟ ପାଇଁ । ସେ ହେଲା ଗରୀବ—'ବଳିଆ ।' ତା' ସ୍ତ୍ରୀ ହେଲା 'ସୁନେଇ' । ସ୍ୱାମୀ ସ୍ତ୍ରୀ କଳି କରନ୍ତି । ଅଧା ପେଟ-ଉପାସ ବି ରହନ୍ତି । ସଂସାରର ଚକ ତଳେ ପେଷି ହେଇ ପାଞ୍ଚଟି ପିଲାଙ୍କ ତୁଣ୍ଡରେ ଆହାର ଦେଇ ପାରନ୍ତିନି । ହେଲେ ପେଜ ପାଣି ଖାଇ ପିଲାମାନେ ମୋଟା ସୋଟା । ଆଉ ଜଣେ ତା'ରି ଚାହାଳୀ ସାଙ୍ଗ । ଥିଲା ବାଲା ଘର । ବାହା ହୋଇଛି । ସ୍ତ୍ରୀଟି ସୁନ୍ଦର । ପାଠୋଇ ଝିଅ । ଭଲକୁଳର-ଭଲ ଘରର । ଶଣ୍ଢଣା ଶିଖିଛି । —ଫେସନ ଜାଣିଛି । ତା'ର ପୁଅଟିଏ—ଝିଅଟିଏ । ଏତେ ଓଷଦ ଖାଇ ଏତେ ଯତ୍ନରେ ରହିବି ପିଲାମାନେ ନଅଙ୍କିଆ ଦିଶନ୍ତି । ଜଣେ ଗରୀବ ହୋଇ ବି ସୁଖରେ ଥାଏ । ଆଉ ଜଣେ ଧନ ଦଉଲତ ଥାଇ ବି ଅସୁଖୀ । ତାହାହେଲେ ସଂସାରରେ ସୁଖର ସଂଜ୍ଞା କ'ଣ ? ସୁଖ କାମନା କରି କେହି ସୁଖୀ ହୋଇ ପାରେନା । ବୁଦ୍ଧି ଓ ସଚେତନତା ସୁଖ ଉପଲବ୍ଧିରେ ଯେ ଆଦୌ ସହାୟକ ନୁହଁନ୍ତି ତାହା ଗାଳ୍ପିକ ରାଜକିଶୋର ପ୍ରତିପାଦନ କରିଛନ୍ତି ଏହି ଗଳ୍ପରେ । କାଠଯୋଡ଼ି ନଈର ମାଟି-ରାସ୍ତା ବର୍ଷାଦିନର ବଢ଼ିପାଣିରେ ପୋଛି ହୋଇ ଗଲା ପରି ଜୀବନର ଜୁଆର ମାଡ଼ି ଆସି ଗୋପାଳ ବାବୁଙ୍କ ଉପରୁ ପ୍ରତି ବର୍ଷର ଦାଗ ଉଠେଇ ନେଇଯାଏ —ଧୋବା ଘରେ ଲୁଗା ଉପରୁ ମଇଳା ଦାଗ ସଫା କଲା ପରେ ଉଠିଗଲା ପରି । ହେଲେ ବର୍ଷ ପରେ ବର୍ଷ ବିତିଯାଏ । କିନ୍ତୁ ଦି' କୋଡ଼ି ବର୍ଷ ପାରି ହୋଇ ଗଲା ପରେ ମଧ ତାଙ୍କ ବୋଉ ପାଖରେ ଗୋପାଳବାବୁ ପିଲା ରହିଥାଆନ୍ତି । ଏତେ ବର୍ଷ ପରେ ମଧ ତାଙ୍କ ବୋଉ ତାଙ୍କୁ କହେ—ବାବୁରେ—ସଂସାରଟା ବଡ଼ ସଇତାନ୍ । ତାକୁ ଡରିଗଲେ ସେ ତତେ ଡରେଇବ । ମାଡ଼ି ମକଚି ପଶିଯିବୁ । ତେବେ ସେ ବାଟ ଛାଡ଼ିଦବ । ତେବେ ଯାଇ ତୁ ପାଂଚଜଣରେ ଜଣେ ବୋଲି ଗଣା ହେବୁ । ରାଜ କିଶୋରଙ୍କର ଷଷ୍ଠ ଗଳ୍ପ 'ଧୂଳି'ରେ ମାତାର ପୁତ୍ର ପ୍ରତି ବାତ୍ସଲ୍ୟ ସ୍ନେହର ଶୀତଳ ଅମୃତ ଧାରା ପ୍ରତିଫଳିତ ।

'ପଥୁକି' ଗଳ୍ପ ସଂକଳନର ସପ୍ତମ ଗଳ୍ପ 'ଅପନ୍ତରାର ଫୁଲ' ର ନାୟକ ହେଲା ବିଦିଆ—ଯାହା ଜନ୍ମ ଜାତକ ସେ ନିଜେ ଜାଣେନା । ତା'ର ରୂପ ଆକୃତିର ମୋଟା ପାତଳା ଚେହେରା ଦେଖି ଚିହ୍ନାପରିଚ ଲୋକେ ବୟସ ଠଉରାନ୍ତି । ସେ ପ୍ରମାଣ କରେ ସଂସାରରେ ଖାଲି ପୁଣ୍ୟ କଲେ ଲୋକ ବଞ୍ଚେ ନାହିଁ । ପାପ, ଅନୀତି କଲେ ମଧ ମଣିଷ ବଞ୍ଚିବ । ବିଦିଆର ଜୀବନ ଦର୍ଶନକୁ ସେ ଏଇ ଗଳ୍ପ ମାଧମରେ ଏକ ନୂତନ ରୂପରେ ପ୍ରକାଶ କରିଛନ୍ତି ।





ପାଣି, ପବନ ଓ ସାର ପାଇ ଗଛରେ ଯେତେବେଳେ କଅଁଳ ପତ୍ରଗୁଡ଼ିକ ଛନ ଛନ ହୋଇ ଆଲୁଅକୁ ଫିଟି ଆସେ, ସେତେବେଳେ ତା'ର ଭାରି ଆଦର । ମଣିଷର ଯୌବନ ସେମିତି ସଂସାରରେ ବଡ଼ ପ୍ରିୟ । ସମସ୍ତେ ଖୋଜନ୍ତି ଯୌବନର ତେଜ, ଚଞ୍ଚଳତା, ଓଜ, ପ୍ରଖର ସ୍ନେହ ଓ ବଳିଷ୍ଠ ପ୍ରବଣତା । ହେଲେ କଅଁଳ ଛନଛନ ପତ୍ର ପାଚିଯାଏ । ପାଚିଯାଇ ମଧ୍ୟ ଝରି ଯିବା ଯାଏ ଗଛରେ ଲାଖି ରହେ । ପାଚିଲା ପରେ ତାହା ହୁଏ ଅଦରକାରୀ । କାରଣ ତାହା ଆକର୍ଷଣ ହରାଇ ବସେ । ତେଣୁ କାହାର ତା ପ୍ରତି ନଜର ନଥାଏ । ସେମିତି ନାରୀର ଯୌବନ ଚାଲିଗଲେ ସେ ହୁଏ ଅଦରକାରୀ ସାରା ଜଗତ ପାଇଁ, ଏପରିକି ନିଜର ଜନ୍ମିତ ପୁତ୍ର କନ୍ୟାମାନଙ୍କ ପାଖରେ । ଜୀବନର ଦୁର୍ବହ ଭାର ବୋହି ସେ ଚାଲେ ମୃତ୍ୟୁ ପର୍ଯ୍ୟନ୍ତ । ପୁତ୍ର-କନ୍ୟାମାନେ ତା'ର ମରଣର ଦିନ, ଗଣନ୍ତି । ଏହି କଠୋର ସତ୍ୟର ଉପସ୍ଥାପନା କରିଛନ୍ତି ରାଜକିଶୋର 'ପାଚିଲା ପତ୍ର' ଗଳ୍ପରେ ।

କେଉଁ ଗଡ଼ଜାତ ମୁଲକରୁ ଜଣେ ଅଧିକ ଘରଛଡ଼ା ପିଲା ଦେବରାଜ ମୂଲ ଲାଗି ରୋଜଗାର କରିବାକୁ ଆସିଲା କଟକ । ଧନୀ ଲୋକମାନେ ତାକୁ କାମରେ ଲଗେଇଲେ । ସେ କାମରେ ଠକି ଜାଣି ନଥିଲା । ତେଣୁ ପ୍ରବଳ ଉତ୍ସାହରେ ଦ୍ୱିଗୁଣ କାମ କଲା । ହେଲେ ଧନୀ ଲୋକେ ତାକୁ ଅଯଥା ସନ୍ଦେହ କଲେ ଚୋର ଭାବି ଏବଂ କାମ ନଦେଇ ବାହୁଡ଼ାଇ ଦେଲେ । ଏଇ ହେଲା ତାଙ୍କର ନବମ ଗଳ୍ପର ଭିତ୍ତିଭୂମି ଏବଂ ଏକ ସଭ୍ୟ ମଣିଷର ମନସ୍ତାତ୍ତ୍ୱିକ ଚିନ୍ତାଧାରାର ଚିତ୍ରିତ ବିଶ୍ଳେଷଣ ।

'ପଥୁକି'ର ଦଶମ ଓ ଶେଷ ଗଳ୍ପର ନାମ 'ପଞ୍ଚଆର' । ସେଥିରେ ଗାଳ୍ପିକ ବିଶ୍ୱବିଦ୍ୟାଳୟର ଛାତ୍ରାବାସର ଅନ୍ତେବାସୀ 'ମେନନ୍'ର ଚରିତ୍ରକୁ ଏକ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ସହ ଉପସ୍ଥାପିତ କରିଛନ୍ତି । ମେନନ୍ ଦେଖିବାକୁ ସୁନ୍ଦର । ସ୍ୱାସ୍ଥ୍ୟ ଭଲ ଓ ପୋଷାକ ରୁଚି ସଂପନ୍ନ । ସେ ଧନୀର ଏକମାତ୍ର ସନ୍ତାନ । ବୟସ ଅଠର ବର୍ଷ । ଦେଖିଲେ ଆଖି ଲାଖି ରହେ । ପିଲାଟି ଭାରି ବଂଧୁ ବତ୍ସଳ । କିନ୍ତୁ ସହପାଠୀମାନେ ତା'ଠାରୁ ଚାନ୍ଦାରେ ଚାନ୍ଦାରେ ସବୁ ଧନ ଖସେଇ ନିଅନ୍ତି । ସେ ବନ୍ଧୁମାନଙ୍କୁ ଖିଆଇବା, ପିନ୍ଧାଇବା, ନିଜ ଜିନିଷପତ୍ର ଦେବାରେ ସବୁ ପଇସା ଖର୍ଚ୍ଚ କରେ । ବନ୍ଧୁମାନଙ୍କ ଉତ୍ପାତରେ ସେ ସନ୍ଧ୍ୟାରେ ପଢ଼ି ପାରେ ନାହିଁ । ବନ୍ଧୁମାନେ ଖୋସାମତି କଥା କହି ମେନନ୍ ପାଖରୁ ସବୁ ଧନ ଉଡ଼େଇ ଦିଅନ୍ତି । ମେନନ୍ ବୁଝି ପାରେନା କିଏ ଆପଣାର, କିଏ ହିଁସୁକ, କିଏ ସ୍ୱାର୍ଥପର । ତାକୁ ପଢ଼ାପଢ଼ି କରିବାକୁ ମୋଟେ ସମୟ ମିଳେନା । ଦିନ ଯାକ ବନ୍ଧୁମାନଙ୍କ ସାଥୀରେ ଖିଆ, ଶୁଆ ସିନେମା ଦେଖା, ଖେଳାବୁଲା କରି ସେ ମୋଟେ ପାଠ ପଢ଼େନା । ଗୋଟିଏ ଶ୍ରେଣୀରେ ଦୁଇ ଦୁଇ ବର୍ଷ କଟାଇ ସେ ଶେଷରେ ଉତ୍ତୀର୍ଣ୍ଣ ହୁଏ । ଶେଷରେ ଦିନେ ଗୋଟିଏ, ଆହତ



ଠେକୁଆ ଛୁଆକୁ ଉଦ୍ଧାର କରି ନିଜ ପାଖରେ ରଖି ଠେକୁଆ ଦେହରୁ ଟାଇଫଏଡ଼ର ଜୀବାଣୁ ନେଇଁ ସେ ହସ୍‌ପିଟାଲକୁ ଯାଏ ଏବଂସେଇଠି ଇହଲୀଳା ସମ୍ବରଣ କରେ । ଭଗବାନ ବି ଶୁଣନ୍ତି ନାହିଁ ଶେଷ ମୁହୂର୍ତ୍ତରେ ମେନନ୍‌ର ପିତା ମାତାଙ୍କର କରୁଣ ମିନତି । ସେ ମଲାଦିନ କିନ୍ତୁ ଚାଲିଥାଏ ପରୀକ୍ଷାର ପଟୁଆର । ତା'ର ସହପାଠୀମାନେ ଚାଲିଥିଲେ ସେଇ ପଟୁଆରରେ ସାମିଲ ହୋଇ । ମେନନ୍ କିନ୍ତୁ ହଜିଗଲା ଚିରଦିନ ପାଇଁ ସେଇ ପଟୁଆରରେ ଯୋଗ ଦେଇ ନପାରି ।

ଓଡ଼ିଆ ସାହିତ୍ୟର ପ୍ରଖ୍ୟାତ କଥାକାର ରାଜକିଶୋରଙ୍କର ଗଳ୍ପର ଭିତ୍ତିଭୂମି ବଳିଷ୍ଠ ସ ନ୍ତାଙ୍କର ସୂକ୍ଷ୍ମ ଚିନ୍ତାଧାରା, ଗଭୀର ମନସ୍ତାତ୍ତ୍ୱିକ ବିଶ୍ଲେଷଣ ଭିତରେ ସଜୀବ । ସେଗୁଡ଼ିକ ପଢ଼ିଲେ ଆଜିର ଗଳ୍ପ ଓ ସେଦିନର ଗଳ୍ପ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଅନୁଭବ କରିହୁଏ । ତାଙ୍କର ପ୍ରତିଭାରେ ପରିପୁଷ୍ଟ ଗଳ୍ପଗୁଡ଼ିକ ଆଜିର ଗାଳ୍ପିକ ମାନଙ୍କର ପଥ ପ୍ରଦର୍ଶନ ହୋଇ ଆଗାମୀ ପିଢ଼ୀର ଗାଳ୍ପିକମାନଙ୍କୁ ନୂତନ ପ୍ରେରଣାରେ ଉଦ୍‌ବୁଦ୍ଧ କରିବ ଓ ସେମାନଙ୍କର ନୂତନ ଚିନ୍ତାଧାରାକୁ ବିକଶିତ କରିବ ।

ଆମକୁ ଗୋଟିଏ କଥା ମନେ ରଖିବାକୁ ହେବ ଯେ ଗଳ୍ପ ଉପନ୍ୟାସ ନୁହେଁ ବା ହୋଇ ପାରେନା । ଗଳ୍ପ ହେଲା ଗାଳ୍ପିକର ଗୋଟିଏ ମୁହୂର୍ତ୍ତର ଅନ୍ତର୍ଦ୍ୱନ୍ଦର ପରିଭାଷା ।

ରାଜକିଶୋର ତାଙ୍କର ପୂଜ୍ୟ ଗୁରୁଦେବଙ୍କୁ 'ପଥିକ' ଗଳ୍ପ ସଂକଳନଟି ଭକ୍ତି ନୈବେଦ୍ୟ ରୂପେ ଅର୍ପଣ କରି ଉତ୍ସର୍ଗ କରିଥିବା ପୃଷ୍ଠାଟି ମଧ୍ୟ ପ୍ରଣିଧାନ ଯୋଗ୍ୟ । ସେ ଅତି ବିନୟର ସହ ନିଜକୁ ସାହିତ୍ୟ ସେବାରୁ ବିଦାୟ ନେଉଥିବା ଜଣେ ଅଯୋଗ୍ୟ ଛାତ୍ର ବୋଲି ବର୍ଣ୍ଣନା କରିଛନ୍ତି । ଯାହା ମନେ ହୁଏ—ସାହିତ୍ୟ କ୍ଷେତ୍ରରେ ସେ ଜଣେ ଅଚିହ୍ନା ବ୍ୟକ୍ତିତ୍ୱ ହୋଇ ରହିଯିବାର କ୍ଷୋଭ ପ୍ରକାଶ କରିଛନ୍ତି—ଯାହା ଆଜିର କବି ଓ ସାହିତ୍ୟିକ ଗୋଷ୍ଠୀ ପ୍ରତି ଏକ ଚେତାବନୀ ବ୍ୟତୀତ ଆଉ କ'ଣ ବା ହୋଇ ପାରେ ?

ପୁଷ୍ପକ,<br>
ମଧୁପାଟଣା, କଟକ-୧୩







# ଗପ ଖଟୁଲିରେ ଶାଳଗ୍ରାମ

**ଡକ୍ଟର ନଟବର ଶତପଥୀ**

ରାଜକିଶୋର ପଟ୍ଟନାୟକ (୮ ଏପ୍ରିଲ, ୧୯୧୭—୧ ମାର୍ଚ୍ଚ, ୧୯୯୭) ବହୁ ବିଚିତ୍ର ଗଳ୍ପର ସ୍ରଷ୍ଟା । ଏକଦା ଥିଲେ ବହୁ ଲେଖାଳି । ଗଳ୍ପ ଉପନ୍ୟାସ ସମେତ ପ୍ରାୟ ୫୦ରୁ ଊର୍ଦ୍ଧ୍ୱ କୃତି ଓଡ଼ିଆ ସାରସ୍ୱତ ଜଗତକୁ ତାଙ୍କର ଅବଦାନ । ବିପୁଳ କୃତିର ଅଧିକାରୀ ଏହି ସ୍ରଷ୍ଟା, ଦୁର୍ଭାଗ୍ୟର ବିଷୟ ଏବେ ପାଠକ ପାଖରେ ବିସ୍ମୃତ । ପଠନଭୀରୁ ଓଡ଼ିଆ ଜାତି ସାହିତ୍ୟରସାନଭିଜ୍ଞ କେବଳ ନୁହେଁ ପ୍ରତିଭାର ଯଥାଯଥ ସମ୍ମାନ ଦେବାକୁ ମଧ୍ୟ କୁଣ୍ଠିତ । ପ୍ରତିଭା ଦେଶ ଓ କାଳର ଊର୍ଦ୍ଧ୍ୱରେ ଚିରନ୍ତନ ଏକ ମାନବୀୟ ସଂପଦ ବୋଲି ଯାହା ସର୍ବତ୍ର ବିଚାର କରାଯାଏ, ତାହା ବିସ୍ମୟର କଥା ରାଜକିଶୋରଙ୍କ ପାଖରେ କୃପଣ ହୋଇ ପଡ଼ିଛି । ଅର୍ଥ ଏହା ନୁହେଁ ଯେ ତାଙ୍କ ପ୍ରତିଭାର ବିକାଶ ଘଟିନାହିଁ । ବ୍ୟକ୍ତିର ପ୍ରତିଭାର ବିକାଶ ତା'ର ସାଧନ ସାପେକ୍ଷ; ମାତ୍ର ଦେଶ ଓ କାଳ ପ୍ରତିଭାର ଉତ୍ସାହଦାତା, ପ୍ରେରଣାର ଅନ୍ୟତମ ଭିତ୍ତି । ବିଶ୍ୱରେ ବହୁ ବ୍ୟକ୍ତି ଅଛନ୍ତି ଯେଉଁମାନେ ଆବଶ୍ୟକଠାରୁ ବହୁ ବିଜ୍ଞାପନ ଲଭି ବିପୁଳ କୃତିତ୍ୱର ଶିଖରୀ ମଣ୍ଡନ କରିଛନ୍ତି । ନିରଳସ ଓ ନୀରବ ସାଧନା ପ୍ରତିଭାଧରମାନଙ୍କର ଆଉ ଏକ ଗୁଣ । ସେମାନଙ୍କୁ ପୃଷ୍ଠପୋଷକତା ଦେଇ ସ୍ୱଜାତିର ଲୋକେ ଆଲୋକକୁ କେବଳ ଆଣନ୍ତି ନାହିଁ, ଭୂୟୋବିକାଶର ଉନ୍ମୁକ୍ତ ପଥ ମଧ୍ୟ ପ୍ରଦର୍ଶନ କରାନ୍ତି । କିନ୍ତୁ ରାଜକିଶୋରଙ୍କ ପାଇଁ ସବୁ ନିର୍ଦ୍ଦୟ ସାଜିଛନ୍ତି—ସ୍ୱଦେଶ, ସ୍ୱଭାଷାଭାଷୀ ଏବଂ ସ୍ୱକାଳରୁ ଅନୁକୂଳ ପରିସ୍ଥିତି ଓ ପରିବେଶ । ଅଥଚ ସେ କ୍ରୁର ପ୍ରକାଶକ, ଅନୁଦାର ସରକାରୀ ସଂସ୍ଥା ଓ ବଡ଼ ପାଠକମାନଙ୍କ ଭୀରୁତାକୁ ବାରମ୍ବାର ପ୍ରଶ୍ନ କରିଛନ୍ତି । ବହୁ ଉପାୟ ଓ ପନ୍ଥା ଦେଖାଇଛନ୍ତି—ପକ୍ଷାନ୍ତରରେ ପାଇଛନ୍ତି ନିଷ୍ଠୁର ଉପହାସ । କାଳ କୃପଣ ହୋଇଛି । ସେ କାର୍ପଣ୍ୟରେ ପାଠକ ଜଣେ ରୁଚିବନ୍ତ ସ୍ରଷ୍ଟାଠାରୁ ବିଚ୍ଛିନ୍ନ ହୋଇପଡ଼ିଛନ୍ତି । ପାଠକୀୟ ଉତ୍ସୁକତା ନଥାଇ ସାହିତ୍ୟ ଓ ସାହିତ୍ୟିକର ପ୍ରତିଷ୍ଠା କାଳୋତୀର୍ଣ୍ଣ ହେବା ବିରଳ । କୌତୁହଳ ଥିଲେ ପାଠକ ବା ସମାଲୋଚକ ପ୍ରତିଭାର ଅନ୍ୱେଷଣ କରେ ଏବଂ ସେଥିରୁ ଜାତିଗଠନର ଉପାଦନ ସଂଗ୍ରହ କରେ । ସ୍ୱର୍ଗତ ପଟ୍ଟନାୟକଙ୍କ ପାଖରେ ଥିଲା ସେ ଦିବ୍ୟ ଗୁଣ, ଥିଲା ପ୍ରତିଭାକୁ ନିଃଶେଷ କରି ଦେବାର ଇଚ୍ଛା । ମାତ୍ର ଉପଯୁକ୍ତ ଦେଶବାସୀ ସେ ପାଇଲେ ନାହିଁ । ଫଳରେ, ତାଙ୍କଠାରୁ ପାଇବାର ସମସ୍ତ ସୁଯୋଗ ତାଙ୍କର ତିରୋଧାନ ସହିତ ହୋଇଗଲା ବିଲୁପ୍ତ । ଏକ ପ୍ରତିଭା ସଂପର୍କରେ ଏହାଠାରୁ ଦୁଃଖାନ୍ତକ ପରିଣତି ଆଉ କ'ଣ ହୋଇ ପାରେ ?



ତାଙ୍କର ଅନ୍ୟତମ ଗଳ୍ପ ଗ୍ରନ୍ଥ 'ଶାଳଗ୍ରାମ' (ପ୍ର.ପ୍ର. ଏପ୍ରିଲ ୧୯୫୮-ଶାନ୍ତି ନିବାସ, ବାଣୀମନ୍ଦିର, ପୁରୀଘାଟ-କଟକ) । ଦଶଟି ଗଳ୍ପର ସମାହାର ଏ ସଂକଳନ । ପ୍ରଥମ ଗଳ୍ପ 'ସୁଲତାନ' ବ୍ୟତୀତ ଅନ୍ୟଗୁଡ଼ିକ ଆକାରରେ ଛୋଟ । ପ୍ରତ୍ୟେକ ଗଳ୍ପର କଥନରୀତି ଓ ଭାବ ସଂପଦ ଅନନ୍ୟ, ଅନବଦ୍ୟ । ସ୍ରଷ୍ଟା ପ୍ରାଣର ସୂକ୍ଷ୍ମବୋଧ ଲୁହ ପରି ଅବାରିତ ଝରି ପଡ଼ିଛି । ସବୁଠି ଯେମିତି ଲୁଚି ରହିଛି ଗୋଟାଏ ସାଧାରଣ ସତ୍ୟ ମଣିଷର କର୍ମ ଓ ସାଧନା । ଏହାର ଦୁର୍ଲ୍ଲଭତାରେ ମଣିଷ ଇତର ପଶୁଦ୍ୱାରା ମଧ୍ୟ ଉତ୍ପୀଡ଼ିତ ହୁଏ । ଶାନ୍ତିର ସମ୍ଭାବନା ଅପସରି ଯାଏ । 'ସୁଲତାନ' ଗଳ୍ପରେ ସ୍ୱର୍ଗତ ରାଜକିଶୋର ସତର୍କ କରାଇଛନ୍ତି । ଘରକୁ ନୂଆ ବିଲାତି କୁକୁର ଆସିଛି । ପୁରୁଣା କୁକୁରର ବଡ଼ ଅଭିମାନ ନୂଆ କଣ ଦରକାର ସେ ଥାଉଁ ଥାଉଁ ? ବହୁ ପତ୍ନୀକ ହେବା ଲାଳସାରେ ବ୍ୟକ୍ତି ନୂଆ ପତ୍ନୀଟି ପାଇଲେ ପୂର୍ବତମାମାନେ ନାକ ଫୁଲେଇଲା ପରି କଥା । ନୂଆପ୍ରତି ଆଦର ସ୍ୱରୂପ ପରିବାରରେ ବହୁ ଉଦ୍ଦୀପନା, ବହୁ ଚଞ୍ଚଳତା । ମାତ୍ର ତାହା ଅପସରି ଯାଏ, ଯେତେବେଳେ ଆଶା ନିରାଶରେ ପରିଣତ ହୁଏ । ସୁଲତାନ ଭୁକିଲା ନାହିଁ, ଇତର କୁକୁର ପରି ହାଣ୍ଡି ମାରା କଲା ଘରଦ୍ୱାର ଅପରିଷ୍କାର କଲା, ଅଖାଦ୍ୟ ଖାଇଲା । ପ୍ରସଙ୍ଗ କ୍ରମେ ଲେଖକଙ୍କର ବ୍ୟଙ୍ଗ ଦେଖନ୍ତୁ ପୁରୁଣା କୁକୁର ଟମି ପ୍ରତି ଅନାଗ୍ରହର ଲେଖକକୀୟ ପ୍ରତିକ୍ରିୟା । ନିର୍ଦ୍ଦୟ ମଣିଷ ପଶୁ ସ୍ନେହର ଓ ପଶୁ ସେବାର ପ୍ରତିଦାନ ଦେଇ ଜାଣେ ନାହିଁ । ଲୁଟିଖିଆ ଲୋକ ଖଟିଖିଆ ଲୋକକୁ ଯେମିତି ଶୋଷି ଦେଇ ଫୋପାଡ଼ି ଦିଏ—ସେମିତି ମଣିଷ ହୋଇଥିବାରୁ, ନିଜର ଖିଆଲ ପାଇଁ ଟମିର ପ୍ରତିବାଦକୁ ଖାତର ନ କରି ସେହି ପରିବାରଟି ଆଉ ଗୋଟିଏ କୁକୁର ଘରକୁ ଆଣିଲେ ।'' (ପୃ-୯) । ଖଟିଖିଆ ନିଃଶେଷ ହୋଇଯାଏ, ପ୍ରତିବାଦ କରେ, ମାତ୍ର ଶୁଣେ କିଏ ? ଲୁସୁନ୍ ଏକଦା ସୁନ୍ଦର କଥାଟିଏ କହିଥିଲେ, ''ମୂଷା ଚିତ୍କାର କରେ ବୋଲି ବିରାଡ଼ି କ'ଣ ମୂଷା ଖାଇବା ବନ୍ଦ କରେ ।'' ଖଟିଖିଆର ପ୍ରତିବାଦ ଲୁଟିଖିଆ ମନରେ କେବେ ସହାନୁଭୂତି ଆଣେନାହିଁ । ବରଂ ଆଣେ ଅଧିକ ନିଷ୍ଠୁରତା । ସୁଲତାନ ଖରାପ କୁକୁର । ପରିବାର ତାଠୁ ମୁକ୍ତି ଚାହିଁଛି, ମାତ୍ର ସମ୍ଭବ ହୋଇ ନାହିଁ, କାରଣ '' ମଣିଷର ତ ସହାନୁଭୂତି ଅଛି । ଏହି ସହାନୁଭୂତି ପାଇ ସେ ଖରାପ ମଣିଷ । ମଣିଷ ମଣିଷର ଦୁର୍ଗୁଣକୁ ମଧ୍ୟ ଭଲ ପାଇପାରେ । ଭଲ ନ ପାଇଲେ ଅନ୍ତତ ସହିପାରେ ।'' (ପୃ-୧୭) ଅତ୍ୟନ୍ତ ସରଳ, ସତ୍ୟ ଓ ସ୍ୱାଭାବିକ ଚିତ୍ରଟିଏ । ସୁଲତାନ ଖରାପ ବୋଲି ଫୋପାଡ଼ି ଦେଇ ହୁଏ ନାହିଁ, କାରଣ ସେ ପାଗଳ ହୋଇଗଲେ ତା'ର ବିଷରେ ମୃତ୍ୟୁର ଆଶଙ୍କା ଲୁଚି ରହିଛି । ମୃତ୍ୟୁର ଆଶଙ୍କା ପଶୁ ପ୍ରତି ଥିବା ମମତା ଏକ ହୋଇ ଯାଇଛି । ଖରାପ ହେଲେ ସୁଦ୍ଧା ମଣିଷର ମମତା ତା ପ୍ରତି ପୂର୍ଣ୍ଣ ଲୋପ ପାଏ ନାହିଁ । ଅଚ୍ଛେଦ୍ୟ ବନ୍ଧନରେ ବାନ୍ଧି ହୋଇଯାଏ । ବହୁ ଚେଷ୍ଟା ସତ୍ତ୍ୱେ ସୁଲତାନ ବଦଳି ନାହିଁ । ସମ୍ଭାବନା ମଧ୍ୟ





ନାହିଁ । କାରଣ ତା ପାଇଁ ତାଲିମର ଅଭାବ । ମମତା ଥିଲେ ତାଲିମ୍ କରି ହୁଏ ନାହିଁ । ମନେହୁଏ ଯେମିତି ଏ ଦୁଇଟି ଅଲଗା । ଦୟା, କୃପା, ସହାନୁଭୂତି ପରି ସ୍ୱାଭାବିକ ଗୁଣ ସହିତ ଖରାପକୁ ଭଲ କରିବାର ମୂଳରେ ଆଦ୍ୟରୁ ତାଲିମର ପ୍ରୟୋଜନ କ'ଣ ମଣିଷ ବୁଝେ ନାହିଁ ।

ଶୀର୍ଷକ ଗଳ୍ପ 'ଶାଳଗ୍ରାମ', ମଣିଷର କର୍ତ୍ତବ୍ୟ ଉପରେ ଆଧାରିତ । ଗୌରଗୋବିନ୍ଦ ବାବୁ ନିଜର ପାରିବା ପଣିଆରେ ଉପରକୁ ଉଠିଛନ୍ତି—ଖର୍ଚ୍ଚର ବରାଦ ନୂଆ ନୂଆ ସିଢ଼ି ଚଢ଼ିବା ପରି ଯୋଗ୍ୟତା ତାଙ୍କର ଆସିଛି । ତାଙ୍କର ସାମାଜିକ ପ୍ରତିଷ୍ଠା ସତ୍ତ୍ୱେ ସେ ନିଜେ ନିଜ କାମରୁ ଅବସର ନିଅନ୍ତି ନାହିଁ । ଅବିରତ କାମ, କାମରେ ସବୁ ଶାନ୍ତି । ଲେଖକ ଗୋଟିଏ ସାମାନ୍ୟ ଘଟଣାକୁ ଇଙ୍ଗିତ କରି କହୁଛନ୍ତି । ଗୌରଗୋବିନ୍ଦ ନିଜ ବାଡ଼ିରେ ମୂଳା ଚାଷ କରିବା ପାଇଁ ଆୟୋଜନ କରିଛନ୍ତି, ଯଦିଓ ସେ ଜାଣନ୍ତି ଫଳ ପ୍ରାପ୍ତି ନିରାଶଜନକ । ବନ୍ଧୁ ଦୀନନାଥଙ୍କ ପରିହାସ ତାଙ୍କୁ ବ୍ୟଥିତ ବା କ୍ରୁଦ୍ଧ କରିନାହିଁ । ବରଂ ସେ ବୁଝାଇଛନ୍ତି 'ଶାଳଗ୍ରାମ'ର ସାଧନା ଉପଲକ୍ଷ ମାଧ୍ୟମରେ । ଶାଳଗ୍ରାମ ପୋକ ଗଣ୍ଡକୀ ନଈ କୂଳରେ ଥାଏ ଓ ଅବିରତ ପଥର କାଟି ଶାଳଗ୍ରାମ ତିଆରି କରେ ଓ କାମ ଶେଷ ହେଲେ ଧୀରେ ପାଣିକୁ ଗଡ଼ାଇ ଦିଏ । ଅପେକ୍ଷା କରି ରହେ ପାଣିରୁ ଆସୁଥିବା 'ଟୁବ୍' ଶବ୍ଦଟିକୁ । ସେହି ଶବ୍ଦ ଯେମିତି ତା'ର ବଞ୍ଚିବାର ସମସ୍ତ ଶକ୍ତିର ମୂଳ ସଂପଦ, ସେଥିରୁ ଆହୃତ ଆନନ୍ଦ ଓ ଶାନ୍ତି ଜୀବନର ପାଥେୟ, ଅନ୍ତିମ ଲକ୍ଷ୍ୟ । ପୁଣି ଗଢ଼େ ଓ ଶବ୍ଦ ଶୁଣେ । ଆନନ୍ଦ ପାଏ । ମଣିଷ ସେଇ ଶାଳଗ୍ରାମ ପୋକ ପରି । ସେ ଦିଏ ଶାଳଗ୍ରାମ । ତୁମ ଆମ କାମରେ ଲାଗେ । ଆଉ ମଣିଷ ଦିଏ ତାର ଜ୍ଞାନ-ସଭ୍ୟତା, ସଂସ୍କୃତି ବଢ଼େଇବାକୁ ।'' (ପୃ-୩୪) ସୁନ୍ଦର ଉପସଂହାର । ଗଳ୍ପର କେନ୍ଦ୍ରବିନ୍ଦୁ । ବର୍ଣ୍ଣନାର ନିର୍ଯ୍ୟାସ । ଶ୍ରମ ହୁଏତ ତାହା ଅଫଳପ୍ରସୂ ହୋଇପାରେ— କିନ୍ତୁ ତାହା ମଣିଷର ସଂସ୍କୃତି । ଶ୍ରମ ବିହୀନ ହେଲେ ଗୋଟିଏ ଜୀବନର ପଙ୍ଗୁତା ଆସେ ନାହିଁ ଜୀବନ ପ୍ରବାହର ଧାରା ଅବରୁଦ୍ଧ ହୋଇଯାଏ । ମଣିଷ ତାର ସାଧନାର ଇତିହାସରେ ଯାହା ହୋଇଛି ଓ ପାଇଛି ସେ ସବୁର ମୂଳରେ ରହିଛି ଏପରି ଗୋଟାଏ ନିଷ୍କାମ କର୍ମ ।

ସ୍ୱର୍ଗତ ପଟ୍ଟନାୟକଙ୍କ ଗଳ୍ପ ସମାଜବାଦୀ ବାସ୍ତବତାକୁ ନେଇ । ଗଳ୍ପର ବିଷୟବସ୍ତୁ, ପରିବେଶ, ଚରିତ୍ର ସବୁ ସାଧାରଣ, ଅଥଚ ମର୍ମପୂର୍ଣ୍ଣ । ଦୃଷ୍ଟିଭଙ୍ଗୀରେ ସେ ସ୍ୱଚ୍ଛ ପୁଣି, ଦରଦୀ, ମାନବିକ ମୂଲ୍ୟବୋଧର ଅନ୍ତରାଳରେ ରହିଛି ଗଭୀର ଭାବେ ଜାଣିବାର କାମନା । ତେଣୁ ବର୍ଣ୍ଣନା ବଡ଼ ଆତ୍ମୀୟ ଲାଗେ । ଆପଣାର ପରିସର ଭିତରୁ ବାହାରି ଯାଇ ଚରିତ୍ରର ମାନସିକ ଦ୍ୱନ୍ଦ୍ୱ ସହ ମିଶି ଯିବାକୁ ମନ ହୁଏ । ଗୋପାଳବାବୁ ବଡ଼ ଲୋକ, ହେଲେ



ଭିକାରୁଣୀର ଜୀବନ ଗାଥା ଭିତରେ ସେ ଦେଖିଛନ୍ତି ପ୍ରତ୍ୟେକ ମଣିଷର ଅନ୍ତଃରୂପ ଭିକାରୁଣୀଠାରୁ ବଡ଼ ନୁହେଁ । ''ଘର ଭାଙ୍ଗି ପଡ଼ିବା ବେଳେ ପିମ୍ପୁଡ଼ି ଉଇଙ୍କୁ ଶିକାର କରୁଥାଏ । ଚଢ଼େଇ ଗୀତ ଗାଉଥାନ୍ତି । ମଣିଷର ଜନ୍ମମରଣ କାହାରି ଜୀବନରେ ଭୋକ, ଶୋଷ ବା ନିଦ ଲିଭାଇ ଦେଇ ପାରି ନାହିଁ ।'' (ପୃ-୧୨୦) ଚମତ୍କାର ବ୍ୟଙ୍ଗ ଓ ସାମାଜିକ ସତ୍ୟତା । ରାଧାନାଥଙ୍କର ପ୍ରସିଦ୍ଧ ଉକ୍ତି ମନେ ପଡ଼େ । 'ଉହୁଁକି କଙ୍କି ଶିଶୁ ଦେଲା ଗିଳିଣ' ସାପ ମୁହଁରେ ଥାଇ ବେଙ୍ଗ ଯଦି କଙ୍କିଟିଏ ପ୍ରାଣ ଛାଡ଼େ ନାହିଁ; ବସା ଭାଙ୍ଗି ଯାଇଥିବା ବେଳେ ପିମ୍ପୁଡ଼ି ଉଇକୁ ଖାଇବା—ଏ ପ୍ରାକୃତିକ ସତ୍ୟ କ'ଣ ଜୀବନର ସତ୍ୟ ନୁହେଁ ? ଧନ ଓ ମାନ ସତ୍ତ୍ୱେ ପୃଥିବୀର କିଏ ବଡ଼ ଅଛି ନିଜର ଆଧିପତ୍ୟ ପାଇଁ ଯୁଦ୍ଧ ଓ ଧ୍ୱଂସକୁ ଆହ୍ୱାନ କରିନାହିଁ । ଅନ୍ୟର ଆଶ୍ରୟରେ ନିଜର ବଡ଼ପଣ ପ୍ରକାଶ କରିନାହିଁ ।

ପ୍ରୟାତ ଆତ୍ମା ନିଜର ସାମାଜିକ ବ୍ୟକ୍ତିତ୍ୱ—ମଧ୍ୟବିତ୍ତର ଜୀବନ ଯାପନ ଭିତରେ ବନ୍ଦୀ ହୋଇ ରହି ନଥିଲେ । ସେ ନିଜକୁ ନିଜରି ଶ୍ରେଣୀଚ୍ୟୁତ କରିଥିଲେ । ନିଜ ଶ୍ରେଣୀ ବର୍ଜନ କରି ସାଧାରଣ ଶ୍ରେଣୀ ଭିତରେ ସାମାଜିକ ଜୀବନର ସତ୍ୟ ଅନୁସନ୍ଧାନ କରିବା ପରି ଲେଖକ ଓଡ଼ିଶାରେ ବିରଳ ଥିବା ବେଳେ ସ୍ୱର୍ଗତ ପଟ୍ଟନାୟକ ଥିଲେ ହୁଏତ ଏକମାତ୍ର ବ୍ୟକ୍ତି । ସାହିତ୍ୟକୃତିରେ ସାଧାରଣ ଜୀବନର ଛବି ପ୍ରକଟିତ କଲେ ଲେଖକ ଶ୍ରେଣୀଚ୍ୟୁତ ହୁଏ ନାହିଁ । ନିଜର ଜୀବନ ଯାପନ ଶୈଳୀ ଆଶ୍ରୟ କରି କଥାନକ, ପରିବେଶ, ଚରିତ୍ର ଓ ଜୀବନବୃତ୍ତର ସାମାଜିକ ବାସ୍ତବତା ଭିତରେ ବହୁବିଧ କଳାର-ଲୀଳା ଅଙ୍କନ ମଧ୍ୟରୁ ଲେଖକର ଶ୍ରେଣୀ ନିର୍ଦ୍ଧାରଣ କରିହୁଏ । ନିଜ ଜୀବନରେ ସେ ଥିଲେ ଆତ୍ମାଭିମାନୀ, ସ୍ପର୍ଶକାତର, ଅକୁତୋଭୟ ଏବଂ ଲେଖାରେ ତାର ପ୍ରତିଫଳନ ବେଶ୍ ସ୍ପଷ୍ଟ । ଜଣେ ସ୍ରଷ୍ଟା ଭାବେ ସେ ଯେଉଁ ଅନୁଭୂତି ଲଭି ଥିଲେ ତାର ଚିତ୍ର ଗଳ୍ପରେ ଦେଇପାରିଛନ୍ତି ।

ରିଡ଼ର, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରେଭେନ୍ସା କଲେଜ
କଟକ-୩

# ରାଜକିଶୋରଙ୍କ ହାଟ ସଉଦା

ଡକ୍ଟର ପ୍ରଦୀପ୍ତ କୁମାର ପଣ୍ଡା

ସଉଦା କିଣିବାର ଅନୁଭୂତି ପ୍ରତ୍ୟେକ ମଣିଷ ଜୀବନରେ ଘଟିଥାଏ । ସାଧାରଣ ତେଲ ଲୁଣର ସଂସାର ପାଇଁ ଡାଲି , ଚାଉଳ, ପନିପରିବା, ଲୁଗାପଟାଠାରୁ ଆରମ୍ଭ କରି ଜୀବନକୁ ବିଳାସ ପୂର୍ଣ୍ଣ କରିବା ପାଇଁ ଘର, ଗାଡ଼ି, ଟେଲିଭିଜନ୍ ଫ୍ରିଜ୍, ୱାଶିଙ୍ଗ୍ ମେସିନ୍ ଆଦି ସଉଦା ମଣିଷକୁ କରିବାକୁ ପଡ଼ିଥାଏ । ପୁଣି ଦେଶକୁ ରକ୍ଷା କରିବା ପାଇଁ ବୋଫର୍ସ ତୋପର ସଉଦା ମଧ୍ୟ ଦେଶ କରେ । ଜୀବନ ପାଇଁ ପୁଣି ମଣିଷ ଜୀବନ ସଉଦା କିଣେ । ପୁଅଟିଏ ଝିଅକୁ ଆଉ ଝିଅଟିଏ ପୁଅକୁ । ରାଜକିଶୋରଙ୍କ ହାଟସଉଦା ଏ ସବୁର ସମନ୍ୱୟ । ଜୀବନଟା ଏକ ହାଟ । ପ୍ରତ୍ୟେକ ମଣିଷ ଏଠିକି ସଉଦା କରିବା ପାଇଁ ଆସନ୍ତି । ପସରା ମେଲନ୍ତି, ବିକନ୍ତି ପୁଣି କିଣନ୍ତି । କେତେବେଳେ ପୁଣି ବିକାକିଣାରେ ଦଲାଲ୍ ହୁଅନ୍ତି । ହାଟ ସଉଦା ସରିଗଲେ ଜୀବନ ସରିଯାଏ । ସବୁ ଆଶା, ଆଶ୍ୱାସନା. ପ୍ରଶ୍ନ, ଉତ୍ତର ସ୍ୱାଭିମାନ ଓ ସମ୍ଭାବନାର ପରିସମାପ୍ତି ଘଟେ । ପଥିକୀ ପଥ ଚାଲି ଚାଲି ଥକ୍କା ହୋଇଯାଏ । ହାଟ ବାହୁଡ଼ାର ବେଳ ଯେତିକି ତୃପ୍ତି କର, ସେତିକି କ୍ଲାନ୍ତିପ୍ରଦ ମଧ୍ୟ । ଜୀବନବ୍ୟାପୀ ଅନୁଭୂତି ଗଣ୍ଠିଲିରେ ବନ୍ଧା ହୋଇଥାଏ, କେତେ ସେଥିରୁ ଖରଚ ହୋଇଯାଇଥାଏ । କେତେ ପରିବର୍ତ୍ତିତ ମୂଲ୍ୟବୋଧରେ ଅଦରକାରୀ ହୋଇଯାଇଥାଏ । କେତେ ଥାଇ ମଧ୍ୟ ତା'ର ମୂଲ୍ୟ କେହି ବୁଝନ୍ତି ନାହିଁ । କିନ୍ତୁ ବିଚାରି ପଥିକୀ ! ସବୁକୁ ରୁଣ୍ଡେଇ ଆଗେଇ ଚାଲିଥାଏ । ଦମ୍ ବାହାରି ଯାଉଥାଏ, ହଂସା ଉଡ଼ି ଯାଉଥାଏ । ବସି ପଡ଼ିଲେ ଭାବୁଥାଏ କ'ଣ ତା'ର ଲାଭ କ୍ଷତି ଥାଏ ? ଏତେ କିଣା ବିକାରୁ ସେ ପାଇଲା ବା କ'ଣ ? ଦାର୍ଶନିକମାନେ କହନ୍ତି ଏଇ ବେଳକୁ ଧର୍ମ ଖାଲି ସହାୟକ ହୁଏ । ଯୁଧିଷ୍ଠିରଙ୍କ ପରି ସରଗ-ଯାତ୍ରାରେ ତା' ପାଦ କେଉଁଠି ହେଲେ ଖସେ ନାହିଁ । ହାଟୁଆ କିନ୍ତୁ ଭାବେ ଏ ଧର୍ମଟି କ'ଣ ? ବ୍ରତ ଉପବାସ କରିବା, ଦେଉଳ ତୋଳିବା, ଦାନ ପୁଣ୍ୟ କରିବା ବା ଜୀବନର ସବୁ କିଣାବିକାକୁ ନିଜର ସଜ୍ଞାନରେ ଏକାନ୍ତ ସଚ୍ଚୋଟ ଭାବେ କରିବା ?

ଏହି ଭଳି ଅନେକ ପ୍ରଶ୍ନର ଉତ୍ତର ରାଜକିଶୋରଙ୍କ ହାଟ ସଉଦା । ଜୀବନର ବର୍ଣ୍ଣିଳ ଅନୁଭବରୁ ସଂଗୃହୀତ ଛତିଶଟି ଅନୁଭୂତି । କ୍ଷୁଦ୍ର ପୁସ୍ତିକାର ମୁଖବନ୍ଧରେ ଗାଳ୍ପିକ ପଟ୍ଟନାୟକ କହନ୍ତି :—''ଏହି ବହି ଖଣ୍ଡିକ ଓଡ଼ିଆ ଗଦ୍ୟ ସାହିତ୍ୟରେ ଗୋଟିଏ ନୂତନ ପଦକ୍ଷେପ । ଅସଫଳ ଜୀବନର ଶ୍ରମକ୍ଲାନ୍ତ ପ୍ରବାହରେ ମନରେ ଅସଂଖ୍ୟ ପ୍ରଶ୍ନ ଉଠେ । ସେଗୁଡ଼ିକର ସମାଧାନ ହୁଏ ନାହିଁ । ସେହିପରି ପ୍ରଶ୍ନ ଏହାର ପ୍ରତ୍ୟେକ ପୃଷ୍ଠାରେ ରହିଛି । କିନ୍ତୁ ଉତ୍ତର



ଯିଏ ଯାହା ଦେଇପାରିବେ । ଅନୁଭବର ସମୃଦ୍ଧି ଉପରେ ଉତ୍ତରର ମୂଲ୍ୟାୟନ କରିହେବ ।'' ମଣିଷ ଜୀବନ ଗଳ୍ପମୟ । ଘରେ ବାହାରେ, ରାସ୍ତାରେ ଚାଲୁଥିଲା ବେଳେ, ବସ୍ ବା ଟ୍ରେନ୍‌ରେ ଯାତ୍ରା କରୁଥିଲା ବେଳେ, କଚେରୀରେ, ମନ୍ଦିରରେ ସର୍ବତ୍ର ପୂରି ରହିଛି ଗଳ୍ପର ଉପାଦାନ । ଅନୁଭବୀ ଜୀବନବାଦୀ କଥାକାର ରାଜକିଶୋର, ତାଙ୍କ ଜୀବନରେ ବହୁ ବିଚିତ୍ର ଅନୁଭୂତିକୁ ନେଇ ରଚନା କରିଛନ୍ତି ଏହି ଗଳ୍ପଗୁଡ଼ିକ । ରାଜକିଶୋର ବୃତ୍ତିରେ ଥିଲେ ଆଇନ୍‌ଜୀବୀ । କଚେରିଆ ମଣିଷ, ଯେତେବେଳେ ସଚେତନ ସ୍ରଷ୍ଟା ହୋଇପଡ଼େ, ସେତେବେଳେ ବହୁ ଅଦ୍ଭୁତ ଅନୁଭବ ତା'ର ସ୍ୱଚ୍ଛ ଚିନ୍ତା ସ୍ରୋତକୁ ସାନ୍ଦ୍ର କରେ । ଅନୁଭବର ସେହି ସୂତାଖିଅକୁ ଗୋଟିକ ପରେ ଗୋଟିଏ ଖିଅ ଧରାଇଛନ୍ତି ଶିଳ୍ପୀ ରାଜକିଶୋର । ସାମଗ୍ରିକ ଭାବେ ଏହି ଅନୁଭବକୁ ସେ ସ୍ୱୀକାର କରିଛନ୍ତି ହାଟ ସଉଦା ଭାବେ ।

'ହାଟ ସଉଦା'ର ପ୍ରତିଟି ଗଳ୍ପରେ କଥାକାର ମଣିଷକୁ ଚିହ୍ନିବା ପାଇଁ ଉଦ୍ୟମ କରିଛନ୍ତି । ମଣିଷର ସ୍ୱରୂପ ଉଦ୍‌ଘାଟନ କରିବା ପାଇଁ ଚେଷ୍ଟା କରିଛନ୍ତି । ସଂସାରର ସବୁ ଜୀବଙ୍କଠାରୁ ମଣିଷ ଶ୍ରେଷ୍ଠ । ଏଥିପାଇଁ ଯେ ସେ ମଣିଷ । ତା' ଭିତରେ ଥିବା ମଣିଷ ପଣିଆ ତାକୁ ଦେବତା କରେ, କିନ୍ତୁ ରକ୍ତ ମାଂସର ଏଇ ମଣିଷ ସ୍ୱାର୍ଥପରତା, ହିଂସା, ପରଶ୍ରୀକାରତାରେ ଉବୁଟୁବୁ ହେଉଥାଏ । ପ୍ରତି ମୁହୂର୍ତ୍ତରେ ଜୀବନର ପ୍ରତିଟି କାର୍ଯ୍ୟରେ ସେ ଲାଭ କ୍ଷତି ତଉଲୁ ଥାଏ । ଅନ୍ୟକୁ ଠକି/ପ୍ରତାରିତ କରି ସେ ନିଜର ଚତୁର ପଣିଆ ଜାହିର କରୁଥାଏ, ସେଥିରେ ସେ ଆତ୍ମତୃପ୍ତି ଅନୁଭବ କରିଥାଏ । ତା'ର ସୁଖ ସୁବିଧା ପାଇଁ ସେ ଟଙ୍କା ସଂଚୟ କରେ । ଜଗତର ଯାବତୀୟ ଜୀବଜନ୍ତୁ, ପଶୁପକ୍ଷୀ ଓ ମଣିଷଙ୍କୁ ନିଜର କରି ରଖିବାକୁ ଚେଷ୍ଟା କରେ, ଯେମିତି ତା'ର ସମସ୍ତେ ଦରକାର । ''ସେ ମାଛଙ୍କୁ ରଖିବ କାଚ ଜ୍ଲୋଟାରେ—ମାଛ ତାକୁ ଆନନ୍ଦ ଦବ । ହରିଣ ଛୁଆଙ୍କୁ ବଣରୁ ଆଣି ସହରରେ ପୋଷିବ—ସେଥିରେ ସେ ଖୁସି ହେବ । ସେମିତି ମୟୂର, ମାଙ୍କଡ଼, ନେଉଳ, ଶୁଆ ସାରୀଠରୁ ଆରମ୍ଭ କରି ରଙ୍ଗୀନ୍ ଗୁଞ୍ଜାର ପୋକଯାଏ ସବୁ ଆଣି ରଖିବ ।'' ଖାଲି ସେତିକି ନୁହଁ ନିଜର ଅତିପ୍ରିୟ ସ୍ତ୍ରୀ, ପୁତ୍ର ଅତି ଆପଣାର ମଣିଷ ସମସ୍ତଙ୍କୁ ସେ କାମରେ ଲଗେଇବାକୁ ଚେଷ୍ଟା କରେ । ସ୍ତ୍ରୀକୁ ଧରି ଦାସୀ କରେ, ପୁଅକୁ ଧରି ସେ ତାକୁ ତା'ର ଇଚ୍ଛାର ଚାକର କରେ । ନିଶା ଖୁଆଇ, ଟଙ୍କା କରଜ ଲଗାଇ ସେ ଅପର ମଣିଷକୁ ନିଜର ଆଜ୍ଞାଧୀନ କରାଏ । ତା'ର ସବୁ ଦରକାର ଯିଏ ଚାଲିଲା, ଯିଏ ହଲିଲା, ଯିଏ ଉଡ଼ିଲା ସମସ୍ତେ ତା'ର ଦରକାର ।

ମଣିଷ ଜ୍ଞାନ, ବିବେକ, ବିଚାର ବୁଦ୍ଧି ଯୋଗୁଁ ପଶୁଠାରୁ ଶ୍ରେଷ୍ଠ ବୋଲି ଦାବୀକରେ । ଗାଈ, ବାଛୁରୀ ଦିହିଁଙ୍କ ଆଗରେ ନଡ଼ା ବିଡ଼ାଏ ପକାଇ ଦେଲେ ମା' ପୁଅ ତରବରରେ





ଟଣା ଭିଡ଼ା କରି ସବୁତକ ଖାଇଯାଆନ୍ତି । କିନ୍ତୁ ମଣିଷ କ୍ଷେତ୍ରରେ ପୁଅ ଖାଇ ସାରିଲା ପରେ ଯାହା ବଳକା ରହେ ମା ତାକୁ ଖାଏ । ଏତିକି ବଦାନ୍ୟତା ଯେ କେବଳ ମଣିଷକୁ ମଣିଷ ପଣିଆ ଜାହିର କରିବାରେ ଯଥେଷ୍ଟ ତାହା ନୁହେଁ; ଅଧିକନ୍ତୁ ମଣିଷ ପଶୁଠାରୁ ବି ଅନେକ ସମୟରେ ଭୟଙ୍କର ସ୍ୱାର୍ଥପର ହୋଇ ପଡ଼େ । ଅଭାବରେ ପଡ଼ିଲେ କେବେ ଚଢ଼େଇ ତା ଛୁଆକୁ ବିକି ଦେଇ ନିଜେ ବିକ୍ରୟଲବ୍ଧ ଧନରେ ଚଳେ ନାହିଁ । ମଣିଷ ପକ୍ଷରେ କିନ୍ତୁ ଏକଥା ସମ୍ଭବ ହୁଏ । ଅନୁଭବୀ କଥାକାର ତାଙ୍କ 'ଚଢ଼େଇ କହୁଥିଲା' ଗପରେ ଲେଖିଛନ୍ତି—''ସେ (ମଣିଷ) ନିଅଣ୍ଟରେ ପଡ଼ିଲେ ଛୁଆକୁ ବିକି ଦିଏ ତାକୁ ଦାନ କରେ ନାହିଁ । ବିକେ ଆଉ ବଦଳରେ ନିଜର ପେଟକୁ ପୂରାଏ । ସେମିତି ଧନ ଓ ଧାନ ପାଇଁ ପିଲାଙ୍କୁ ପରଘରକୁ ପଠାଇ ଦିଏ । ପଶୁପକ୍ଷୀ ସେତକ କରନ୍ତି ନାହିଁ । ନିଜ କଥା ନ ବୁଝି ନିଜର ବଂଶଧରଙ୍କ କଥା ବୁଝିବା ମଣିଷ ପକ୍ଷରେ ଯେତିକି କଷ୍ଟକର ପଶୁପକ୍ଷୀ ପକ୍ଷରେ ସେତିକି ସହଜ । ସେଥିପାଇଁ ସେମାନେ ଅଳ୍ପ ବୁଦ୍ଧି, ଅଳ୍ପ ବଳ, ଅଳ୍ପ ପରମାୟୁ ନେଇ ଯୁଗ ଯୁଗ ଧରି ବଞ୍ଚିଛନ୍ତି । ତାଙ୍କର ଇତିହାସ ଲେଖା ବି ନାହିଁ । କିନ୍ତୁ ସେମାନେ ବଞ୍ଚିଛନ୍ତି । ମଣିଷର ଇତିହାସ ଲେଖାଯାଇଛି, କିନ୍ତୁ ସେ ମଣିଷ ଭାବରେ ବଞ୍ଚିବାକୁ ଜୀବନରେ ଶହେ ବିଶା ଶହେ ଦିନ ପାଇଁ ମଧ୍ୟ ଅସମର୍ଥ ହେଉଛି ।

ମଣିଷର ସ୍ୱରୂପ ଉଦ୍‌ଘାଟନ କରିବାକୁ ଯାଇ କଥାକର କହନ୍ତି ''ସେଥିପାଇଁ ମୁଁ ମଣିଷଙ୍କୁ ଡରେ । କଳା ମୁଣ୍ଡିଆଙ୍କୁ ଡରେ । ହାତିଆଙ୍କୁ ଦେଖିଲେ ଡରେ ..... ଡର ଲାଗେ ନାହିଁ ଚାରି ଗୋଡ଼ିଆଙ୍କୁ—ଯାନ୍ତୁ ପଶୁଙ୍କୁ । ଡର ଲାଗେ ନାହିଁ ଚାରି ହାତିଆ ଠାକୁରଙ୍କୁ ।'' [illegible] ପଟ୍ଟନାୟକ ସେଥିପାଇଁ ମଣିଷଠାରୁ ପୋଷା କୁକୁରକୁ ମହନୀୟ ଭାବରେ ବର୍ଣ୍ଣନା କରିଛନ୍ତି । ଦେଶୀ କୁକୁର ହେଲେ ବି ସେ ନିମକ ହଲାଲ୍ । ଯାହାଠାରୁ ଦୁଇପୁଳା ଖାଏ, ସେ ନ [illegible] ଘର ଜଗି ପଡ଼ିଥାଏ । [illegible] ପୋଷିଲେ ସେ ''ସମୟ ସୁବିଧା ଦେଖି ଦଗାଦିଏ, [illegible] ପିଠାକୁ [illegible] କରେ । କିନ୍ତୁ କୁକୁରଠାରେ ଏସବୁ ନଥାଏ ।'' ମଣିଷ ପୁଣି [illegible] ଜାଣି [illegible]ପାରେନା । ବୁଢ଼ା ବାପା ଅପରାରଗ ହୋଇ ପଡ଼ିଲେ ଯୁବକ ପୁତ୍ର ତା'ର [illegible] କୃତଜ୍ଞତା ଭୁଲି ବାପକୁ ଘରୁ ତଡ଼ି ଦିଏ । ବସି ବସି ଖାଉଥିବା ବୁଢ଼ା ବାପାଟି ଯେ ଜୀବନସାରା ରୋଜଗାର କରି ତା'ର ସମସ୍ତ ଶ୍ରମାର୍ଜିତ ଧନକୁ ପୁଅକୁ ଦେଇଛି, ପୁଅ ତାହା ଭୁଲିଯାଏ । ମଣିଷଠାରୁ ଅକୃତଜ୍ଞତାରେ ସୃଷ୍ଟିରେ କୌଣସି ଜୀବ ବଳି ପଡ଼ିବ ନାହିଁ । 'ବଙ୍କାଗଛ' ଗଳ୍ପରେ ରାଜକିଶୋର ଏଇ ଅଦରକାରୀ ବୃଦ୍ଧ ମଣିଷର ଅସହାୟ ଜୀବନର ସୁନ୍ଦର ଚିତ୍ର ପ୍ରଦାନ କରିଛନ୍ତି । ଫଳୁ ଥିବା ଯାଏ ନଡ଼ିଆ ଗଛର କେତେ ଆଦର । ବୁଢ଼ା ହୋଇ ବାଙ୍କି ଗଲା ପରେ ଅଫଳନ୍ତି ବା କ୍ୱଚିତ୍



ଗୋଟିଏ ଅଧେ ଫଳୁଥିବା ଗଛକୁ କେମିତି ପରିବାରର ସବୁ ଲୋକ ଅନାଦର କରନ୍ତି; କହନ୍ତି କାଟି ଦିଅ ଏଇଟାକୁ କେତେବେଳେ ଝଡ଼ି ବତାଶରେ ପଡ଼ିବ ଘର ଉପରକୁ । ପୁଣି ବାଡ଼ିରେ ଥାଇ ଯଦି ଫଳକୁ ବାଟ ଗଲା ଲୋକ ନେବେ ତେବେ ଏ ଗଛ ଥାଇ କେତେ, ନ ଥାଇ କେତେ ଇତ୍ୟାଦି ।

ଗାଳ୍ପିକ ରାଜକିଶୋର କଟକ ସହରର ଅଧିବାସୀ । କଟକ ଦିନେ ଓଡ଼ିଶାର ସବୁଠାରୁ ବଡ଼ ସହର ଥିଲା । ଏଇଠି ଥିଲା କଲେଜ, ଡାକ୍ତରଖାନା, କଚେରୀ, ବେପାର, ଚାକିରୀ, ଫନ୍ଦାଫିକରର ଏକ ସୁନ୍ଦର ପେଣ୍ଠ ଜାଗା ଥିଲା ସହର । ସହରରେ କେହି ଓପାସ ରହେନାହିଁ । କୌଣସି ଉପାୟରେ ସନ୍ଥାବଟା କରି ଚଳିଯାଏ । ସେଥିପାଇଁ ମଣିଷ ଗାଁରେ ଖାନ୍ଦାନୀ ଛାଡ଼ି, ଏକ ଛୋଟ ଜାଗାରେ ଜାକିଜୁକି ହୋଇ ଛାତ ଘର ଖଣ୍ଡେ ବନାଇ ଏଇ ପଚା ନର୍ଦ୍ଦମା ଗନ୍ଧ ମଧ୍ୟରେ ପଡ଼ିରହି ସ୍ୱର୍ଗର ଶାନ୍ତି ଉପଭୋଗ କରେ । ମନେ ମନେ ଖୁବ୍ ତୃପ୍ତ ହେଉଥାଏ । କିନ୍ତୁ ସହରୀ ମଣିଷ ହରେଇ ବସେ ଗାଁର ମଣିଷ ପଣିଆ । ସହରରେ ଅନ୍ଧାର ହୁଏନି । ଏଠି ଦିନ ରାତି ସମାନ । ଗାଁରେ ସକାଳ ହେଲେ କୁଆ, କୋଇଲି ବୋବାନ୍ତି । ମନ୍ଦିରରେ ଘଣ୍ଟା ବାଜେ । ବିଧାତାର ନିୟମରେ ଗାଁ ଚାଲେ । କିନ୍ତୁ ସହରରେ ଭୋର ଚାରିଟାରୁ ପ୍ରଥମେ ଶୁଣାଯାଏ ଟ୍ରକ ଶବ୍ଦ । ତା'ପରେ ଦୋକାନୀର ଖଡ଼ଖାଡ଼୍ ତା' ପରେ ଯାଇ କୁଆ କୋଇଲି, ମନ୍ଦିର ଘଣ୍ଟା । ଏଠି ସବୁ ମଣିଷ ତିଆରି । ସହରରେ ସମସ୍ତେ ବାବୁ । କୃତ୍ରିମତା ଓ ଛଦ୍ମତାର ଏକ ପରିପୂର୍ଣ୍ଣ ଅବତାର । ମପାଚୁପା ଜୀବନ ଭିତରେ ଚଳିବାକୁ ବାଧ୍ୟ ଏଇ ସହରୀ ବାବୁମାନେ । ଆପଣାର ବିଦ୍ୟାବଳରେ ସେମାନେ ଆପଣାର କାର୍ଯ୍ୟର ପ୍ରଶଂସା କରନ୍ତି । ନିଜେ କରିଥିବା ଭୁଲକୁ ମଧ୍ୟ ଠିକ୍ ବୋଲି ପ୍ରମାଣିତ କରନ୍ତି । ଏଠି ଚାକିରିଆମାନେ ପୁଣି ସବୁଠୁ ବଡ଼ବାବୁ । ଯେ ଯେତେ ଅଧିକ ପରାଧୀନ ତା'ର ଦରମା/ ଖାତିର ସେତେବେଶୀ । ରାଜୁବାବୁଙ୍କ ବିଚାରରେ ଏମାନେ ସବୁ ପୋଷା କୁକୁର । ''ପୋଷା କୁକୁର ଆଉ ସରକାରୀ ଚାକିରିଆ ସମାନ ଧାତୁରେ ଗଢ଼ା । ନିଜର ଖାଉନ୍ଦଙ୍କୁ ଖୁସି କରିବାକୁ ସେମାନେ ଯାହା ତାହା ଦେହରେ ଦାନ୍ତ ଲଗାଇ ଦେବେ । .... ବୁଲା କୁକୁର କାହାକୁ ଡରାନ୍ତି ନାହିଁ । ସମସ୍ତଙ୍କ ନୂନ ନିଅନ୍ତି । କିନ୍ତୁ ଏଇ ପୋଷା କୁକୁର ଓ ଚାକର ସମସ୍ତଙ୍କୁ ଡରାନ୍ତି । କାହାରିକୁ ଡରନ୍ତି ନାହିଁ ।''

ମଣିଷର ଜୀବନକାଳ ସୀମିତ । ଆଜି ସୁନା ହରିଣର ସ୍ୱପ୍ନ ଦେଖୁଥିବା ମଣିଷଟି ଜାଣିପାରେନା ଠିକ୍ ପର ମୁହୂର୍ତ୍ତରେ ତାକୁ କି ପ୍ରତିକୂଳତାର ସମ୍ମୁଖୀନ ହେବାକୁ ହେବ । ତଥାପି ହୋଇଥାଏ ମୋହଗ୍ରସ୍ତ । ଜୀବନ ସଂଗ୍ରାମରେ କଳେ ବଳେ କୌଶଳେ କିପରି ଜୟ ଲାଭ କରିବ, ସେଥିପାଇଁ ନିରନ୍ତର ବିକଳ ହେଉଥାଏ । 'ଅଜଣା ଦିନର ସକାଳ' ଗଳ୍ପରେ

ଗାନ୍ତିକଙ୍କ ଓକିଲ ବନ୍ଧୁଙ୍କର ଅନୁଗୋଳ ଯାଉଥିବା ବାଟରେ କାର୍ ଆକ୍ସିଡେଣ୍ଟରେ ମୃତ୍ୟୁ, ଏହାର ଏକ ସୁନ୍ଦର ଉଦାହରଣ ।

କଥାକାର ରାଜକିଶୋର ସବୁଠାରୁ ଅଧିକ ପରୀକ୍ଷା କରିଛନ୍ତି ଜୀବନର ଆଧ୍ୟାତ୍ମିକତା ଉପରେ । ୩୬ଟି ଗଳ୍ପରୁ ପ୍ରାୟ ୧୬ଟି ଗଳ୍ପ ମଣିଷ ଜୀବନର ଈଶ୍ୱର ବିଶ୍ୱାସ ଉପରେ ପର୍ଯ୍ୟବସିତ । ମଣିଷ ସୃଷ୍ଟିର ସର୍ବଶ୍ରେଷ୍ଠ ପ୍ରାଣୀ ହେଲେବି ଖୁବ୍ ଦୁର୍ବଳ । ଅପ୍ରାପ୍ତି, ଅସ୍ୱସ୍ତି, ବିରକ୍ତି ଆଦି ଯୋଗୁଁ ସେ ଖୁବ୍ ଦୁଃଖ ପାଏ । ଆଉ ଏଇ ଦୁଃଖରୁ ତ୍ରାହି ପାଇବା ପାଇଁ ସେ ହୁଏ ଈଶ୍ୱରାନୁରକ୍ତି । ଠାକୁରଙ୍କୁ ପୂଜା କରେ । ମାନସିକ କରେ । ଧୂପ ଦୀପ ଦିଏ । ହେଲେ ତା'ର ଯୁକ୍ତିବାଦୀ ମନ ଭିତରେ ଅନେକ ପ୍ରଶ୍ନବାଚୀ ଉଠେ । ଜୀବନ ହାଟରେ ବିଭିନ୍ନ ସନ୍ଧି ସମୟରେ ସେ ଏଥିପାଇଁ ଚିନ୍ତା କରେ ସତେ କ'ଣ ଈଶ୍ୱର ଅଛନ୍ତି ? ସତେ କ'ଣ ସେ ସୃଷ୍ଟିର ସକଳ ଚିନ୍ତା-ଚେତନା, କାର୍ଯ୍ୟ ଅକାର୍ଯ୍ୟ, ପାପ ପୁଣ୍ୟର ହେତୁ; ତେବେ ମଣିଷମାନେ ଖରାପ କାମ କରନ୍ତି କାହିଁକି ? ଗାନ୍ତିକ ନିଜେ ଥିଲେ ଆଇନିଜୀବୀ । ତାଙ୍କ ଭାଷାରେ ''ମକଦ୍ଦମା ସବୁଦିନେ ଅଧା ଠକେଇ ଆଉ ଅଧା ଖାଣ୍ଟି । ହାକିମ ସବୁ ଦିନେ ମନୁଆ ଆଉ କେତେବେଳେ କେମିତି ଲୋଭୀ ।'' ଏହି ବୃତ୍ତିରେ ରହି ତାଙ୍କର ଧର୍ମ ଈଶ୍ୱର ସମ୍ପର୍କରେ ସନ୍ଦେହ ଉପୁଜିବା ସ୍ୱାଭାବିକ । ପୁଣି ପତି ପତ୍ନୀଙ୍କ ବାର୍ତ୍ତାଳାପ ମଧ୍ୟ ଠାକୁରଙ୍କ ପ୍ରସଂଗର ଅବତାରଣା ହୋଇଛି ସର୍ବାଧିକ । କାରଣ ନାରୀମାନେ ସାଧାରଣତଃ ଅଧିକ ଭୀରୁ, ତେଣୁ ଧର୍ମ ବିଶ୍ୱାସୀ । ନିଜ ସ୍ୱାମୀ ବା ପୁତ୍ରଙ୍କର କାଳେ ଅମଙ୍ଗଳ ହେବ, ସେଥିପାଇଁ ସେମାନେ କେବେ ଠାକୁରଙ୍କୁ ରଗାନ୍ତି ନାହିଁ । କିନ୍ତୁ ନାରୀ ଅପେକ୍ଷା ସାମାଜିକ ଜୀବନରେ ପୁରୁଷ ଅଧିକ ପ୍ରାକ୍ଟିକାଲ୍ ଯେତେବେଳେ କାମ ନ ହେଲା, ସେତେବେଳେ ସେ ଠାକୁରଙ୍କୁ ଗାଳି ଦିଏ । ଚିଡ଼ିଚିଡ଼ି ହୁଏ । ଠାକୁରେ ତା' ପ୍ରତି ଅନ୍ୟାୟ କଲେ ବୋଲି ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରେ କିନ୍ତୁ ନାରୀ ବାରମ୍ବାର ନେହୁରା ହୁଏ —''ଦେଖ, ମୋ ଠାକୁରଙ୍କ ଉପରେ କେବେ ରାଗିବନି ।'' ଠାକୁରେ ଏ ଦୁନିଆରେ ସମସ୍ତଙ୍କୁ ଅଭାବୀ କରି ରଖିଛନ୍ତି । କାରଣ ଅଭାବ ହେଲେ ଯାଇ ଲୋକ ତାଙ୍କୁ ଡାକିବ । କିଏ ରୋଗ ପାଇଁ ଡାକେ, କିଏ ଧନ ପାଇଁ, କିଏ ପୁଅ ପାଇଁ, କିଏ ଶତ୍ରୁ ଉପରେ ବିଜୟ ପାଇଁ ତାଙ୍କୁ ଡାକେ । କିନ୍ତୁ ମଣିଷର ଅଭାବର କ'ଣ ଶେଷ ଅଛି ? ମଣିଷତ ଅଭାବୀ ନୁହଁ, ଅଭାବବୋଧର ଏକ ସୁନ୍ଦର ପ୍ରତିମୂର୍ତ୍ତି । ତେଣୁ ଠାକୁର ସାଜନ୍ତି ତା'ର ମନର ଖୋରାକ୍ । ଠାକୁରଙ୍କ ନାଁ ନେଇ ସେ ଆଗଇଯାଏ । ହେଲେ ମଣିଷର ସ୍ୱଭାବ ଯୋଗୁଁ, ସେ ଦରକାର ପଡ଼ିଲେ ଠାକୁରଙ୍କୁ ମଧ୍ୟ ଠକି ଦେବାକୁ ଭୁଲେ ନାହିଁ । ଠାକରୁଙ୍କୁ ପୂଜା କରିବା ଲାଗି ଫୁଲ ବିକାଳୀ (ଠାକୁରଙ୍କ



ଫୁଲ) କୁ ମଧ୍ୟ ଠକି ଫୁଲ ନେଇ ଆସେ । କଥାକାର ପଟ୍ଟନାୟକ ମଣିଷର ଏହି କୁତ୍ସିତ ପ୍ରବୃତ୍ତିକୁ ଘୃଣା କରିଛନ୍ତି । ଧର୍ମ ଓ ଈଶ୍ୱର ବିଶ୍ୱାସ ନାମରେ ମନର ଭ୍ରଷ୍ଟତାକୁ ସେ ପ୍ରଶ୍ରୟ ଦେଇ ପାରି ନାହାନ୍ତି ।

ଗାନ୍ଧିକ ଆଇନ୍ ବ୍ୟବସାୟରେ ମିଥ୍ୟାର ଆଶ୍ରୟ ନେଇ ମକଦ୍ଦମା କରି ପଇସା ରୋଜଗାର କରୁଥିବା ମଣିଷଟିକୁ ସହିପାରିଛନ୍ତି, କିନ୍ତୁ ସହିପାରି ନାହାନ୍ତି ଫୁଲ ବେପାରୀକୁ ଦଶ ପଇସାରେ ଦଶଟି ଫୁଲ ଠକି ନେଇଥିବା ମାଗଣାଖିଆ ସେବକ ଭକ୍ତଟିକୁ । ଚୋର କାଳିଆ ବଳଦ ଚୋରି କରି ନେଇ ଲୋକେ ଗୋଡ଼ାଇବାରୁ ଧବଳେଶ୍ୱରଙ୍କ ମନ୍ଦିରରେ ପଶି ମହାଦେବଙ୍କୁ ଡାକିଲା, ପ୍ରଭୁ ! ଏମାନଙ୍କଠାରୁ ମୋତେ ରକ୍ଷା କର । ଏମାନେ ମୋତେ ମାରିଦେବେ । ଠାକୁରେ ତା ଡାକ ଶୁଣିଲେ । କଳା ବଳଦ ଧଳା ହେଲା ଠାକୁରେ ହେଲେ ଧବଳେଶ୍ୱର । ଗାନ୍ଧିକଙ୍କ ମତରେ ଏ ହେଲା ଧନ୍ଦା (ବୃତ୍ତି)ର କଥା । ଧନ୍ଦାରେ ପାପ ପୁଣ୍ୟ କିଛି ନାହିଁ । ମିଛ କଥା କହି ଓକିଲାତି କରୁଥିବା ଲୋକଟି ଯଦି ମିଛ ନ କହିବ, ତେବେ ତା'ର ଧନ୍ଦା ସେ ଠିକ୍ ଭାବରେ କରୁନାହିଁ । ସେଥିପାଇଁ ତାହା ତା'ର ଦୋଷ । ଗାନ୍ଧିକ କହନ୍ତି— "ପାପ ଆଉ ପୁଣ୍ୟ ହେଲେ ମଣିଷର ବିଚାର । ତାହାର ରୁଚିର ବିଚାର, ଶିକ୍ଷାର ବିଚାର ଆଉ ଅନୁଭବର ବିଚାର । ବୃତ୍ତିଟିଏ ଧରି ତାହାର ନିୟମକୁ ବେଖାତିର କରିବା ପାପ । ସିପାହୀ ହୋଇ ଅନ୍ୟର ଜୀବନ ନନେବା ପାପ । ପୁଲିସ ହୋଇ ଚୋରର ଭେକ ଦେଖି ତାକୁ ଚୋରାମାଲ ସହିତ ଛାଡ଼ିଦେବା ପାପ । ...... । ପାପୀ ଜନ୍ମ ହୋଇ ପାପ କରିବାକୁ ଦ୍ୱିଧା କରିବା ପାପ......ଖରାପ ହୋଇ ଖରାପ କାମ ନ କରିବା ପାପ ।" (ଠାକୁର ଆଉ ପାପ)

ତେବେ ଯେଉଁ ମଣିଷ ଆପଣାର ଆଧ୍ୟାତ୍ମିକତା ପାଇଁ, ପାପ କ୍ଷୟ ପାଇଁ ଠାକୁରଙ୍କୁ ପୂଜା କରେ, ସେ ଠାକୁର କିନ୍ତୁ ମଣିଷର ପୂଜା ଗ୍ରହଣ କରିବାକୁ ଆଦୌ ଆକୁଳ ହୋଇ ଅପେକ୍ଷା କରି ରହିନଥାନ୍ତି । ଠାକୁରଙ୍କର ମୋଟେ ପୂଜା ଦରକାର ନ ଥାଏ । ମଣିଷ ତାଙ୍କୁ ପୂଜା କରେ ନିଜକୁ ସନ୍ତୋଷ ଦେବାକୁ । ଠାକୁର କେବଳ ମନ୍ଦିରରେ ନଥାନ୍ତି । ସେ ନଦୀ ସମୁଦ୍ର, ବନ ବିଲ, ବୃକ୍ଷଲତା ପର୍ବତ ସର୍ବତ୍ର ପୂରି ରହିଥା'ନ୍ତି । ଯେମିତି ଗାଧୋଇ ପୂଜା କଲେ ମଣିଷର ମନରେ ପବିତ୍ରତା ଆସେ, ସେପରି ମନ୍ଦିର ଭିତରକୁ ପଶିଗଲେ, ଲୋକ ମନ ପବିତ୍ର ହୋଇଯାଏ । ତେବେ ମଣିଷ ମନରେ ପ୍ରଶ୍ନ ଉଠେ ମଣିଷ ଦେହରେ ଯଦି ଶୌଚ ଅଶୌଚ ନଥାଏ, ଅଥବା ତା ମନରେ ଯଦି ଭଲ ଖରାପ ନଥାଏ, ତେବେ ହିଂସ୍ର ଓ ଅହିଂସା ଆଉ ଲୋଭୀ ଓ ନିର୍ଲୋଭ କ'ଣ ସମାନ ? ପାପ ପୁଣ୍ୟ କ'ଣ ମଣିଷ ଭିତରର ଅସଲ କଥା ? ନା ବାହାର ମଣିଷଙ୍କର ବିଚାରର ଗୋଟାଏ ମୁଦ୍ରା ଦୋଷ ? ଏହି





ଅସମାହିତ ଅଡୁଆ ପ୍ରଶ୍ନର ଉତ୍ତର ଖୋଜି ପାଇଛନ୍ତି ଗାନ୍ଧିକ । ''ଠାକୁର ଜଣେ । ପୂଜା ଏକ ପ୍ରକାରର । ଫଳ ଏକାପରି । ଠାକୁର ସବୁ ନିଅନ୍ତି । ସେ ମଣିଷକୁ ଯେମିତି ଗଢ଼ିଥା'ନ୍ତି, ତା'ଠାରୁ ଠିକ୍ ସେମିତି ଫଳ ଗ୍ରହଣ କରନ୍ତି । ଇୟାଛଡ଼ା, ଅନ୍ୟପ୍ରକାରର ବାଟ ତାଙ୍କ ପାଇଁ ନାହିଁ ।''

ଗାନ୍ଧିକଙ୍କ ହାଟ ସଉଦା ମଧ୍ୟରେ ସେ ଈଶ୍ୱରଙ୍କ ସହାୟତା ଉପଲବ୍ଧି କରିଛନ୍ତି । ପିତୃଶ୍ରାଦ୍ଧ ପାଇଁ ପାଖରେ ବିଲକୁଲ ପଇସା ନଥିବା ବେଳେ ଘୋର ବର୍ଷା ମଧ୍ୟରେ ଅନାହୂତ ଭାବେ ଆସି ମହଜିଲ ପହଞ୍ଚ ଟଙ୍କା ଦେଇ ଯାଇଛନ୍ତି । (ଅନୁଭବର ବିଶ୍ୱାସ) । ପୁଣି ବନମାଳୀ ବାବୁଙ୍କ ପୁଅର ଜ୍ୱର ବେଳେ ଗାଡ଼ି, ଡାକ୍ତର, ଖଟିଆ ମିଳି ଯିବାରେ ବିଶ୍ୱାସ ବହୁ ଗୁଣିତ ହୋଇଛି । ମଣିଷ ତାର ଜୀବନ କାଳ ମଧ୍ୟରେ ଅନେକ ସମୟରେ ଈଶ୍ୱରଙ୍କର ଉପସ୍ଥିତି ଉପଲବ୍ଧି କରୁଥିଲେବି, ଆପଣାର ଅହଂକାରରୁ ସେ ଈଶ୍ୱରଙ୍କୁ ଭୁଲିଯାଏ । ଆପଣା ବୁଦ୍ଧି, ବଳ ଓ ଚେଷ୍ଟା ଯୋଗୁଁ ସେ ସଫଳ ହେଲା ବୋଲି ଭାବେ । ମଣିଷର ଏହି ଅହମିକାକୁ କଥାକାର ଏକ ସମ୍ବେଦନଶୀଳ ଦୃଷ୍ଟିରେ ଗ୍ରହଣ କରିଛନ୍ତି । ଈଶ୍ୱର ମଣିଷକୁ ଅହଂକାରୀ ନ କରିଥିଲେ, ମଣିଷ କିଛି ନ କରି ସର୍ବଦା ତାଙ୍କ ଉପରେ ନିର୍ଭରଶୀଳ ହୋଇ ରହନ୍ତା । ତେଣୁ ''ଈଶ୍ୱରଙ୍କ ଇଚ୍ଛା ଯେ ମଣିଷ ନିଜେ ନିଜକୁ ଗଢୁ । ନିଜ ବଳରେ ଠିଆ ହେଉ । ଖାଲି ଈଶ୍ୱରଙ୍କ ଉପରେ ସବୁ କଥାରେ ଆଶ୍ରୟ ନରଖୁ ।'' (ଠାକୁର ଆଉ ମଣିଷ)

ସମସ୍ତ ଯୁକ୍ତିତର୍କ ଓ ପ୍ରଶ୍ନବାଚୀ ଥାଇ ମଧ୍ୟ କଥାକାର ରାଜକିଶୋର ଜଣେ ଯଥାର୍ଥ ଆଧ୍ୟାତ୍ମବାଦୀ । ସେ ଈଶ୍ୱରଙ୍କୁ ଗଭୀର ଭାବରେ ବିଶ୍ୱାସ କରନ୍ତି । ଜୀବନ ହାଟରେ ପ୍ରତିଟି ସଉଦାରେ ସେ ଉପଲବ୍ଧି କରିଛନ୍ତି ଈଶ୍ୱରଙ୍କର ସାନ୍ନିଧ୍ୟ । ମଣିଷ ଖାଲି ବିକଳ ହୁଏ । ସୁଯୋଗ-ସୁବିଧା ନ ପାଇ ଈଶ୍ୱରଙ୍କ ଗାଳି ଭର୍ତ୍ସନା କରେ, କିନ୍ତୁ ସବୁ ଜାଣି ଈଶ୍ୱର ଫଳ ଦିଅନ୍ତି । ସେ କାଳାତୀତ । ସେ ପାପ ପୁଣ୍ୟର ଊର୍ଦ୍ଧ୍ୱରେ । ସେ ମଣିଷର ପୂଜା ପାଇବା ପାଇଁ ଜଗି ବସି ନ ଥା'ନ୍ତି । ତେବେ ସୁଖ ସୁବିଧା ମାଗି ପ୍ରଜିଲା ପରେ, ଅଭୟ ମାଗି ଶରଣ ପଶିଲା ପରେ, ସେ ଯେବେ ଅସୁବିଧାରେ ପକାଇ ଭୟତ୍ରସ୍ତ କରି ଆନନ୍ଦ ପାଇବେ, ତାହାହେଲେ ତାଙ୍କୁ କ'ଣ କୈଫୟତ ମାଗିବା ଅଧିକାର ଭକ୍ତର ନାହିଁ ? ଏଇ ପ୍ରଶ୍ନର ଏକମାତ୍ର ଉତ୍ତର ଦେଇଛନ୍ତି କଥାକାର—''ଅଶ୍ରୁଭରା ଆଖି ଦୁଇଟିରେ ସେ ପ୍ରଣତି ଜଣାଇ କହିଲା—ପ୍ରଭୁ ହେ ! ଯାହା କରିବାର କରିସାରିଛ । ଏବେ ମତେ ଏଇ କାନ୍ତାରିଆ ଚିନ୍ତାରୁ ମୁକ୍ତି ଦିଅ ।'' (ମୂକ ଦେବତା) । କଥାକାରଙ୍କ ପ୍ରକୃତ ମନର କଥା କହିଛି 'ଗରିବର ଈଶ୍ୱର' ଗଳ୍ପର ନାୟକ ସହଦେବ । ଭଜନ ଗାଉଥିବା ବେଳେ ଆପଣାର ଅନୁଭୂତିର ବର୍ଣ୍ଣନା କରି ସେ କହୁଛି—''ସତ କହୁଚି ଠାକୁରଙ୍କ ନାମ ନେଲା ବେଳେ କେବେହେଲେ ତାଙ୍କୁ ମାଗିବାକୁ



ମନ ହୁଏ ନାହିଁ । ତା ଠାରୁ ବଡ଼, ତା ଠାରୁ ଭଲ— କେତେ ଲକ୍ଷ କୋଟି ଜିନିଷ ସେଠି ଅଛି କ'ଣ ମାଗିବି ? ଧନ କ'ଣ ହେବ ? ଜନ କ'ଣ ହେବ ? ସେ ପୁଣି କହିଚି, ସେ ଠାକୁରଙ୍କୁ ସେ ଉପଲବ୍ଧି କରିଛି ପବନରେ । ଗରିବ ହୋଇ ରହିବାକୁ ତା'ର ପରବାୟ ନାହିଁ । ବାବୁମାନେ ଯେଉଁ କାମକୁ ଡରନ୍ତି, ସହଦେବ ଈଶ୍ୱରଙ୍କ ନାମ ନେଇ ସହଜରେ ସେ କାମ କରିଯାଏ ।—''ନଈରେ କିଏ ଭାସିଗଲା । ଖରାପ ବେମାରିରେ କିଏ ମରିଗଲା । କେଉଁଠି ଗୁଣ୍ଡାକି ଚୋର ପ୍ରଶିଗୁଲେ । କଣ୍ଟା ଅରମା ବଣରେ ସାପ ଗର୍ଜୁଛି । ଅବା ପୁରୁଣା କୂଅ ଭିତରୁ ଗନ୍ଧ ବାହାରୁଚି । ନ ହେଲେ ଘରର ମଥାନ ଉପରେ ଚଢ଼ି ସଜାଡ଼ିବାକୁ ହେବ । ଏହିଭଳି ଅସଂଖ୍ୟ କାମକୁ ବାବୁମାନେ ଡରିଲା ବେଳେ କିଏ ଆଉ ଯିବ ? ଯାଆନ୍ତି ଈଶ୍ୱର । ଆଉ ତାଙ୍କ ଗୋଡେ ଗୋଡ଼େ ଯାଏ ସହଦେବ । ଆଉ ଯା'ନ୍ତି ତାହାରି ପରି ଗୁଡ଼ାଏ ଲୋକ ।''



ରାଜକିଶୋରଙ୍କ ହାଟ ସଉଦା ସରିଯାଇଛି । ଦୀର୍ଘ ଅଶୀ ବର୍ଷକାଳ ସଉଦା କରି କରି ଶେଷରେ ସେ ବଙ୍କାଗଛ ହୋଇଯାଇ ଥିଲେ । ତଥାପି ଶୁଖିଲା ଚଅଁର ବା ନଡ଼ିଆଟିଏ ପରି ସେ ଦାଣ୍ଡ ଲୋକଙ୍କୁ ପରଷୀ ଯାଇଥିଲେ ଅନେକ ପତ୍ର । ସୁଖ-ଦୁଃଖର ଅନୁଭୂତିରେ ଏକ ଭରପୂର ମଣିଷ ଥିଲେ ରାଜୁବାବୁ । ଗଳ୍ପ ଉପନ୍ୟାସ ସବୁ ଥିରେ ସେ ଖୋଜୁଥିଲେ ଜୀବନକୁ, ମଣିଷକୁ ଓ ମଣିଷ ମନର ଅନେକ ଅସମାହିତ ପ୍ରଶ୍ନର ଉତ୍ତରକୁ । 'ହାଟ ସଉଦା' ତା'ର ଏକ ସାର୍ଥକ ପ୍ରତିଲିପି ।

ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଖଲ୍ଲିକୋଟ (ସ୍ୱୟଂଶାସିତ) ମହାବିଦ୍ୟାଳୟ
ବ୍ରହ୍ମପୁର

# ଭିନ୍ନ ସ୍ୱାଦ, ଭିନ୍ନ ଅନୁଭୂତିର ସ୍ମାରକୀ: ରାସ୍‌କେଲ

ଡଃ ରବୀନ୍ଦ୍ର ନାଥ ମିଶ୍ର

ଯୁଗେ ଯୁଗେ ସଚେତନ ମଣିଷ ତା'ର ଅଭିପ୍ସାକୁ ଜଡ଼ ଓ ଚେତନ ଭିତର ଦେଇ ସାକାର କରିବାକୁ ଚେଷ୍ଟା କରିଛି । ସେ ସବୁବେଳେ ଅନ୍ୟ ଭିତରେ ସେଇ ସୂକ୍ଷ୍ମ ଚୈତନ୍ୟର ଅନୁସନ୍ଧାନରେ ସଫଳକାମୀ ହୋଇଛି । ପ୍ରକୃତିର ଛନ୍ଦ୍ରେ ଛନ୍ଦ୍ରେ ପୂରି ରହିଥିବା ଅନନ୍ତ ସତ୍ତାକୁ ଅନୁଭୂତିର ତୂଳୀରେ ଅଭିବ୍ୟକ୍ତିର ରଙ୍ଗ ଦେଇ ସେ ଆନନ୍ଦ ଅନୁଭବ କରିଛି । ସମ୍ବେଦନାର ସ୍ୱର ଶୁଣିପାରିଛି ସେ ପଥର, ମେଘଖଣ୍ଡ, ଗଛଲତା ଓ ପଶୁପକ୍ଷୀଙ୍କଠାରୁ । ମଣିଷଠାରୁ ଅଧିକ ସମ୍ବେଦନ ପାଇଛି ସେ ପ୍ରକୃତିରୁ ।

କେଉଁ ଅନନ୍ତ କାଳରୁ ଏହିପରଂପରାରେ ବ୍ରତୀ ହୋଇ ସେ ତା'ର ଭାବଭୋଳା କଥା କହି ଚାଲିଛି । କେତେବେଳେ ଛନ୍ଦରେ ତ କେତେବେଳେ ଗୀତରେ । କିନ୍ତୁ କଥା କହି ଚାଲିଛି ସେ ଭାଷା, ଭାବ ଓ କଳାଚାତୁରୀରେ ଠିକ୍ କାଳିଦାସଙ୍କ ମେଘଦୂତର ଯକ୍ଷ କରି । ବାଲ୍ମୀକିଙ୍କ ସମ୍ବେଦନାଠାରୁ କୌଣସି ଗୁଣରେ କମ୍ ନୁହେଁ । ମୈଥୁନରତ କ୍ରୌଞ୍ଚ ଯୁଗଳରୁ ଏକର ମୃତ୍ୟୁରେ ଅନ୍ୟର ଶୋକ ସେଦିନ ବେଦନାସିକ୍ତ କରିଥିଲା ଆଦିକବିଙ୍କ ହୃଦୟକୁ । ସୃଷ୍ଟି ହୋଇଥିଲା ଆଦିକାବ୍ୟ । ଠିକ୍ ସେହିପରି ଆଲୋଚ୍ୟ ଲେଖକଙ୍କ ମନରେ ରାସ୍‌କେଲ ପ୍ରତି ସମ୍ବେଦନା ସେଦିନ ସୃଷ୍ଟି କରିଥିଲା ଓଡ଼ିଆ ସାହିତ୍ୟରେ ଏକ ଅଭିନବ ଉପନ୍ୟାସ । ପଶୁପକ୍ଷୀ ଇତ୍ୟାଦିଙ୍କୁ ନେଇ ଲେଖିଥିବା ଗଳ୍ପ ଉପନ୍ୟାସ ସମ୍ଭାରରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିବା ସୁଲେଖକ ରାଜକିଶୋର ପଟ୍ଟନାୟକ ଏକ ଅମ୍ଳାନ ପ୍ରତିଭା । ସେ ଆଧାର ରୂପେ ପଶୁପକ୍ଷୀଙ୍କ ଜୀବନକୁ ସୂକ୍ଷ୍ମ ଅଧ୍ୟୟନ କରି ନୂତନ ସୃଷ୍ଟି ସମ୍ଭାରରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି ଯାହା ପାଠକଲେ ପାଠକର ହୃଦୟରେ ଏକ କୌତୁହଳ ଜାତ ହୁଏ ଓ ରସର ସଂଚାର କରିଥାଏ ।

ସେ କୁହନ୍ତି ''ଶାସ୍ତ୍ର ଅନୁସାରେ ପଥର ହେଉଛି ଜଡ଼ କିନ୍ତୁ ଜଡ଼ର ମଧ୍ୟ କିଛି ଐଶ୍ୱରିକ ସତ୍ତା ରହିଛି । ତେଣୁ ମନୁଷ୍ୟ ପଶୁପକ୍ଷୀ ସଂପୂର୍ଣ୍ଣ ସମାନାନ୍ତରରେ ନହେଲେବି ସମାନାନ୍ତରର । କାରଣ ଗୋଟିଏ କୁକୁର ବା ବିରାଡ଼ି ଯେଉଁ ସ୍ଥାନରେ ରହେ ସେ ତା'ର ଭାଷା ବୁଝିପାରେ । ସେ ଓଡ଼ିଆ, ହିନ୍ଦୀ, ବଙ୍ଗଳା, ଇଂରାଜୀ ବୁଝିପାରିବ । କିନ୍ତୁ ତାକୁ ପ୍ରୟୋଗ କରି ସୁବିଧା ନେଇ ପାରିବ ନାହିଁ । ଯେଉଁଠି ଗୋଟିଏ ପଶୁ ଓ ପକ୍ଷୀ ଉପରେ



ଲେଖାଯିବ ସେଠାରେ ମାନସିକ ଆଧାର ନେବାକୁ ବାଧ । ତେଣୁ ଇତର ପ୍ରାଣୀଙ୍କୁ ନେଇ ଯେଉଁ ଗଳ୍ପ, ଉପନ୍ୟାସ ଲେଖାଯାଇଛି ସେଥିରେ ସେମାନଙ୍କର ଯେଉଁ ସମୀକ୍ଷା କରାଯାଇଛି ସେଇଟା ଲେଖକ ମନରେ ଅଭିବ୍ୟକ୍ତି ଛଡ଼ା ଆଉ କିଛି ନୁହେଁ, ଲେଖିବାର ସୁବିଧା ପାଇଁ ସେମାନେ ତା'ର ଆଧାର ।''

ସ୍ୱାନୁଭୂତିକୁ ରୂପ ଦେବା ପାଇଁ ମଣିଷ ଗୋଟାଏ ଆଧାର ଖୋଜୁଥାଏ । ସେଇ ଆଧାରଟି ମିଳିଯିବା ସଙ୍ଗେ ସଙ୍ଗେ ସେ ତା'ର ଭାବରାଜ୍ୟକୁ ଶବ୍ଦ ସମ୍ଭାରରେ ବାନ୍ଧି ରଖିବାକୁ ଚେଷ୍ଟା କରେ । ଭାବାନୁକୂଳ ଭାଷା ଦେଇ ସେ ସୃଷ୍ଟି କରେ ସାହିତ୍ୟ । ସେ ତାଙ୍କ ନିଜସ୍ୱ ମତ ବ୍ୟକ୍ତକରି କହନ୍ତି ''ରାଜୁ ନକଲ କରି ବା ଅନୁସରଣ କରି ଲେଖିନାହିଁ । ତାହାର ଆଖି, କାନ ଓ ମନ ଦ୍ୱାରା ଯାହା ପରଖି କରିଛି ସେତିକି ଲେଖିଛି ।'' ଏହା ତାଙ୍କର ନିର୍ଭୀକ ସ୍ୱୀକାରୋକ୍ତି । ସେ କହନ୍ତି, ''ତଳୁଆଜୀବ ତଳୁଆଜୀବ ପ୍ରତି ସହାନୁଭୂତି ରଖିଥାଏ । ଯଥା-ମୁଁ ଯେମିତି ତୁ ସେମିତି । ତେଣୁ ଓଡ଼ିଆ ଗାଳ୍ପିକ ଇତର ପ୍ରାଣୀଙ୍କ କଥା ଲେଖିବା ବେଳେ ସେ ନିଜକୁ ସେହି ପ୍ରାଣୀଟି ସହ ସମାନ ନ କଲେ ସେ ପ୍ରାଣୀଟି ସଂପର୍କରେ ବିବରଣୀ ହିଁ ଦେବ । ସେ ବିବରଣୀ ଗଳ୍ପ ହେବ ନାହିଁ; ସିଏ ରାସ୍‌କେଲ ଉପନ୍ୟାସ ହେବ ନାହିଁ କିମ୍ବା ସୁଲତାନ ଗଳ୍ପ ହେବ ନାହିଁ । କିନ୍ତୁ ଏହି ଲେଖକ ନିଜ ସାଙ୍ଗରେ ସମାନ କରିବାକୁ ତା'ର ଯେଉଁ ଏକାତ୍ମବୋଧ ଆସିଛି ସେଥିରେ ସେ ଗଳ୍ପ, ଉପନ୍ୟାସ ଲେଖିଛି । ନିଜ କଥା କହିବା ପାଇଁ ପ୍ରାଣୀକୁ ବ୍ୟବହାର କରିଛି ।''

ରାସ୍‌କେଲ ସାଧାରଣ ଅର୍ଥରେ ପ୍ରୟୋଗ ନ ହେଲେ ବି ଲେଖକ ଏଇ ଶବ୍ଦଟିକୁ ତାଙ୍କ ଉପନ୍ୟାସର ନାମ ନେଇଛନ୍ତି । ଏହା ଦୁର୍ବଳତା ପ୍ରତି କୁଠାରାଘାତ କରିଛନ୍ତି । ରାସ୍‌କେଲର ଜୀବନଗାଥାରେ ଲେଖକ କହନ୍ତି—''ଏଇଟା ହେଉଛି ସେଇ ରାସ୍‌କେଲ କଥା—ତମର ରାସ୍‌କେଲ ନୁହେଁ । ଆମରି ରାସ୍‌କେଲ । ସେ ଆମର କୁକୁର ।'' ଏକ ପୋଷା କୁକୁର ପ୍ରତି ଲେଖକଙ୍କର ସମ୍ବେଦନା ଓ ସହାନୁଭୂତି ଅତ୍ୟନ୍ତ ହୃଦୟ ସ୍ପର୍ଶୀ ହୋଇପାରିଛି । ଏହା ଗୋଟାଏ ପଶୁ ପ୍ରତି ହୀନମନ୍ୟତା । ଦୂର କରି ପାଠକ ମନରେ ଏକ ବଳିଷ୍ଠ ବ୍ୟକ୍ତିତ୍ୱର ଆରୋପ କରିଛି ।

ଆଧୁନିକ ସମାଜରେ ପ୍ରଚଳିତ କେତେକ ଚାଟୁକାରିତା, ହୀନମନ୍ୟତା, ବର୍ବରତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଲେଖକ ପଶୁ ପକ୍ଷୀ ଓ ପ୍ରକୃତି ପ୍ରତି ଗଭୀର ସମବେଦନା ଜଣାଇଛନ୍ତି । ଏକ ପୋଷା କୁକୁରର ନାମ ରାସ୍‌କେଲ ରଖାଯାଇ ଏଇ ମୁଖ୍ୟ ନାମରେ ନାମିତ ହୋଇଛି ଉପନ୍ୟାସଟି । ପ୍ରଥମ ପୃଷ୍ଠାରେ ଲେଖକ କହନ୍ତି ଯେ ''ନାଁକୁ ନେଇ ଲୋକର ଆଚରଣ ବଦଳେ; ଆଚରଣ ନେଇ ଲୋକକୁ ମଧ୍ୟ ନାଆଁ ମିଳି ଯାଏ । ଯେମିତି

କୁକୁର ଛୁଆଟିକୁ ରାସ୍‌କେଲ୍ ନାଁ ମିଳିଗଲା ।

ରାସ୍‌କେଲର ସମସ୍ୟାହିଁ ସାଧାରଣ ମଣିଷର ସମସ୍ୟା । ଲେଖକଙ୍କ ମତରେ "ରାସ୍‌କେଲ ହେଲା ତମ ଆମପରି ଗୋଟିଏ ପ୍ରାଣୀ ତାହାର ସମସ୍ୟା ଯାହା ଆମର ସମସ୍ୟା ବି ସେୟା । ରାସ୍‌କେଲର ଜୀବନକୁ ଆଧାର କରି ସମାଜରେ ପ୍ରଚଳିତ କେତେକ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ପ୍ରତି ଲେଖକ ବ୍ୟଙ୍ଗ ବିଦ୍ରୁପ କରିଛନ୍ତି ।" ବିଦ୍ରୋହ ନାମରେ ଯେଉଁ ଦେଶସେବା ଚାଲିଛି ତା'ର ସେ ତୀବ୍ର ସମାଲୋଚନା କରିଛନ୍ତି ।

ରାସ୍‌କେଲ ପଶୁଟିଏ ହେଲେ ବି ତା'ର ଗୋଟାଏ ହୃଦୟ ଅଛି; ସେ ତା'ର ମାଲିକ ପ୍ରତି ସଂପୂର୍ଣ୍ଣ ସମର୍ପିତ । ତା' ପାଇଁ ଶୃଙ୍ଖଳା ଅଛି । ଟିକିଏ ବ୍ୟତିକ୍ରମ ହେଲେ ତା'କୁ ସମସ୍ତେ ମାରି ଗୋଡ଼ାନ୍ତି । ବଡ଼ବଡ଼ିଆଙ୍କ ଘରେ ସେ ଜଂଜୀରରେ ବନ୍ଧା ହୋଇ ରୁହେ । ସେ ଏକ ସାମାନ୍ୟ ଇତର ପ୍ରାଣୀ ହୋଇଥିବାରୁ ଘର ଭିତରେ ତା'ପାଇଁ ବହୁ କଟକଣା ରହିଥାଏ । ଲେଖକଙ୍କ ଭାଷାରେ ମଣିଷ ସମାଜରେ କୁକୁର ହେଉଛି ଅଛବ । କାଛ ଝିଟିପିଟି ଘରେ ରହିପାରେ । ବାହାରର ବିଛା ଓ ଚୁଚୁନ୍ଦ୍ରା ଘରେ ବୁଲିପାରନ୍ତି । କିନ୍ତୁ କୁକୁର ଘରଭିତରେ ଚଳପ୍ରଚଳ ହୋଇପାରିବ ନାହିଁ । ଏତକ ବୁଝାଇବା ପାଇଁ ରାସ୍‌କେଲ ବହୁତ ଗାଳି ଖାଏ । ପୁଣି ମାଡ଼ ବି ଖାଏ ।

ରାଜୁବାବୁ ସ୍ୱାଭିମାନର ସହିତ ବଞ୍ଚିବାକୁ ଚାହୁଁଥିଲେ । ସେଥିପାଇଁ ରଚନାଗୁଡ଼ିକରେ ଆତ୍ମାଭିବ୍ୟକ୍ତି ସ୍ପଷ୍ଟ ଓ ଶାଣିତ । ସେ କୁହନ୍ତି ଦୋଷ ନଥିଲେ କାକୁସ୍ତି ନାହିଁ । ପରଦୁଆରେ ହାତ ପତେଇବାର ପ୍ରୟୋଜନ ନାହିଁ । ସେମିତି ହେଲେ ଜୀବନର ସୁଆଦ ନାହିଁ । ଏଇ କଥା ଦେଖନ୍ତି ସଂସାରର ରାସ୍‌କେଲ ଦଳ ।

ଗୁଣକୁ ଆଦର କରିବା ସେ ଶିଖିଥିଲେ ଓ ଦୋଷକୁ ପାସୋରି ଯିବା ହିଁ ହେଉଛି ଜୀବନର ମୂଳମନ୍ତ୍ର ବୋଲି କହୁଥିଲେ । ରାସ୍‌କେଲ ଶିକ୍ଷା ଦେଉଥିଲା । ଯେ ସେ ଛୋଟ ନୁହେଁ-ସେ ବି ପ୍ରଶଂସାର ଯୋଗ୍ୟ, ସ୍ନେହର ପାତ୍ର ମଧ୍ୟ । ତାଙ୍କ ମତରେ ପୁଅ ଯାହା ସ୍ତ୍ରୀ ସେୟା, ପୋଷା କୁକୁର ମଧ୍ୟ ସେୟା । ସମାଜରେ ମାନବୀୟ ମୂଲ୍ୟବୋଧର ଅଭାବ ପରିଲକ୍ଷିତ କରି ସେ ରାସ୍‌କେଲକୁ ମାନ୍ୟତା ପ୍ରଦାନ କରିଛନ୍ତି ।

ତାଙ୍କ ମତରେ ମଣିଷ ବିବେକ ଶୂନ୍ୟ ହୋଇଯାଉଛି । କୁକୁରକୁ ମାଧ୍ୟମକରି ତା'ର ଗୁଣାବଳୀକୁ ଅନୁଧ୍ୟାନ କରି ମଣିଷ ସହ ଏକ ତୁଳନାତ୍ମକ ଦୃଷ୍ଟିକୋଣ ସେ ଆମ ସମ୍ମୁଖରେ ଉପସ୍ଥାପନ କରିବାକୁ ଯତ୍ନଶୀଳ ହୋଇଛନ୍ତି । ମଣିଷ ଆଜି ସବୁ କ୍ଷେତ୍ରରେ ହୀନମନ୍ୟତା ପ୍ରକାଶ କରୁଛି । କିନ୍ତୁ ରାସ୍‌କେଲ ଏକ ସାମାନ୍ୟ ପଶୁ ହେଲେ ବି ତା'ର ଗୋଟାଏ



କର୍ତ୍ତବ୍ୟବୋଧ ଅଛି । ଯାହା ମଣିଷଠାରେ ଆଜି ଅଭାବ । ପଶୁପ୍ରତି ସଚେତନତା ଏଇଥିପାଇଁ ଯେ ସେ ରାଜନୀତି ଜାଣେ ନାହିଁ । ତେଣୁ ରାସ୍‌କେଲ ରୋଗରେ ପଡ଼ିଲେ ତା' ପାଇଁ ପାଞ୍ଚପଚିଶି ଖର୍ଚ୍ଚ କରିବାକୁ ମାଲିକ ପଛାଉ ନାହିଁ । ତାକୁ ଡାକ୍ତର ଦେଖାଇବାଠାରୁ ଆରମ୍ଭ କରି ତା' ପାଇଁ ଔଷଧ କିଣିବା ଓ ତା' ସେବା କରିବାକୁ ସେ ହେଳା କରୁ ନାହିଁ । କିନ୍ତୁ ଘରେ ଯଦି କେହି ବେମାର ପଡ଼ିଲା ମଣିଷ ତା' ପାଇଁ ଏତେ ଯତ୍ନଶୀଳ ହେଉ ନାହିଁ ।

ଲୋକ ଦେଖାଣିଆ ଈଶ୍ୱର ଭକ୍ତିକୁ ସେ ସମାଲୋଚାନ କରୁଛନ୍ତି; "ଯିଏ ଯେତେ ଈଶ୍ୱର ଭକ୍ତି ପରିପାରେ ସେ ସେତେ ବଡ଼ ମହାତ୍ମା ପାଲଟି ଯାଏ । କିନ୍ତୁ ସମସ୍ତେ ଏଇ ରାସ୍‌କେଲ ଶ୍ରେଣୀର । ସେ କୁହନ୍ତି ରାସ୍‌କେଲ ଲାଙ୍ଗୁଡ଼ ହଲାଏ । ଆମେ ବି ଲାଙ୍ଗୁଡ଼ ହଲାଉ । ଲାଙ୍ଗୁଡ଼ ହଲାଇଲେ ସେବା ଯତ୍ନ ମିଳେ । ନରମା ଚିକ୍‌କଣ ପଦାର୍ଥ ମିଳେ, ସେମିତି ଈଶ୍ୱରଙ୍କ ପାଖରେ ବେକଭାଙ୍ଗିଲେଇଥିଆ ହେଲେ ସେ ବି ସେମିତି ମନୋରମା ଭାର୍ଯ୍ୟା, ମନମପାଧନ, କଳ୍ପନା ଛାଉଣୀ ଦରକ୍ବ ଦିଅନ୍ତି । ଦେଇ ଓ ଦିଆଇ ପାରିଲେ ସେ ହୋଇଯାନ୍ତି ବଡ଼ ଉଚ୍ଚକୁ ଡେଇଁ ପାରୁଥିବା ମାଙ୍କଡ଼ ଭକ୍ତ ।"

ତାଙ୍କ ଦୃଷ୍ଟିରେ ରାସ୍‌କେଲ ଓ ମଣିଷ ସମାନ । ସମସ୍ତଙ୍କୁ ସମଭାବରେ ଦେଖିବାହିଁ ଧର୍ମଭାବ । ସେଥିପାଇଁ ମୁନି ଋଷିମାନେ ହରିଣ ପୋଷୁଥିଲେ । ସମସ୍ତେ ଗାଈ ପୋଷନ୍ତି । ବାବାଜୀ ନେଉଳଟାଏ ନହେଲେ ନେପାଳୀ ମୂଷାଟିଏ ପୋଷେ । ପ୍ରବଳ ପ୍ରତାପୀ ଲୋକେ ବାଘଛୁଆଟାଏ ପୋଷନ୍ତି । ତାଙ୍କ ବାବୁଙ୍କ ମତରେ, "ପୋଷା ଜୀବ ହେଉଛି ମଣିଷର ମାପକାଠି ଓ ତରାଜୁ ।"

ରାସ୍‌କେଲ୍ ଥରେ ବିଷଖାଇ ମଣିଷ ହୃଦୟର ମାପ ନେଇଗଲା । ଘରେ ପଇସା ନଥିଲେ ବି ମାଲିକ ତା' ପାଇଁ ପଇସା ଧାରି କରି ତା'ର ଚିକିତ୍ସା କରାଇଲେ । କାରଣ ମାଲିକର ରାସ୍‌କେଲ ପ୍ରତି ମମତା ଅଛି । ବାବୁବାବୁ କହୁଥିଲେ ଯେ ଯିଏ ଯେତେ ଶିକ୍ଷିତ ସେତେ ହୃଦୟହୀନ, ତାଙ୍କ ଦୃଷ୍ଟିରେ ପୋଥି ପାଠର ଜ୍ଞାନ ହୃଦୟକୁ ଛୋଟ କରିଦିଏ । ଛୋଟ ହୃଦୟର ମଣିଷ ସଂସାରର ତଳରୁ ତଳକୁ ଚାଲିଯାଏ ।

ପଶୁ ସମାଜ ବିପଦ ଭିତରେ ଯାଇ ଆସି ତାହାର ଆଶ୍ରିତ ପାଇଁ ଆଧାର ଆଣେ କିନ୍ତୁ ମଣିଷ ସ୍ୱାର୍ଥପର ହୋଇ କେବଳ ସୁବିଧା ସୁବିଧାରେ ସୁନାମ ଆଦାୟ କରିନିଏ ।

ମଣିଷ କେତେ ଛୋଟ ବୁଝିବାକୁ ହେଲେ ଇତର ପ୍ରାଣୀଙ୍କୁ ଦେଖିବା ଦରକାର । ଆକାଶର ଢୁକୁଢୁକିଆ ତାରାକୁ ପାଖରେ ଦେଖିଲେ ଆମର ପୃଥିବୀଠାରୁ ବଡ଼ ହେଇଯାଏ । ପଶୁ ସମାଜର କର୍ତ୍ତବ୍ୟ ଜ୍ଞାନ ଓ କର୍ତ୍ତବ୍ୟ ବିନିମୟରେ କରୁଥିବା ପଶୁ କର୍ତ୍ତବ୍ୟ ମଣିଷ

ହୃଦୟର ଦୈନ୍ୟ ଦେଖାଇଦିଏ । ଇତର ପ୍ରାଣୀଙ୍କର ଚାହାଣୀ ହେଉଛି ମଣିଷର କାମର ସାର୍ଟିଫିକେଟ୍ । ସେଥିରେ ବିଶେ ଆଗ୍ରହ, ବୈରାଗ୍ୟ, ଉଦାସୀନତା ଓ କୃତଜ୍ଞତା ।''

ପଶୁପକ୍ଷୀ ସମ୍ପର୍କରେ ଗଭୀର ଅନୁଶୀଳନ କରି ସେ ନିଜର ଅନୁଭୂତିର କଥା କହିଛନ୍ତି । ପଶୁପକ୍ଷୀଙ୍କଠାରୁ ଅନେକ କିଛି ଦେଖିବାର ଅଛି ବୋଲି ସେ ଦୃଢ଼ୋକ୍ତି ବାଢ଼ନ୍ତି । ତାଙ୍କ ମତରେ ''ପଶୁର ସେବା ହେଉଛି ପରମାତ୍ମା ଚର୍ଚ୍ଚାର ମାପ ଓ ଓଜନ । ଯିଏ ପଶୁ ପକ୍ଷୀଙ୍କୁ ଆପଣାର କରିପାରେ ବା କରିପାରିଛି ସେଇ କେବଳ ଅପର ମଣିଷକୁ ଆପଣାର କରିପାରିବ । କାରଣ ପଶୁଠାରୁ ବହୁତ ତଳେ ରହିଛି ମଣିଷ ।

ପଶୁ ପକ୍ଷୀଙ୍କଠାରୁ ବୃକ୍ଷ ଲତା ସର୍ବୋପରି । ସେମାନେ କିଛି ନ ନେଇ ଦେଇପାରନ୍ତି । ସବୁ ଦେଲା ପରେ କି ଥରେ କହନ୍ତି ନାହିଁ ଯେ ଅନ୍ୟଙ୍କୁ ଦେଇଛନ୍ତି । ସବୁ ଦେଲା ପରେ ନ ରଖି ଦେବା ହେଉଛି ବୃକ୍ଷ ଲତାର ଗୁଣ । ତାହା ଉପରେ ରହିଛି ପାହାଡ଼, ପର୍ବତ ଓ ମାଟି । ସେଠି ପ୍ରତୀକ୍ଷା ଅଛି କିନ୍ତୁ ଆକାଂକ୍ଷା ନାହିଁ । ନିଜର ସେବା ଓ ସାହାଯ୍ୟ ଦେବା ପାଇଁ ଅଭ୍ୟର୍ଥନା ରହିଛି କିନ୍ତୁ କିଏ କେଉଁ କେବେ କେବେ ନେବ କି ନ ନେବ ସେଥିପାଇଁ ଭାବନା ନାହିଁ ।'' ଲେଖକ ରାସ୍କେଲଙ୍କୁ ବାବାଜୀ ସହ ତୁଳନା କରି କୁହନ୍ତି ଯେ ବାବାଜୀର ସାଧାନ କୁକୁର ଛୁଆ ରାସ୍କେଲର ସାଧନା ପରି ।

କୁକୁର ଛୁଆ ରାସ୍କେଲ ତୁଳନାରେ ସର୍କସର ବାଘ, ସିଂହ, ନନ୍ଦନକାନନର ସବୁ ଜନ୍ତୁ ଛୋଟ । ଏଇ ଛୋଟ ରାସ୍କେଲର ପାଳିବା ପାଇଁ ସାରା ସଂସାରର ଧନ ଦୌଲତ ଅତି କମ୍ ଓ ଉଣା । ଲେଖକ ଉକ୍ତ ଉପନ୍ୟାସରେ ରାସ୍କେଲଙ୍କୁ ଅନ୍ୟ ପଶୁମାନଙ୍କ ତୁଳନାରେ କୌଣସି ଗୁଣରେ କମ୍ ନୁହଁ ବୋଲି ପ୍ରତିପାଦନ କରିଛନ୍ତି ।

ଉପନ୍ୟାସରେ ମୁଖ୍ୟ ଚରିତ୍ର ରାସ୍କେଲକୁ କେନ୍ଦ୍ର କରି ଲେଖକ ସମାଜରେ ପ୍ରଚଳିତ ବ୍ୟବସ୍ଥା ପ୍ରତି ବେଶ୍ ସଚେତନ ପ୍ରତିବାଦ ସ୍ୱରରେ ବୀତସ୍ପୃହ ହୋଇ ସେ କଥିତ ଭାଷାର ପ୍ରୟୋଗ କରି ଛୋଟ ଛୋଟ ପ୍ରଭାବଶାଳୀ ବାକ୍ୟ ଓ ଯଥୋଚିତ ଶବ୍ଦ ପ୍ରୟୋଗ ଦ୍ୱାରା ସାମାଜିକ ସ୍ଥିତିର ନିଖୁଣ ଚିତ୍ର ପ୍ରସ୍ତୁତ କରିବାରେ ସଫଳକାମୀ ହୋଇଛନ୍ତି । ରାସ୍କେଲ ମାଲିକ ଘରର ଏକ ଚିତ୍ର ପ୍ରସ୍ତୁତ କରିବାକୁ ଯାଇ ସେ କୁହନ୍ତି—ଏଇ ବ୍ରହ୍ମାଣ୍ଡ ଭିତରେ ଆମର ପୃଥିବୀ ଭିତରେ ଆମର ଭାରତବର୍ଷ, ଏଇ ଭାରତବର୍ଷ ଭିତରେ ଆମର ଉତ୍କଳ ଜନନୀ, ଆଉ ଏଇ ଉତ୍କଳ ଖଣ୍ଡରେ ସହରଟିଏ କଟକ । ସେଇ ସହରେର ଗୋଟିଏ ଗଳିରେ ଠିଆ ହୋଇଥିବା ଭଙ୍ଗା ଦଦରା ପୁରୁଣା ଘରଟିରେ ଗୋଟିଏ ଦୟନୀୟ ପରିବାର ରାସ୍କେଲର ।''



ରାସ୍‌କେଲରେ ସମ୍ବେଦନଶୀଳ ଲେଖକର ହୃଦୟ ଧନୀ ଗରିବର ଭିତରେ କୌଣସି ପାର୍ଥକ୍ୟ ଲକ୍ଷ୍ୟ କରେ ନାହିଁ । ସେ କୁହନ୍ତି—ଅନ୍ୟର ସୁଖ ପାଇଁ ବଞ୍ଚିବା ଜୀବନର ସାର୍ଥକତା । ଇଏ ବୁଦ୍ଧିର ବାହାରେ ନାହିଁ । ହୃଦୟର ବାହାରେ । ଏହାର ନାମ ସମ୍ବେଦନା । ଏଥିରେ ଗରିବ ଧନୀର ସଂପର୍କ ନାହିଁ । ମୂର୍ଖ ପଣ୍ଡିତର ସଂପର୍କ ନାହିଁ ।

ଓଡ଼ିଶାର ଓଡ଼ିଆ ଲେଖକଙ୍କ ପ୍ରତି ସେ ବିତସ୍ପୃହ ହୋଇପଡ଼ିଛନ୍ତି ଏବଂ ସ୍ଥଳ ବିଶେଷରେ ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଖୋସାମଦର ସୀମାଲଂଘନ କରୁଥିବାରୁ ସେ ଲେଖକଙ୍କୁ ଚୁଟିଆ ଲେଖକ କହି ଗାଳି ଦେଇଛନ୍ତି । ସେହିପରି ପୁଲିସବାଲାଙ୍କ ପ୍ରତି କଟୁମନ୍ତବ୍ୟ ଦେଇ କହିଛନ୍ତି— ''ଯେଉଁ ପୁଲିସ୍ ଚୋରିକରି ଜାଣି ନାହିଁ ସିଏ କ'ଣ ଚୋରକୁ ଧରି ପାରିବ ? ଯିଏ ନଇ ରକ୍ତରେ ଖେଳି ନ ପାରେ ସେ କ'ଣ ଯୁଦ୍ଧ ଭୂଇଁର ଆଗୁଆ ଲାଇନ୍‌ରେ ପଶି ଯାଇପାରିବ?'' ନିଷ୍ଠୁର ବାସ୍ତବତାକୁ ଏଇ ପରିପ୍ରେକ୍ଷୀରେ ପ୍ରତ୍ୟକ୍ଷ କରି ହୁଏ ।

ପ୍ରଚଳିତ ଶାସନ ତନ୍ତ୍ରକୁ ମଧ୍ୟ ସେ ସମାଲୋଚନା କରିଛନ୍ତି ତାଙ୍କ ଭାଷାରେ ''ଗୁଣ୍ଡା ବଦମାସ ନଥିଲେ ଶାସନ ନଥାନ୍ତା, ପ୍ରଶାସନ ନଥାନ୍ତେ ମନ୍ତ୍ରୀ ନଥାନ୍ତେ । ମଦ ଓ ମହିଳା ନଥାନ୍ତେ ।'' ଶାସନ ତନ୍ତ୍ର ପ୍ରତି ଏଭଳି ନିର୍ଭୀକ ମନ୍ତବ୍ୟ ଦେବାରେ ଲେଖଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ ।

ରଜୁବାବୁ ଓକିଲ ଥିଲେ । ଜୀବନରେ ସେ ବିଭିନ୍ନ ସ୍ତରର ଲୋକଙ୍କ ସଂପର୍କରେ ଆସିଛନ୍ତି । ଏହି ଅନୁଭୂତିର ବିବିଧତା ସେ ନିଜର ରଚନାରେ ସନ୍ନିବିଷ୍ଟ କରି ଓଡ଼ିଆ ସାହିତ୍ୟର ଗଳ୍ପ ଓ ଉପନ୍ୟାସ ବିଭାଗକୁ ଏକ ନୂତନ ଦୃଷ୍ଟିଭଙ୍ଗୀ ପ୍ରଦାନ କରିଛନ୍ତି ଓ ଅନେକ ଗଳ୍ପ ଓ ଉପନ୍ୟାସର ସମ୍ଭାରରେ ସମୃଦ୍ଧ କରିଛନ୍ତି ।

ଲେଖକ ପଶୁ ପକ୍ଷୀଙ୍କୁ ଜ୍ଞାନୀ ବୋଲି ପ୍ରମାଣିତ କରିଛନ୍ତି ''ପଶୁ ପକ୍ଷୀଙ୍କର ଜୀବନ ଦର୍ଶନ ନଥାଏ । ତେଣୁ ସେମାନେ ପ୍ରକୃତରେ ଜ୍ଞାନୀ । ଅଳ୍ପକଥା ବୁଝନ୍ତି । ଅଳ୍ପ କଥା ଜାଣନ୍ତି । ତେଣୁ ସେମାନେ ସବୁବେଳେ ଓ ସବୁକାଳେ ମଣିଷଙ୍କଠାରୁ ସରଳ ।'' ତାଙ୍କ ଦୃଷ୍ଟିରେ କେବଳ ପଶୁପକ୍ଷୀଙ୍କୁ ବନ୍ଦୀ କରି ରଖାଯାଉ ନାହିଁ । ଆଜିକାଲି ସର୍ବୋଚ୍ଚ ଶାସନକୁ ମଧ୍ୟ ପଞ୍ଜୁରୀ ଭିତରେ ରଖିଲାପରି ରଖା ଯାଉଛି । ତାଙ୍କ ମତରେ ସଂସାରର ସମସ୍ତଙ୍କୁ ବନ୍ଦୀ କରି ରଖାଯାଇଛି । ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ସର୍ବୋଚ୍ଚ ସଚୀବଙ୍କଠାରୁ ଆରମ୍ଭ କରି ସାଧାରଣ ପ୍ରକାର ଚାକର ଓ ଗୋଡି କ୍ରୀତଦାସ ମଧ୍ୟ ବନ୍ଦୀ ।

ରାସ୍‌କେଲ ଏକ ଭିନ୍ନ ସ୍ୱାଦର ଉପନ୍ୟାସ ବୋଲି ପ୍ରମାଣିତ ହୋଇଛି । ଏଥିରେ





ମୁଖ୍ୟଚରିତ୍ର, ମାତୃ ସ୍ନେହରୁ ବଞ୍ଚିତ ହୋଇ ନାହିଁ ଯଦିଓ ଅତୁଟ ରହିଛି । ଯେତେ ବଡ଼ ବିପଦ ଆସୁ ମାଆ ହେଉଛି ଜନ୍ମର ଓ ଆଶ୍ରୟର କେନ୍ଦ୍ରବିନ୍ଦୁ । ମାଆ ହେଉଛି ଗୋଟିଏ ବିଶ୍ୱାସ, ତାଙ୍କ ଦୃଷ୍ଟିରେ ସମସ୍ତଙ୍କର ମା' ପ୍ରାୟତଃ ସମାନ । ଉତ୍ତମ ଚରିତ୍ର ଗଠନ ଉପରେ ସେ ଗୁରୁତ୍ୱ ଆରୋପ କରି କୁହନ୍ତି ଯେ ପଶୁ ପକ୍ଷୀଙ୍କର ଚରିତ୍ର ମଣିଷ ଚରିତ୍ରଠାରୁ ସରସ । କୁକୁରର ଚରିତ୍ର ତା'ର ମାଲିକର ଚରିତ୍ରଠାରୁ ଭଲ ।

କୁକୁର ନଥିଲେ ସଂସାରରୁ ସ୍ନେହ, ଶ୍ରଦ୍ଧା, ସହାନୁଭୂତିର ବାରିଧାର ଶୁଖିଯାଇଥାନ୍ତା । କାଉ, ବିଲେଇ, ମଇନା, ନେଉଳ, ହରିଣ ଆଦି କେହି କେହି ମଣିଷକୁ ଏମିତିକାବୁ କରିପାରନ୍ତେ ନାହିଁ ।

ରାସ୍‌କେଲ ପିନ୍ଧୁଥିବା ପଟି ମାଧ୍ୟମରେ ଲେଖକ ସବୁସ୍ତରର ଚାକିରୀଆମାନଙ୍କୁ ସମାଲୋଚନା କରିଛନ୍ତି । ବେଲଟ ଅଛି ସବୁଆଡ଼େ । ଓଡ଼ିଶା ସାହିତ୍ୟ ଏକାଡ଼େମୀ, କଟକ ବାରବାଟୀ ଷ୍ଟାଡ଼ିୟମ୍, ଛୋଟ ଚାକିରୀ, ବଡ଼ଚାକିରୀ, ହାଇକୋର୍ଟ, ଜଜ୍ ପାହ୍ୟାରୁ ଛୋଟ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କର ବେଲଟ ପିନ୍ଧିବା, ପିନ୍ଧାଇବା ଓ ବେଲଟ୍ ହେଉଛି ଆମ ପେଟ ପାଟଣାର ଚିହ୍ନ ଠିକ୍ ଖାଉଟି ଘଡ଼ି କାର୍ଡ଼ି ଏବି ସିଜବା ସ୍ୱେଶାଲ । ଏଥିରେ ଦର୍ଶନ ନାହିଁ ଅଛି କେବଳ ସ୍ଥିତି ।

ମାତାକୁ ଓ ମାତୃସ୍ନେହକୁ ସର୍ବୋଚ୍ଚ ସ୍ଥାନ ପ୍ରଦାନ କରି ଲେଖକ ପୁଣି କୁହନ୍ତି ଯେ "ମାତା କେବେ କୁମାତା ହୋଇ ପାରେନା କିନ୍ତୁ ପୁତ୍ର, କୁପୁତ୍ର ହୋଇଯାଏ; ଲେଖକଙ୍କ ମତରେ ଯିଏ ମାଆକୁ ଶ୍ରଦ୍ଧା କରେ ସେଇ ହେଉଛି ଧାର୍ମିକ । ରାସ୍‌କେଲ ପରି ଯିଏ ମାଆ କୋଡ଼ରେ ଶୋଇପାରେ ସେ ଈଶ୍ୱରଙ୍କୁ ଦେଖି ପାରିବ । ଈଶ୍ୱର ମଣିଷକୁ ଦେଖାଦିଅନ୍ତି ମାଆ ରୂପରେ, କୁକୁର ରୂପରେ, ସାଗର ରୂପରେ, କେଉଁଠି ଜଙ୍ଗଲ, ପିଖାଚ, ଘେରା ଅନ୍ଧାର ଚକ, ଜାଲିଆ ଆଦି ଅନେକ ରୂପରେ । କିନ୍ତୁ ମାଆର ରୂପ ସବୁଠାରୁ ଅଧିକ ମୂଲ୍ୟବାନ । ଏଇ ସଂସାର ଗଢ଼ା ହୋଇଛି ମାଆମାନଙ୍କ ପାଇଁ ଚରିତ୍ରହୀନ ନଷ୍ଟ ଚରିତ୍ର ବାପାମାନଙ୍କ ପାଇଁ ନୁହଁ ।"

ଜୀବନର ସାୟାହ୍ନରେ ଲେଖକ ମାତୃକୃପା ପ୍ରତି ବିଶେଷ ଆଲୋକପାତ କରିଛନ୍ତି ଏଇ ଉପନ୍ୟାସ ମାଧ୍ୟମରେ ।

ଲେଖକ ଶେଷ ଜୀବନ ପର୍ଯ୍ୟନ୍ତ ସେଇ ମାତୃକୃପା ବଳରେ ସାହିତ୍ୟ ସାଧନା ସହ ନିଜ କର୍ମମୟ ଜୀବନକୁ ସାର୍ଥକ କରିଛନ୍ତି ସେ କୌଣସି ପ୍ରତିଷ୍ଠା ବା ପୁରସ୍କାର ପଛରେ ଗୋଡ଼ାଇବାକୁ ପସନ୍ଦ କରିନାହାନ୍ତି ବରଂ ପୁରସ୍କାର ତାଙ୍କର ଦୀର୍ଘ ଦିନର ସାଧନାକୁ



ଆପେ ଆପେ ଆସି ବରଣ କରିଛି । ତାଙ୍କ ମତରେ "ଖରାପକୁ ସୁପାରିଶ କଲେ ସେ ଭଲ ହୋଇଯାଏ; ଏମିତି ଅନେକ ଅନାଡ଼ି ଲେଖକ ଅନାଡ଼ି ଓକିଲ ଓ ଅଦରକାରୀ ପଦାର୍ଥ ଅତି ମୂଲ୍ୟବାନ୍ ହୋଇଯାନ୍ତି ।" ତେଣୁ ସେ କାହାରି ସୁପାରିଶ ବା ପ୍ରଶଂସାକୁ ଅପେକ୍ଷା ନ କରି ସାହିତ୍ୟ ସାଧନା କରି ଚାଲିଥିଲେ ।

ଲେଖକ ଜଣେ ସହୃଦୟ ଥିଲେ କାରଣ ସହୃଦୟ ନହେଲେ ସାହିତ୍ୟ ଜଗତକୁ ପଶିବା ଦୁଃସାଧ । ସେ ସମସ୍ତଙ୍କୁ ଭଲ ପାଉଥିଲେ । ତାଙ୍କ ଭିତରର ମଣିଷ କୁହେ "ଭଲ ପାଇବା ବା ମନେ ପକେଇବା ହେଉଛି ଅପରର ମୂଲ୍ୟ । ଏହି ମନେ ପଡ଼ିବା ହେଉଛି ପ୍ରୀତି, ସ୍ନେହ-ମମତା ।"

ତାଙ୍କର ଇଶ୍ୱରଙ୍କ ଉପରେ ଅଗାଧ ବିଶ୍ୱାସ ଥିଲା । କିଛି ଅଭିବ୍ୟକ୍ତିରେ ହିଁ ତାଙ୍କୁ ଆନନ୍ଦ ମିଳୁଥିଲା । ହିଁ ଏହା ସତ୍ୟ ଯେ ସ୍ରଷ୍ଟା ସୃଷ୍ଟିରେ ହିଁ ଆନନ୍ଦ ପାଏ ।

ସେ କହୁଥିଲେ ଯାହାର କେହି ନାହିଁ—ତାହାରି ପାଇଁ ଇଶ୍ୱର । ଯାହାର କେହି ଅଛି—ସେ ଚାଲେ ସେଇ ଲୋକକୁ ଧରି ତାର ସବୁ ସୁବିଧା ନେବା ପାଇଁ । ସେ ଇଶ୍ୱରଙ୍କୁ ଏକ ଅନୁଷ୍ଠାନ ଭାବେ ବର୍ଣ୍ଣନା କରିଛନ୍ତି । ଇଶ୍ୱରଙ୍କ ଦୃଷ୍ଟିରେ ପାହାଡ଼ ଓ ମାଟିଗଦା ସମାନ । ଘାସ ଓ ଦ୍ରୁମ ସମାନ । ଅନ୍ୟାୟର ମନ୍ଦିର ନ୍ୟାୟର ଦେବୀ ସମାନ । କୁକୁର ଓ ମଣିଷ ସମାନ । ଏହି ସମାନ ଭାବ ଦେଖାଇବା ପାଇଁ ସଂସାର ଗୋଟାଯାକ ଲାଭ କ୍ଷତି, ଜନ୍ମ ମରଣ, ଅନ୍ୟାନ୍ୟ ଓ ନ୍ୟାୟକୁ ଆଣି ଥୋଇଛନ୍ତି । ଧର୍ମ ଓ ଦର୍ଶନକୁ କଳାତ୍ମକ ଢଙ୍ଗରେ ଔପନ୍ୟାସିକ ପରିବେଷଣ କରିଛନ୍ତି, ଉପନ୍ୟାସର ଛତ୍ରେ ଛତ୍ରେ । ଏପ୍ରକାର ଦୃଷ୍ଟିଭଙ୍ଗୀ ନେଇ ବିଚାର କରିବାରେ ସେ ଓଡ଼ିଆ କଥା ସାହିତ୍ୟରେ ଅନ୍ୟମାନଙ୍କଠାରୁ ବେଶ୍ ଉର୍ଦ୍ଧ୍ୱରେ ।

ଦେଖାଣିଆ ବ୍ୟବହାର ଓ ସାଜସଜ୍ଜାକୁ ସେ ଘୃଣା କରୁଥିଲେ । ରାସ୍‌କେଲରେ ସେ କେବଳ ରାସ୍‌କେଲର ଜୀବନ କଥା କହିନାହାନ୍ତି ବରଂ ମଣିଷ ସମାଜର ଅନେକ ସମସ୍ୟା ପ୍ରତି ସେ ନିଜର ବ୍ୟଙ୍ଗୋକ୍ତି ପ୍ରଦାନ କରି ତା ସମାଧାନର ପନ୍ଥା ବାହାର କରିଛନ୍ତି ।

ଉପନ୍ୟାସର ନାୟକଭାବେ ଏକମାତ୍ର ଚରିତ୍ର ରାସ୍‌କେଲ ଶେଷକୁ ରୋଗଗ୍ରସ୍ତ ହୋଇ ମୃତ୍ୟୁବରଣ କରିଛି କିନ୍ତୁ କୁକୁର ମାଧ୍ୟମରେ ମଣିଷର କୁପ୍ରବୃତ୍ତିଗୁଡ଼ିକୁ ଆଲୋଚନା କରାଯାଇଛି । ଓଡ଼ିଆତ୍ୱ ପ୍ରତି ଲେଖକ ସଜାଗ ରହି ଅଣ ଓଡ଼ିଆତ୍ୱର ଅନୁପ୍ରବେଶକୁ ଦର୍ଶାଇ ସମସ୍ତଙ୍କୁ ସଚେତନ କରି ଦେଇଛନ୍ତି ।

ସମଗ୍ର ଉପନ୍ୟାସଟିରେ ଲେଖକ କୁକୁର ଓ ମଣିଷ ସଂପର୍କର ସେତୁ ପ୍ରତିଷ୍ଠା କରିଛନ୍ତି । ତାଙ୍କ ଉକ୍ତିରେ କିଏ ସ୍ଥାନ ପାଇଛି; କିଏ ସ୍ଥାନ ହରାଇଛି ? ସମ୍ବନ୍ଧ ତ ମଣିଷ

ଓ କୁକୁରଙ୍କର । କେଉଁଠି ମଣିଷ କୁକୁର ହୋଇଛି କ୍ଷମତା ପାଇବାକୁ ପୁଣି କୁକୁର ପୋଷିଛି କ୍ଷମତାକୁ ରଖିବାକୁ । ଚଳନ୍ତି ନଈ ପରି କେଜାଣି କେତେ ସେବା ଯତ୍ନ ଆଣି ସେ ଢାଳି ଦେଇଛି କୁକୁର ଉପରେ, କୁକୁର ପକାଇଛି ମଣିଷ ଦେହରେ ।

ଲେଖକଙ୍କ ଜୀବନରେ ରାସ୍‌କେଲର ସ୍ମୃତି ସବୁଠୁ ମହତ୍ତ୍ୱପୂର୍ଣ୍ଣ । ତାଙ୍କ ଭାଷାରେ ସ୍ମୃତି ହେଉଛି ମଣିଷର ସ୍ୱାର୍ଥର ମାଳା । ସେ ଯେଉଁଠି ଯାହା ପାଇଥାଏ, ସେତକ ଏକାଠି କରି ନିଜକୁ ବୁଝାଏ ଯେ ସେ ଭଲ ମଣିଷ ବୋଲି ଝୁରୁଛି ।

ଆଜି ରାଜୁବାବୁଙ୍କ ସ୍ମୃତି ଚାରଣ କଲାବେଳେ ବାରମ୍ବାର ତାଙ୍କର ସେଇ ରାସ୍‌କେଲ କଥା ମନେ ପଡ଼େ । ଭାଷା, ଭାବ, ଶୈଳୀ, ଶିଳ୍ପ ଓ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଉକ୍ତ ଉପନ୍ୟାସଟିରେ ସମସ୍ତ ବିଭବ ପରିଲକ୍ଷିତ ହୁଏ ଓ ପାଠକର ଭାବ ରାଜ୍ୟରେ ପାରସ୍ପରିକ ସମ୍ପର୍କ ପ୍ରତି ସମ୍ମୋହନ ସୃଷ୍ଟି କରେ ।

ରାଜୁବାବୁ ଆଉ ଆମ ଗହଣରେ ନାହାନ୍ତି ସତ୍ୟ କିନ୍ତୁ ତାଙ୍କର ରାସ୍‌କେଲ ପରି ଅନେକ ଗଳ୍ପ, ଉପନ୍ୟାସ ଆମର ସବୁଦିନ ପାଇଁ ସ୍ମୃତିଚାରଣ କରୁଥିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଲେଖକର ଗୋଟାଏ ସ୍ୱାଭିମାନ ରହିବା ଦରକାର । ସେ ସ୍ୱତନ୍ତ୍ର ହେଲେ ଯାଇ ସାହିତ୍ୟ ମୁକ୍ତଚିନ୍ତା ଓ ବିଚାର ନେଇ ଅଭିବ୍ୟକ୍ତି ପ୍ରଦାନ କରିବ । ସେ ଜଣେ ସଚେତନ ଓ ଉଚ୍ଚ ଚିନ୍ତନର ସ୍ରଷ୍ଟା ଥିଲେ । ଅନ୍ତିମ ଶଯ୍ୟାରେ ଥାଇ ମଧ୍ୟ ସେ ବାକ୍‌ଶକ୍ତି ହରାଇ ନଥିଲେ । ମୃତ୍ୟୁ ପ୍ରତି ତାଙ୍କର ଭୟ ନଥିଲା । ମୃତ୍ୟୁ ପ୍ରତି ନିର୍ଭୀକ ହୋଇ କାମ କରିବା ପାଇଁ ସେ ତାଙ୍କ ସୃଷ୍ଟିରେ ଆହ୍ୱାନ ଦେଇଛନ୍ତି । ନିଜେ ବଞ୍ଚି ଅନ୍ୟକୁ ସମାଜରେ ଜଣେ ସଚେତନ ନାଗରିକ ହିସାବରେ ବଞ୍ଚିବାର ପ୍ରେରଣା ଦେଇଛନ୍ତି ।

ରାସ୍‌କେଲର ମୃତ୍ୟୁରେ ସେ ମୃତ୍ୟୁଭୟତ୍ରସ୍ତ ହୋଇ ନାହାନ୍ତି ସେ କୁହିଛନ୍ତି ଯେ '' ଏଇ ସଂସାରଟା ହେଉଛି ବଞ୍ଚିବା ଲୋକଙ୍କର । ଚାଲିଯାଇଥିବା ଲୋକଙ୍କ ଆଡ଼େ ଧାଇଁବା ହେଉଛି ପାଗଳାମୀ । ଜୀବନ୍ତପ୍ରାଣୀ କଣ କେଉଁଦିନ ମରଣ ନଈ କୂଳକୁ ଯାଇ ପାରିବ ? ଏଇ ପ୍ରଶ୍ନଟିଏ ଆଜି ସଭିଙ୍କ ପାଇଁ ସେ ଛାଡ଼ି ଯାଇଛନ୍ତି ?

ଅଧ୍ୟାପକ, ସ୍ନାତକୋତ୍ତର ହିନ୍ଦୀ ବିଭାଗ
ରେଭେନ୍‌ସା କଲେଜ, କଟକ





# 'ଲେଖକ ଓ ପାଠକ' : ପଢ଼ିବା ଲୋକର ମତାମତ

**ବିଜୟ ମଲ୍ଲ**

*ରାଜକିଶୋର ପଟ୍ଟନାୟକଙ୍କର ପ୍ରତ୍ୟେକ ପ୍ରକାଶିତ ପୁସ୍ତକରେ 'ପଢ଼ିବା ଲୋକର ମତାମତ ଶୀର୍ଷକ ଥାଇ ଏକ ଖାଲିପୃଷ୍ଠା ଥାଏ । ବହି ପଢ଼ି ସାରିବା ପରେ ପାଠକଟି ତାର ମତାମତ ଲେଖିବ ସେଠି, ଏଇଥି ପାଇଁ । ପାଠକକୁ ଏତେ ଗୁରୁତ୍ୱ ଓ ସମ୍ମାନ ବୋଧେ ଅନ୍ୟ କୌଣସି ଲେଖକ ଦେଇ ନାହାନ୍ତି, ଅନ୍ତତଃ ମୋ ଜାଣିବାରେ । ସେଇ ଖାଲିପୃଷ୍ଠାଟି ପାଇଁ ଏ ମତାମତ —*

୧୯୩୬ ମସିହାରେ ରାଜକିଶୋର ପଟ୍ଟନାୟକଙ୍କର ପ୍ରବେଶ ଘଟିଥିଲା ଓଡ଼ିଆ ସାହିତ୍ୟକୁ । ସେହିବର୍ଷ ତାଙ୍କର ପ୍ରଥମ ପୁସ୍ତକ 'ପିଞ୍ଜୁରୀ ପକ୍ଷୀ' ରଚିତ ହୋଇଥିଲା । ତା'ପରଠୁ ବହୁ ଗଳ୍ପ ଓ ଉପନ୍ୟାସ ରଚନା କରି ସେ ଓଡ଼ିଆ ସାହିତ୍ୟରେ ଜଣେ ଅଗ୍ରଗାମୀ କଥାକାର ରୂପେ ନିଜର ପରିଚୟ ସୃଷ୍ଟି କରିଥିଲେ । ୧୯୭୧ ମସିହା ବେଳକୁ ସମସାମୟିକ ବହୁ ଲେଖକ/ସମାଲୋଚକଙ୍କ ନିକଟରେ ରାଜୁବାବୁ ପରିଚିତ ହୋଇଥିଲେ ଜଣେ ବିବଦମାନ ବ୍ୟକ୍ତିତ୍ୱ ରୂପେ । କିନ୍ତୁ ଅସଲି ଗୁଣଗ୍ରାହୀମାନେ ତାଙ୍କୁ ଚିହ୍ନି ଥିଲେ ଗହୀର ମଝିରେ ଗୋଟିଏ ସିଧାସଳଖ ଏକୁଟିଆ ତାଳଗଛ ପରି ।

ହଁ, ୧୯୭୧ ବେଳକୁ ତାଙ୍କ ସାହିତ୍ୟିକ ଜୀବନର ପଇଁତିରିଶ ବର୍ଷ ପାର ହୋଇ ସାରିଥିଲା ଓ ଏଇ ଦୀର୍ଘଦିନର ଅନୁଭୂତି, ଅଭିଜ୍ଞତାକୁ ଭିତ୍ତିକରି ସେ ଲେଖିଥିଲେ 'ଲେଖକ ଓ ପାଠକ' ପୁସ୍ତକଟି । ଏଇଟି ତାଙ୍କର ପୂର୍ବ ରଚନା ପରି ଗଳ୍ପ କିମ୍ବା ଉପନ୍ୟାସ ନଥିଲା, କିନ୍ତୁ ପୁସ୍ତକଟିରେ ସ୍ଥାନପାଇଥିଲା ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କୁ ନେଇ ଗପ ପରି ପ୍ରତୀୟମାନ ହେଉଥିବା କିଛି ଅମ୍ଳ ମଧୁର ଘଟଣା, ଦୁର୍ଘଟଣା, ସମସ୍ୟା ଓ ତହିଁରୁ ଦିଶିଯାଉଥିବା ସମାଧାନର ବାଟ । 'ଲେଖକ ଓ ପାଠକ' ସମ୍ଭବତଃ ରାଜୁବାବୁଙ୍କ ଲିଖିତ ପ୍ରଥମ ସମାଲୋଚନା ପୁସ୍ତକ । ଏହାର ପ୍ରଥମ ଖଣ୍ଡ ପ୍ରକାଶ ପାଇଥିଲା ଏବଂ ପୁଣି କେତୋଟି ଭାଗ ପୁସ୍ତକ ଆକାରରେ ପ୍ରକାଶିତ ହେବାର ଯୋଜନା ରହିଥିଲା । ସେ ସ୍ୱପ୍ନ ଅବଶ୍ୟ ସଫଳ ହେଲା ନାହିଁ । କୌଣସି କାରଣରୁ ପ୍ରଥମ ଭାଗଟିର ପ୍ରକାଶରେ ହିଁ ସନ୍ତୁଷ୍ଟ ରହିବାକୁ ପଡ଼ିଲା ତାଙ୍କୁ ।

କିନ୍ତୁ ଏହି ପ୍ରଥମ ଭାଗଟି ହିଁ ଯେ, ୧୯୩୫ ମସିହାରୁ ୧୯୭୧ ମସିହା ପର୍ଯ୍ୟନ୍ତ

ଓଡ଼ିଆ ସାହିତ୍ୟରେ ଘଟି ଚାଲିଥିବା ଅନେକ ଅକୁହା କଥାର ଅନବଦ୍ୟ ଦଲିଲ୍, ବହୁ ବର୍ଷ ପରେ ପୁସ୍ତକଟି ପଢ଼ିଲେ ଯେ କେହି ବି ଆଜି ଅନୁଭବ କରିବ ।

ସେଯାବତ୍ ଆମ ସମାଲୋଚକମାନେ ଯାହା କହିନଥିଲେ, ତା' କହିବାକୁ ସାହସ କରିଥିଲେ ରାଜକିଶୋର ପଟ୍ଟନାୟକ । ସେ ନକହିଥିଲେ କଥାଗୁଡ଼ିକ ହୁଏତ ଅକୁହା ରହିଯାଇଥାନ୍ତା ଆଜିଯାଏ ।

କିନ୍ତୁ ଦୁର୍ଭାଗ୍ୟ, ଏହି ବହିଟିର ଯେପରି ଆଲୋଚନା ହେବା କଥା ତାହା ହେଲା ନାହିଁ । ତା'ର କାରଣ ବୋଧହୁଏ ଏଇଆ ଯେ, ଯେଉଁ ତଥାକଥିତ ପଣ୍ଡିତମାନେ ବହିମାନଙ୍କୁ ତଉଲ କରି ଲେଖକଙ୍କୁ ବଡ଼ କରି ଦେଖାଇଦେବାର ବେସରକାରୀ ଠିକା ନେଇ ଆସିଛନ୍ତି ଆମ ସାହିତ୍ୟ ଜଗତରେ, ସେଇ ଠିକାଦାରମାନଙ୍କ ପ୍ରତି ବି ଏ ବହିଟିରେ ଥିଲା ଶାଣିତ ବ୍ୟଙ୍ଗ ଓ ଉଷ୍ମ ଚେତାବନୀ । ତେଲ-ତେଲୀର ଦୁନିଆରେ ରାଜକିଶୋରଙ୍କ ବହିଟି ପିଲିଆ ପରି କଣକୁ ପଡ଼ି ରହିଲା । ଓଡ଼ିଆ ସମାଲୋଚନାର ଗଡ଼ଗଳିକାରେ କିନ୍ତୁ 'ଲେଖକ ଓ ପାଠକ' ବହିଟି ଯେ ଏକ ବିରଳ ବ୍ୟତିକ୍ରମ – ତାହା ଇତିହାସ ସମ୍ମତ ।

ବହିଟି ଲେଖିବା ଉଦ୍ଦେଶ୍ୟ ସମ୍ପର୍କରେ ସେ କହିଥିଲେ (ଲେଖିଥିଲେ) 'ଏହି ବହିଟିରେ ଲେଖକ ହିସାବରେ ପାଠକଙ୍କ କଥା ଓ ପାଠକ ହିସାବରେ ଲେଖକଙ୍କ କଥା ଯାହା ବୁଝିଲି ସେତିକି ଲେଖିଛି ।......ଓଡ଼ିଆରେ ଯେଉଁ ସମାଲୋଚନା ବା ଆଲୋଚନା ପ୍ରକାଶ ପାଉଛି, ସେଗୁଡ଼ିକ କଲେଜ ପାଠ୍ୟ ନିର୍ଘଣ୍ଟର ପଞ୍ଜିପୂରକ । ତେଣୁ ସେଥିରେ ଆଧୁନିକ ଓ ଜୀବିତ ଲେଖକମାନଙ୍କର ସ୍ଥାନ ରହୁନାହିଁ । ଯିଏ ଯାହା ଲେଖୁଛନ୍ତି ସେଥିରେ କେବଳ ନାମର ତାଲିକା ଦେବା ଛଡ଼ା ଭଲ କିମ୍ବା ଖରାପ କୌଣସି ମତ ଦେଉନାହାନ୍ତି । ତେଣୁ ସମସ୍ତଙ୍କୁ ସମସ୍ତ ବିଷୟରେ ଜନସମକ୍ଷରେ ସ୍ପଷ୍ଟ ମତାମତ ପ୍ରକାଶ ପାଇଁ ପ୍ରରୋଚିତ କରିବା ଉଦ୍ଦେଶ୍ୟରେ ଓଡ଼ିଆ ଆଲୋଚନାର ପ୍ରଚଳିତ ଧାରାର ବ୍ୟତିକ୍ରମ କରି ଏହି ପୁସ୍ତକଟି ଲେଖାଯାଇଛି (ମୋର କହିବାର କଥା)'

ତାଙ୍କର ଏହି ଉଦ୍ୟମରେ ଆମ ସମାଲୋଚକମାନେ କେତେଦୂର ପ୍ରରୋଚିତ ହୋଇଛନ୍ତି, ତାହା '୭୧ ପରବର୍ତ୍ତୀ ଓଡ଼ିଆ ସମାଲୋଚନାର ପାଠକମାନେ କହିବେ । କିନ୍ତୁ ଏହି ପ୍ରକାର ସ୍ପଷ୍ଟ ଓ ନିର୍ଭୀକ ମତାମତ ସମ୍ପନ୍ନ ରଚନା ଦ୍ୱାରା, ରାଜକିଶୋର ଯେ ବହୁ ବନ୍ଧୁଙ୍କର କ୍ରୋଧ ଅର୍ଜନ କରି ନିଜ ଜୀବନକୁ ଅଧିକ ନିଃସଙ୍ଗ କରିଦେଇଥିଲେ, ଏଥିରେ ମତଦ୍ୱୈତ ନାହିଁ ।



କେହି ତାଙ୍କର ବ୍ୟକ୍ତିଗତ ଶତ୍ରୁ ନଥିଲେ । କିନ୍ତୁ ପିତା ଲାଗୁଥିବା ସତରେ ବଟିକା ଖାଇବା ପାଇଁ ଅନେକ ରୋଗୀଙ୍କର ପ୍ରବୃତ୍ତି ବା ସ୍ପୃହା ନଥିଲା ।

'ଲେଖକ ଓ ପାଠକ' ସମ୍ପୂର୍ଣ୍ଣ ମୁକ୍ତ ଶୈଳୀରେ ଲିଖିତ ଏକ ଅନ୍ତରଙ୍ଗ ଦଲିଲ୍ । ଏଥିରେ କୌଣସି ନିର୍ଦ୍ଦିଷ୍ଟ ବହି, ନିର୍ଦ୍ଦିଷ୍ଟ ଲେଖକଙ୍କୁ ନେଇ ଅଧ୍ୟାୟଧର୍ମୀ ପ୍ରବନ୍ଧ ନାହିଁ । ବିଭିନ୍ନ ପ୍ରସଙ୍ଗକୁ ନିଜ ଅନୁଭୂତିରୁ ଆଣିବାକୁ ଯାଇ, ପ୍ରସଙ୍ଗକ୍ରମେ ଯେଉଁ ଅନୁଷ୍ଠାନ ବା ବ୍ୟକ୍ତି ଆସି ପହଞ୍ଚିଛନ୍ତି, ସେମାନଙ୍କ ଯୋଗ୍ୟତା ଅନୁଯାୟୀ ଲେଖକ ତାଙ୍କୁ ଫୁଲଚନ୍ଦନରେ ସଜାଇଛନ୍ତି ବା ତାଙ୍କର ଖୋଳପାଟିକୁ ଉତାରି ଦେଇ ଛିଡ଼ା କରାଇ ଦେଇଛନ୍ତି କଡ଼ପଟିଆ କରି । ଅନ୍ୟଭାଷାରେ କହିଲେ, ଯିଏ ରାଜକିଶୋରଙ୍କ ପାଖକୁ ଆସିଛନ୍ତି ନିଜ ଗୁଣଗ୍ରାମ ନେଇ ସେ ସେହି ଭାବରେ ଛିଡ଼ା ହୋଇଛନ୍ତି ତାଙ୍କ ନିକଟରେ ।

ଉଦ୍ଦେଶ୍ୟମୂଳକ ଭାବେ କାହାକୁ ହୀନ କରିବା ବା ମହାନ କରିବାର ଲକ୍ଷ୍ୟ ନେଇ 'ଲେଖକ ଓ ପାଠକ' ଲେଖା ଯାଇନି । ବରଂ କେବଳ ସାହିତ୍ୟ, ନିରୋଳା ସାହିତ୍ୟ ହିଁ ଏ ବହିର ହିରୋ । ଆଉମାନେ (ସାହିତ୍ୟିକ, ସଂଗଠକ, ସମସ୍ୟା ଇତ୍ୟାଦି) ସବୁ କାହାଣୀ ଅନୁସାରୀ ପାତ୍ରପାତ୍ରୀ ।

ଏଥିରେ ମଧୁର ମିଥ୍ୟାର ଆଟୋପ ନାହିଁ କି ନାହିଁ ଛଳନାର ଛବିଳ ଛଟକ ।

ସବୁ କଥା ଢୋସ୍‌ରେ କୁହାଯାଇଛି ରାଜକିଶୋରୀୟ ଶୈଳୀରେ । ତେବେ ସବୁଠୁ ବଡ଼ କଥା ହେଲା ତାଙ୍କର କଥା କହିବାର ବ୍ୟକ୍ତିତ୍ୱଟି ଏଠିବି କ୍ରମକୁ ଛାଡ଼ିନି । ତେଣୁ ପାଠ୍ୟକ୍ରମ ଉପଯୋଗୀ ସମାଲୋଚନା ପରି ଏହା ଜଟିଳ ଓ ଶୁଷ୍କ ନ ହୋଇ ହୋଇଛି ରସାଳ ଓ ବର୍ଣ୍ଣାଢ୍ୟ ।

କିନ୍ତୁ ଯେଉଁ ଗୁଣଟି ପାଇଁ ଏହି ବହିଟିର ଏକ ସ୍ୱତନ୍ତ୍ର ପରିଚୟ ରହିଛି ତାହା ହେଉଛି ଏଥିର ଲେଖକୀୟ ନିର୍ଭୀକତା ଓ ସାହିତ୍ୟିକ ମମତା ।

ଯେ ସାହିତ୍ୟକୁ ଭଲ ପାଇବ, ସିଏ ସତ୍ୟକୁ ହିଁ ଭଲପାଇବ ଓ ସତ୍ୟକୁ ଭଲପାଉଥିବା ବ୍ୟକ୍ତି ନିର୍ଭୀକ ହିଁ ହେବ । ରାଜକିଶୋରଙ୍କ ସମାଲୋଚକୀୟ ଅନ୍ତର୍ଦୃଷ୍ଟି ତାହାହିଁ କରିଛି ।

ସୁଧୀ ପାଠକଙ୍କ ଅବଗତି ନିମନ୍ତେ (ଅବଗତ ଥିଲେ ମନେ ପକାଇଦେବା ନିମନ୍ତେ) ଏଠାରେ କେତୋଟି ଉଦାହରଣ ଦିଆଯାଉଛି –

'ଆଜି ଯେଉଁ ସଭାକୁ ଯାଅ – ମନ୍ତ୍ରୀ କହିବେ । ମନ୍ତ୍ରୀ କହିସାରିଲା ପରେ ତା'ରି

ସାରାଂଶ ଯେ ସାରବାନ, ଏଥିରେ କାହାର ଦ୍ୱିମତ ହେବ ? କିନ୍ତୁ ଏହି ସୁବିଧା ଯଦି ସାହିତ୍ୟର ସରସତା ଅବା ସମାଲୋଚନା ଓ ସମୀକ୍ଷାର ଉତ୍କର୍ଷତା ଜାଣିବାର ଉପାୟ ହୋଇପାରେ, ତେବେ ଆମେ କାହିଁକି ଭୁଲ୍ କରିବା ପୁରୁଣା କଥାବେଳେ ! ଅର୍ଥାତ୍ ସରକାରୀ ଚାକିରିରେ ନଲାଗିଲେ ସାହିତ୍ୟ ଯେପରି ଉଡ଼ିପାରୁନଥିଲା, ସେହିପରି ରାଜନୀତିର ବଳ ନଲାଗିଲେ ସାହିତ୍ୟ କିପରି ଉଠିବ ? ସାହିତ୍ୟ ଏଡ଼େ ମଜାଦାର ଜିନିଷ ଯେ ଗରିବ ଓ ନିକମାଙ୍କୁ ଆଶ୍ରୟ କରି ଏହିଠି ଉଠିପାରେ ନାହିଁ । ପ୍ରକୃତରେ ଭାଡ଼ି ରଞ୍ଜା ନମିଳିଲେ ଲଟା ଫଳ ଫଳାଇବାକୁ ଅରାଜି ହେଲାପରି ବଡ଼ ପାହ୍ୟା ନଥିଲେ, ସାହିତ୍ୟର ସଫଳତା ଖୋଜିବା ନିଷ୍ଫଳ ପ୍ରୟାସ । (ପୃଷ୍ଠ : ୪୦)' XXXX

'ପଦ୍ମଶ୍ରୀ ସଚ୍ଚିଦାନନ୍ଦ ତାଙ୍କର ପଲ୍ଲୀପ୍ରୀତି ପାଇଁ ଚାଳିଶିରୁ ପଇଁଚାଳିଶି ମସିହାରେ ଓଡ଼ିଆ ସାହିତ୍ୟରେ ଚମକୁଥିଲେ । ଡକ୍ଟର କୁଞ୍ଜବିହାରୀ ଦାଶ ତାଙ୍କର ସାଧନାକୁ ପଲ୍ଲୀପ୍ରଚଳିତ ସାହିତ୍ୟ ଉପରେ ଟେକାଇ ରଖିଲେ । ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର ପଲ୍ଲୀ ସାହିତ୍ୟ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ତଥ୍ୟ ଦେଇଗଲେ । କିନ୍ତୁ ଏମାନଙ୍କ ମଧ୍ୟରେ ପଲ୍ଲୀଜୀବୀ କିଏ ? ଏମାନଙ୍କୁ ଆଜି ଦେଖିଲେ, କିଏ କ'ଣ କହିପାରିବ ଯେ, ଏହି ବିଶେଷ ଜ୍ଞାନୀ ପଣ୍ଡିତମାନେ ପ୍ରକୃତରେ ପଲ୍ଲୀର ମୋହରେ ଅଛନ୍ତି । ତାଙ୍କୁ ଯଦି କେହି ଅଖ୍ୟାତ ପଲ୍ଲୀରେ ଚାରିମାସ ରଖିଦିଏ, ତେବେ ସେମାନେ ବୋଧହୁଏ ଏହାକୁ ଜବରଦସ୍ତ ଅଟକବାସ ବୋଲି ଗୁହାରୀ କରିବେ ନ୍ୟାୟାଳୟରେ ।

ଏଥିରୁ ଜଣାପଡୁଛି ଯେ, ଓଡ଼ିଆ ସାହିତ୍ୟ ଅନ୍ୟାନ୍ୟ ସାହିତ୍ୟପରି ବିଶେଷ ଶଠତା ଓ ପ୍ରବଞ୍ଚନାମୂଳକ । (ପୃଷ୍ଠା : ୧୪୧) XXXX

'ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ବାର୍ଷିକ ଓଡ଼ିଆ ଗଳ୍ପ ବିଭାଗରେ ଦୁଇଟି ଗଳ୍ପ ଥିଲା । ଗୋଟିଏ ହେଲା ଅଧ୍ୟାପକ ରାଜକିଶୋର ରାୟଙ୍କ 'କଳିଙ୍ଗ ଶିଳ୍ପୀ' ଓ ଆରଟି ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ 'ଘାସଫୁଲ' ।

ଏହି ଉଭୟ ଗଳ୍ପ ଲେଖିବା ବେଳେ ଲେଖକ ଦୁହିଁଙ୍କର ବୟସ ୨୨/୨୧ । ଆଉ ସେମାନେ ତଟକା କଲେଜ ଛାତ୍ରଥାଆନ୍ତି । ଲେଖା ସମୟ ଅଠତିରିଶ ମସିହା ।

ସେହି ସମୟର ଲେଖା ଅଠଚାଳିଶ ମସିହାରେ ପାଠ୍ୟକ୍ରମକୁ ଗଲା । ଆଉଚାଲିଲା କେଜାଣି କେତେଦିନ — ବୋଧହୁଏ ଆଜିଯାଏ ।

ଇଯେ କ'ଣ ସାହିତ୍ୟ ତତ୍ତ୍ୱ ? ଏହି ପ୍ରକାରର ନିର୍ବାଚନ କ'ଣ ପାଠକଙ୍କର ପଢ଼ାର



ନମୁନା ? ପିଲା ପଢ଼ି ମାଷ୍ଟ୍ର ହୋଇ ଯାହାକୁ ପଢ଼ାଇଲେ, ସେହି ପିଲା ବି ମାଷ୍ଟ୍ର ହୋଇ କଲେଜର ଶ୍ରେଣୀମାନଙ୍କରେ ତୁମ୍ଭିତୋଫାନ କରୁଛି କାହିଁକି ? ଆଉ କ'ଣ ଲେଖକ ନାହାନ୍ତି ? ନା ଲେଖା ହୋଇନାହିଁ ? ଏଇ ସବୁ ଲେଖା କ'ଣ ଅମର ? ନାଁ ଅମର ଲେଖନୀ ପ୍ରସୂତ ? (ପୃଷ୍ଠା ; ୧୫୩)'

ବହିଟିର ପ୍ରତିଟି ପୃଷ୍ଠାରେ ଏହିପରି ରାଜକିଶୋରୀୟ ସ୍ୱଷ୍ଟ ଉଚ୍ଚାରଣରେ ଉତ୍ତରିତ ।



କେବଳ ଅନ୍ୟକୁ ନୁହେଁ, ନିଜକୁ ବି ଦେଖିପାରୁଥିଲେ ସେ । ଭଲକୁ ଓ ମନ୍ଦକୁ । ଏଇ ତ ତା'ର ପ୍ରମାଣ । 'ଟ୍ରଲାବାଟରେ' ସେହିପରି ଆଉଗୋଟିଏ ବହି ଲେଖିବାକୁ ଚାଲେଞ୍ଜ କରିଥିବା ରାଜକିଶୋର ପୁଣି ନିଜେ ନିଜର ଗଳ୍ପ 'ଘାସ' ଏତେ ଦିନ ଧରି ପାଠ୍ୟକ୍ରମରେ ସ୍ଥାନ ପାଇଥିବାରୁ ବିଦ୍ରୋହ ଉଠାଇଛନ୍ତି । ଏପରି ନିରପେକ୍ଷତା କ'ଣ ପାଠକେ ବେଶ୍ କିଛି ଥର ଦେଖିବାର ସୁଯୋଗ ପାଇଛନ୍ତି ଆମ ସମାଲୋଚନା ସାହିତ୍ୟରେ ?

ଏଇଥିପାଇଁ ଏ ବହିଟି ଅନନ୍ୟ । କଥାବସ୍ତୁ ପାଇଁ, ବର୍ଣ୍ଣନାରେ ଛଳନାହୀନତା ପାଇଁଓ ମଧୁର କଟାକ୍ଷ ପାଇଁ ।

'ଘାସଫୁଲ',

ତୁଣ୍ଡୀ, ତେରତାଙ୍ଗ,

ଜଗତସିଂହପୁର, ୭୫୪୧୦୮ ।

# ସାମ୍ବାଦିକ ରାଜକିଶୋର

ଅନୁପମା ମହାପାତ୍ର

ସାମ୍ବାଦିକତାକୁ ରାଷ୍ଟ୍ରର ଚତୁର୍ଥ ଶକ୍ତିରୂପେ ବିବେଚନା କରାଯାଏ । ବିଧାନ ପ୍ରଣୟନ, କାର୍ଯ୍ୟକାରୀ ଏବଂ ନ୍ୟାୟ ବିଚାର ସହିତ ସ୍ୱାଧୀନ ଏବଂ ସ୍ୱଚ୍ଛନ୍ଦ ମତପ୍ରକାଶର ଧାରାକୁ ଅବ୍ୟାହତ ରଖିବା ପାଇଁ ସାମ୍ବାଦିକତା ରାଷ୍ଟ୍ରର ଅନୁକମ୍ପାରେ ଏକ ସାମାଜିକ ବ୍ୟବସ୍ଥା । ପ୍ରୟୋଗ ବିଜ୍ଞାନ ସେବିତ ଆଧୁନିକ ବିଶ୍ୱରେ ସମ୍ବାଦପତ୍ର ଏକ ବ୍ୟୟସାପେକ୍ଷ ଶିଳ୍ପରେ ପରିଣତ ହୋଇ ଯାଇଛି । ତେଣୁ ଧନପତି ନ ହେଲେ ସମ୍ବାଦପତ୍ର ସଂସ୍ଥାର ପ୍ରତିଷ୍ଠା ଓ ପ୍ରସାର ସମ୍ଭବ ନୁହେଁ ।

ଆଧୁନିକ ଲୋକମତ ଗଠନରେ ଏକ ଅପରିହାର୍ଯ୍ୟ ସଂସ୍ଥାରୂପେ ସାମ୍ବାଦିକତାକୁ ସମ୍ମାନ କରୁଥିବା ବିଲାତରେ ମଧ୍ୟ ଏହି ବ୍ୟବସ୍ଥା । ତେଣୁ ବିଲାତର ଅନୁକରଣରେ ତତ୍କାଳୀନ ଭାରତ ଅର୍ଥାତ୍ କଲିକତାରେ ଆରମ୍ଭ ହୋଇଥିବା ସାମ୍ବାଦିକତାର ଇତିହାସ ଆହୁରି କରୁଣ । କମ୍ପାନୀ ଶାସନର ପରିଚାଳକମାନଙ୍କୁ ବ୍ୟଙ୍ଗ କରି ଏଣ୍ଟାଗ୍ଲା ହିକି ଦଣ୍ଡିତ ହୋଇଥିଲେ । ୧୮୩୩ ଯାଏ ବିଲାତି-ବେପାରୀଙ୍କ ସହଯୋଗିତାରେ ସୃଷ୍ଟି ହୋଇଥିବା ନୂତନ ଧନପତିମାନେ ୧୮୩୩ ପରେ ଏଦେଶରେ 'ନୂତନ-ଆଧୁନିକତା' (new-modenism)ର ପ୍ରଚଳନ ପାଇଁ ସାମ୍ବାଦିକତାର ପୃଷ୍ଠପୋଷକତା କଲେ ।

ଧନ-ସଂଗ୍ରହର ଲୋଭ ଏତେ ଉତ୍କଟ ମାତ୍ରାରେ ଏହି ନୂତନ ଧନପତିମାନଙ୍କୁ ଆକ୍ରାନ୍ତ କରିଥିଲା ଯେ, ସେମାନେ ଗତାଏ ଶିକ୍ଷିତ ଲୋକଙ୍କୁ ଦରମା ଦେଇ ସମ୍ବାଦପତ୍ରର ସ୍ତମ୍ଭ ପୂରଣ କରିବାକୁ ରଖିଲେ । ଏହି ଦରମା ସର୍ବସ୍ୱ କର୍ମଚାରୀମାନେ ସାମ୍ବାଦିକଙ୍କର ଗର୍ବରେ ଯେତେ ଫାଟି ପଡ଼ନ୍ତୁ ପଛକେ ତାଙ୍କ ଅନ୍ତର କୌଣସି ଉପଯୋଗିତା ନାହିଁ । ସ୍ୱାଧୀନ ଚିନ୍ତା ପ୍ରକାଶର ଦୁଃସାହସିକତା ପାଇଁ ତାଙ୍କର ମାଧ୍ୟମ ମଧ୍ୟ ନାହିଁ । ଅସାମାଜିକ ଲୋକଙ୍କୁ ମହାତ୍ମା ପ୍ରମାଣ କରିବାକୁ ଯାଇ ସେମାନେ ଗ୍ରାସାଚ୍ଛାଦନର କୁଟାପଖା ସିନା ଯୋଗାଡ଼ କରିପାରିଲେ; କିନ୍ତୁ ସ୍ୱାଧୀନ ଚିନ୍ତାର ବାର୍ତ୍ତାବହ ହୋଇ ପାରିଲେ ନାହିଁ । ମାଲିକର ସ୍ୱାର୍ଥ ଏବଂ ଶ୍ରେଣୀସ୍ୱାର୍ଥକୁ ରକ୍ଷା କରିବା ପାଇଁ ସେମାନେ ଦେଶର ସମୂହ-ସ୍ୱାର୍ଥକୁ ବିରୋଧ କରିବା ପାଇଁ ପଶ୍ଚାତ୍‌ପଦ ମଧ୍ୟ ନୁହଁନ୍ତି ।

ସ୍ୱାଧୀନ ଭାରତରେ ଏହି ଲୋଭ ସର୍ବସ୍ୱତାର ମାତ୍ରା ସାମ୍ବାଦିକତାକୁ ଆହୁରି ସାଙ୍ଘାତିକ ଭାବରେ ଗ୍ରାସ କରିଛି । ସମାଜରେ ପ୍ରତିଷ୍ଠିତ ଧନପତିଙ୍କ ଦ୍ୱାରା ପରିଚାଳିତ ସମ୍ବାଦପତ୍ର



ସରକାରୀ ଅନୁକମ୍ପା ପାଇଁ ବ୍ୟଗ୍ର । ସରକାରୀ ବିଜ୍ଞାପନ ନ ମିଳିଲେ, ସମ୍ବାଦପତ୍ରର ଆୟୁଷ ସୀମିତ ହୋଇଯାଏ । ନିଜର ସ୍ଥିତି ପାଇଁ ସରକାରୀଙ୍କ ଉପରେ ନିର୍ଭରଶୀଳ ହେଲେ ସରକାରୀ ନୀତିର ନିରପେକ୍ଷ ସମାଲୋଚନାର ସାମର୍ଥ୍ୟ ହରାଇବାକୁ ପଡ଼ିଥାଏ । କେବଳ ବ୍ୟକ୍ତିବିଶେଷଙ୍କ କୁତ୍ସା ଓ ଚରିତ୍ର ସଂହାର କରି ଏହି ସମ୍ବାଦପତ୍ରମାନେ କିଛି ଉତ୍ତେଜନା ସୃଷ୍ଟି କରିଥାନ୍ତି । ଗଣଭୋଟରେ ପରିଚାଳିତ ସ୍ୱାଧୀନ ଭାରତରେ ଏକ ନୂତନ ସମ୍ବାଦପତ୍ର ପରିଚାଳକ ଗୋଷ୍ଠିର ଆବିର୍ଭାବ ଘଟିଛି । ଏହି ପରିଚାଳକମାନେ ରାଜନୀତିକ ନେତା । ବିଭିନ୍ନ ଉପାୟରେ ଅର୍ଥ ସଂଗ୍ରହ କରି ନିଜର ଏବଂ ନିଜ ଗୋଷ୍ଠିର ମହିମା ପ୍ରଚାର କରାଇବା ପାଇଁ ସେମାନେ ସମ୍ବାଦପତ୍ର ପ୍ରକାଶ କରିଥାନ୍ତି । ଏହା ଫଳରେ ବାସ୍ତବ ସମ୍ବାଦ ବିକୃତ ଭାବରେ ପରିଲକ୍ଷିତ ହୁଏ । ସମ୍ବାଦପତ୍ର କର୍ମଚାରୀ-ସାମ୍ବାଦିକମାନେ ନେତାଙ୍କର ରାଜନୀତିକ ଅନୁଗାମୀ ହିସାବରେ ନିଜକୁ ବିଚାର କରି ନେତାଙ୍କର ଜୟଧ୍ୱନୀ ଦେବା ସଙ୍ଗେ ସଙ୍ଗେ ନେତାଙ୍କ ପ୍ରତିଆଶୀଙ୍କୁ ହକ୍ ଭାଙ୍ଗି ବେଶ୍ ଦି ପଇସା ରୋଜଗାର କରି ପାରନ୍ତି । ସେମାନେଙ୍କ ଶିକ୍ଷା ଦୀକ୍ଷା ସହିତ ଏହି ଅହଙ୍କାରକୁ ସମତୁଲ କଲେ ମନରେ କ୍ଷୋଭ ଆସେ । କିନ୍ତୁ ସାଧାରଣ ମଣିଷ ପ୍ରଚାରର ଏହି ସଙ୍ଗଠିତ ସଂସ୍ଥାର ଅବିଚାର ବିରୁଦ୍ଧରେ କ'ଣ ବା କରିପାରିବ ?

ଦେଶର ପ୍ରତି ସାଧାରଣ ଅନୁଷ୍ଠାନରେ ଏହି କ୍ରୀତଦାସ-ସାମ୍ବାଦିକମାନେ ପଙ୍ଗପାଳ ପରି ପଶି ଯାଇଛନ୍ତି । ସେମାନଙ୍କ ପାଇଁ ଅନୁଷ୍ଠାନର ପରିଚାଳକଙ୍କୁ ଚର୍ବ୍ୟ-ଚୋଷ୍ୟ-ଲେହ-ପେୟର ବ୍ୟବସ୍ଥା କରିବାକୁ ହେବ । ସେମାନଙ୍କୁ ଉପସ୍ଥିତ ଜନତାକୁ ଉଦ୍‌ବୋଧନ ଦେବାର ସୁଯୋଗ ଦେବାକୁ ହେବ । ସେମାନଙ୍କୁ ସଭାରେ ପ୍ରଥମ-ଧାଡ଼ି ଛାଡ଼ି ଦେବାକୁ ହେବ । ନ ହେଲେ ପରିଚାଳକଙ୍କ ବିରୁଦ୍ଧରେ ସଙ୍ଗଠିତ ଅପପ୍ରଚାର ଚଳାଇ ସେମାନେ ତଥାପି ସେମାନଙ୍କର ବୈଚିତ୍ର୍ୟ ପ୍ରମାଣ କରିବାକୁ ଚେଷ୍ଟା କରିବେ । ଅବଶ୍ୟ ନିର୍ଦ୍ଦିଷ୍ଟ ବିଷୟରେ ଅଧିକାରୀ-ସାମ୍ବାଦିକଙ୍କ କଥା ସ୍ୱତନ୍ତ୍ର; କିନ୍ତୁ ଅଧିକାର ନ ଥାଇ ପ୍ରଚାର କରିବାର ସୁବିଧାଜନକ ଶାସନର ଥିବା ଅଶିକ୍ଷିତ ଅଳ୍ପ ଶିକ୍ଷିତ ସାମ୍ବାଦିକଙ୍କ କଥା କୁହାଯାଉଛି । ସେମାନେ ତ ସାମ୍ବାଦିକ ଶ୍ରେଣୀରେ ସଂଖ୍ୟା ଗରିଷ୍ଠ ।

ତେଣୁ କେତେକ ଚିନ୍ତକ ମତପ୍ରକାଶ କରନ୍ତି ଯେ, ସମ୍ବାଦ ପ୍ରସାର ପାଇଁ ବରଂ ସରକାର ସାମ୍ବାଦିକତାକୁ ଜାତୀୟକରଣ କରି ଦିଅନ୍ତୁ । କିନ୍ତୁ ବିଜ୍ଞାପନ ଏବଂ ରାଜନୈତିକ ଚାନ୍ଦାଦ୍ୱାରା ପରିପୁଷ୍ଟ କରି ସାମ୍ବାଦିକତାକୁ ମୁଷ୍ଟିମେୟ ସ୍ୱାର୍ଥସର୍ବସ୍ୱ ପୁଞ୍ଜିପତି, ପ୍ରତିକ୍ରିୟାଶୀଳ ଜନତା ଏବଂ ଅର୍ଦ୍ଧଶିକ୍ଷିତ ଅନୁବାଦ ସର୍ବସ୍ୱ ସାମ୍ବାଦିକମାନଙ୍କର ଏକ ମଠରେ ପରିଣତ କରିବାକୁ ସୁଯୋଗ ଦିଅନ୍ତୁ ନାହିଁ । ଏହାଦ୍ୱାରା ସ୍ୱାଧୀନ ମତକୁ ସଙ୍ଗଠିତ ଉପାୟରେ ବିକୃତ

କରି କେତେକ ମେରୁଦଣ୍ଡହୀନ ମଣିଷନାମଧାରୀ ଜୀବଙ୍କୁ ସାମାଜିକ ପ୍ରତିଷ୍ଠା ଲୁଣ୍ଠନ କରି ଦେଶର ବିପର୍ଯ୍ୟୟ ବିନିମୟରେ ଧନପତି ହେବାର ସୁଯୋଗ ମାତ୍ର ପାଉଛନ୍ତି ।

ସ୍ୱାଧୀନ ଚିନ୍ତାର ମୌଳିକତା ଏବଂ ପ୍ରଖରତା ଜନମତକୁ ଆକର୍ଷଣ କରିବା ତ ସ୍ୱପ୍ନ; ବରଂ ସହଜିଆ ନାମକୀର୍ତ୍ତନଦ୍ୱାରା କ୍ଷଣକୁକ୍ଷଣ ମତ ବଦଳାଇ କେତେକ ଭଡ଼ାଟିଆ ରାଷ୍ଟ୍ରୀୟ ସମ୍ମାନ, ସମ୍ମାନ ସୂଚକ ଡକ୍ଟରେଟ୍, ଉପାଧି ଯୋଗାଡ଼ କରିବା ସଙ୍ଗେ ସଙ୍ଗେ ଆଶତୀତ ଅର୍ଥ ସଂଗ୍ରହ କରି ସାମାଜିକ ପ୍ରତିଷ୍ଠା କ୍ରୟ କରି ପାରୁଛନ୍ତି । ନିରାହାରରେ ଏକାଦଶୀ କରୁଛନ୍ତି ବୋଲି ପ୍ରଚାର କରି ଭିତରେ ଭିତରେ ଲୁଚାଇ ଛପାଇ ଚୁଡ଼ା ଖାଉଛନ୍ତି । ଏଣେ ପ୍ରତିଷ୍ଠିତ ନୀତିବାଦୀ ସାଧକବର୍ଗଙ୍କୁ ବ୍ୟଙ୍ଗ, ଅଟ୍ଟହାସ୍ୟ କରିବାରେ ଏଇ ଅର୍ଥସର୍ବସ୍ୱ ବ୍ୟକ୍ତିମାନଙ୍କର ଦୁଃସାହସର ପଟାନ୍ତର ନାହିଁ ।

ଏହିପରି ଦୁଃସହ ଅବସ୍ଥା ଭିତରେ ଓଡ଼ିଶାର ସାମ୍ବାଦିକତାର ପରିବେଶ ଆହୁରି ମାରାତ୍ମକ । ଏଠାରେ ଗୋଷ୍ଠିଗତ ପ୍ରଚାର ସର୍ବସ୍ୱତାକୁ ସାମ୍ବାଦିକତା ବୋଲି ଧରି ନିଆଯାଇଛି । ଅଶୀ ବର୍ଷ ପାର ହୋଇଗଲେ ମଧ୍ୟ ଏଠି ସମ୍ପାଦକ ରାଜ୍ୟପାଳମାନଙ୍କର ଭଜନ ଜଣାଣ କରି ସ୍କୋଉଟ୍, କୃଷିଶ୍ରେଣୀ, ରିଲିଫ୍ ଇତ୍ୟାଦି ଦେଶସେବା ମୂଳକ ବ୍ୟବସାୟରୁ ବେଶ୍ ଦି' ପଇସା ଲାଭ କରି ସେଇ ଅର୍ଥ ବିନିମୟରେ ବ୍ୟୟସାଧ ନିର୍ବାଚନ ଜିଣି ଜନ-ପ୍ରତିନିଧି ମଧ୍ୟ ହୋଇ ପାରିବାର ଦୃଷ୍ଟାନ୍ତ ରହିଛି । ଯେ କୌଣସି ଧର୍ମଗୁରୁଙ୍କ ସହିତ ଫଟୋଚିତ୍ର ପ୍ରକାଶ କରି ଏହି ଦୁର୍ନୀତିଗ୍ରସ୍ତ ମଲାଙ୍ଗମାନେ ମଧ ନବଯୁବକମାନଙ୍କୁ ନୀତିଗର୍ଭକ ଉଦ୍‌ବୋଧନ ଦେଇ ପାରୁଛନ୍ତି । ଆଚରଣ ଓ ଭାଷଣର ଏହି ବିକୃତି ଓଡ଼ିଶାର ସାମ୍ବାଦିକ-ଜଗତକୁ ଏହପରି କଳୁଷିତ କରିଚି ଯେ, ଯଦି ସରକାର ସାମ୍ବାଦିକତାକୁ ଜାତୀୟକରଣ କରି ଲୋକ ସମ୍ପର୍କ ବିଭାଗ ଦ୍ୱାରା ସମ୍ବାଦପତ୍ର ପ୍ରକାଶ କରନ୍ତେ, ତେବେ ଜନ-ସାଧାରଣ ହୁଏତ ଅବିକୃତ ସମ୍ବାଦ ପାଇପାରନ୍ତେ ।

ଏହି ପରିବେଶ ଭିତରେ ଉଚ୍ଚଶିକ୍ଷିତ, ସ୍ୱାଧୀନଜୀବୀ ଏବଂ ରାଜନୀତି ସଚେତନ ରାଜକିଶୋର ପଟ୍ଟନାୟକଙ୍କ ସାମ୍ବାଦିକତା ବିଚାର କରିବାକୁ ହେବ । ପ୍ରଚଳିତ ଚଳଣିରେ ତାଙ୍କୁ ହୁଏତ ସାମ୍ବାଦିକ ଶ୍ରେଣୀଭୁକ୍ତ ବାବୁମାନେ ସାମ୍ବାଦିକ ବୋଲି ସ୍ୱୀକାର କରି ନ ପାରନ୍ତି; କିନ୍ତୁ ଯେଉଁ କେତେକ ସାମ୍ବାଦିକ ଗୁଣଧର୍ମୀ ସାମ୍ବାଦିକତା ପାଇଁ ପରବର୍ତ୍ତୀ କାଳରେ ଓଡ଼ିଶାରେ ପ୍ରାତଃ ସ୍ମରଣୀୟ ହେବେ; ସାମ୍ବାଦିକ ରାଜକିଶୋର ସେମାନଙ୍କ ମଧ୍ୟରେ ଅନ୍ୟତମ । ଏହି ଶତାବ୍ଦୀରେ ପଞ୍ଚମ ଦଶକରେ ତାଙ୍କ ସଂପାଦିତ ଇଂରାଜୀ ସାପ୍ତାହିକ 'Scrutiny' କଥା ବିଚାର କରାଯାଉ । ସ୍ୱାଧୀନ ନିରପେକ୍ଷ ବିଚାର ସହିତ ଭିନ୍ନମତକୁ ଯଥୋଚିତ ସମ୍ମାନ ଦେବାର ଛାତି କେବଳ ରାଜକିଶୋରଙ୍କ ଅଛି ।



'Scrutiny'ର ଦ୍ୱିତୀୟ ପର୍ଯ୍ୟାୟ ଏକ ରାଜନୀତିକ ଦଳର ମୁଖପତ୍ର । ଦଳୀୟ ଚିନ୍ତାଧାରାର ପ୍ରସାର ପାଇଁ ବୁଦ୍ଧିବାଦୀ ଦୃଷ୍ଟିକୋଣରୁ ବିଭିନ୍ନ ବିଚାର ପ୍ରକାଶ ପାଇଲେ ମଧ୍ୟ ଭିନ୍ନ ମତର ପ୍ରକାଶ ପାଇଁ ଏହି ସମ୍ବାଦପତ୍ରରେ ଅବକାଶ ଥିଲା । ସେଥିପାଇଁ ଏହି ସମ୍ବାଦପତ୍ର କେବେ ସରକାରୀ ବିଜ୍ଞାପନ ପାଇଁ ଆଶା କରି ନାହାନ୍ତି ।

୧୯୭୧ ମସିହା ଭାରତୀୟ ରାଜନୀତରେ ଘୋର ଝଞ୍ଜାଳର ସମୟ । ଏହି ସମୟରେ ଭାରତରେ ୫ମ ଲୋକ ସଭା ପାଇଁ ସାଧାରଣ ନିର୍ବାଚନ ହୋଇଥିଲା । ସାମ୍ବାଦିକ ରାଜକିଶୋର ଏକ ସମୟରେ 'ପାଠଚକ୍ର' ଦୈନିକ, 'ଆମର ଆଇନ୍' ସାପ୍ତାହିକ ଏବଂ "CUTTACK LAW NOTES' ସାପ୍ତାହିକ ପ୍ରକାଶ କଲେ । ଦୈନିକ 'ପାଠଚକ୍ର'ର ଆୟତନ କ୍ଷୁଦ୍ର ହେଲେ ମଧ୍ୟ ସ୍ୱାଧୀନ ବିଚାରର ଦୁଃସାହସ ଏବଂ ଶୈଳୀ ଏଂ ଦୈନିକ ସମ୍ବାଦପତ୍ରକୁ ଓଡ଼ିଶାର ସାମ୍ବାଦିକତାର ଇତିହାସରେ ଏକ ଉଜ୍ଜ୍ୱଳ କୀର୍ତ୍ତି ହିସାବରେ ଚିରସ୍ମରଣୀୟ କରିବ । ଦଳୀୟ ରାଜନୀତିରେ ଅମଲାତନ୍ତ୍ରର ଭିତିରି କାରବାର ବିଷୟ ସ୍ପଷ୍ଟ ଭାବରେ 'ଆମର ଆଇନ୍' ଓ 'CUTTACK LAW NOTES' ପ୍ରକାଶ କରି ସାମ୍ବାଦିକ ରାଜକିଶୋର ସ୍ୱାଧୀନ ସାମ୍ବାଦିକତାର ସ୍ୱରୂପ ବିଷୟରେ ଓଡ଼ିଶାର ଜନସାଧାରଣଙ୍କ ଆଖି ଖୋଲି ଦେଇଛନ୍ତି । ଅମଲାତନ୍ତ୍ରର ଖାତିରି କରି ସାମ୍ବାଦିକତା କେବେ ରାଷ୍ଟ୍ରର ଚତୁର୍ଥ ଶକ୍ତି ହୋଇପାରିବ ନାହିଁ ଏବଂ ଦଳୀୟ ରାଜନୀତି ସାମ୍ବାଦିକତାର ମୁଖ୍ୟ ଆଭିମୁଖ୍ୟ ହେବା ଉଚିତ୍ ନୁହେଁ ।

ବହୁ କ୍ଷେତ୍ରରେ ଦକ୍ଷ ସାଧକ ରାଜକିଶୋର ସାମ୍ବାଦିକତାକୁ ହୁଏତ ବୃତ୍ତି କରି ପାରିନାହାନ୍ତି କିନ୍ତୁ ଏକକ ଚେଷ୍ଟାରେ ସେ ଯଦି ସ୍ୱାଧୀନ ଚିନ୍ତାର ସ୍ୱରୂପ ପ୍ରକାଶ କରି ପାରିଲେ ତେବେ ସାମ୍ବାଦିକତାକୁ ବୃତ୍ତି କରି ଚଳୁଥିବା ଲୋକେ କାହିଁକି ସଙ୍ଗତ ଉପାୟରେ ସ୍ୱାଧୀନ ନିରପେକ୍ଷ ଚିନ୍ତା କରିପାରିବେ ନାହିଁ । ତାହା କରିପାରିଲେ ନାହିଁ ଏବଂ ରାଷ୍ଟ୍ର-ଦତ୍ତ ସୁଯୋଗର ଅପବ୍ୟବହାର କଲେ ବୋଲି ବାଧ୍ୟ ହୋଇ ଭାରତ ସରକାର ସାମ୍ବାଦିକତାକୁ ସଂଯତ କରିବା ପାଇଁ ଅଧ୍ୟାଦେଶ ଜାରୀ କଲେ । ସ୍ୱାଧୀନତାମାନେ ତ ସ୍ୱେଚ୍ଛାଚାର ନୁହେଁ । ରାଜକିଶୋରଙ୍କ ପରି ପଣ୍ଡିତ ଏବଂ ଦୃଢ଼ଚେତା ବ୍ୟକ୍ତି ସାମ୍ବାଦିକତା କରୁଥିଲେ ଏବଂ ଦେଶର ସମୂହ ସ୍ୱାର୍ଥ ପ୍ରତି ଅନୁରକ୍ତ ଥିଲେ ସରକାରୀ ଅଧ୍ୟାଦେଶର ଆବଶ୍ୟକତା ହୁଏତ ପଡ଼ି ନ ଥାନ୍ତା । ସେ ଦୃଷ୍ଟିରୁ ରାଜକିଶୋର ଓଡ଼ିଶାର ସର୍ବଶ୍ରେଷ୍ଠ ସାମ୍ବାଦିକ ଏବଂ ସମ୍ପାଦକ ।







# ସାରସ୍ୱତ-ତପସ୍ୱୀ

**ପଠାଣି ପଟ୍ଟନାୟକ**

ମହାକାଳ କୋଳରେ ଔପନ୍ୟାସିକ, ଗାଳ୍ପିକ, ସମ୍ପାଦକ ଓ ଆଇନଜୀବୀ ରାଜକିଶୋର ନିଶ୍ଚିନ୍ତରେ ଶୋଇ ଯାଇଛନ୍ତି । ଏହି ଜଞ୍ଜାଳ ଓ ଛଳନାପୂର୍ଣ୍ଣ ସଂସାରକୁ ସେ ଆଉ ଫେରି ଆସିବେ ନାହିଁ । ସେ ଏଣିକି ପାଠକ ଓ ବନ୍ଧୁ ମହଲରେ ସ୍ମୃତି ହୋଇ ରହିଯିବେ । ଦୀର୍ଘକାଳ ଯାବତ ରସିକ ପାଠକ ସଂସାରକୁ ସେ ରାଶି ରାଶି ଗଳ୍ପ ଓ ଉପନ୍ୟାସ ପରିବେଷଣ କରିଗଲେ । ତାଙ୍କର କଳ୍ପନାର ଚରିତ୍ରମାନଙ୍କ ସହିତ ପାଠକ ଆତ୍ମୀୟ ହୋଇ ଉଠିଲା, କୁଟୁମ୍ବିତା କରି ବସିଲା । କିନ୍ତୁ କେତେ ଜଣ ପାଠକ ଲେଖକର ଯନ୍ତ୍ରଣାକୁ ଅନୁଭବ କଲେ ? ତା'ର ସାଧନାର ଇତିହାସରେ ଅନୁପ୍ରାଣିତ ହେଲେ ? କେହି କ'ଣ ଲେଖକର ମନ ଗହୀର କଥା ବୁଝିବା ପାଇଁ ଆଗ୍ରହୀ ହୁଏ ? ଚଳପ୍ରଚଳ ସଂସାରୀ ଭାବରେ ରାଜକିଶୋର ଥିଲେ ଅନେକ ସମୟରେ ସ୍ପଷ୍ଟବାକ୍ ଏବଂ ଅତ୍ୟନ୍ତ ଶାଣିତ ଥିଲା ତାଙ୍କର ବଚନଭଙ୍ଗୀ । ଏହି ନିର୍ମମ ବଚନିକାର ଅନ୍ତରାଳରେ ରସିକ ରାଜକିଶୋର ଅନ୍ତଃସଲୀଳା ଫଲ୍ଗୁ ପରି ସର୍ବଦା ପ୍ରବାହିତ ହେଉଥିଲେ । ସେ ପ୍ରତ୍ୟକ୍ଷ୍ୟରେ ଯାହା ଦିଶୁଥିଲେ, ତାଙ୍କର ମାର୍ମିକ ଅଭିବ୍ୟକ୍ତି ତାହା ଆଦୌ ନଥିଲା । ମନେହୁଏ, ବହୁ ଲୋକଙ୍କ ପାଖରେ ସେ ଅନ୍ତିମଜୀବନ ପର୍ଯ୍ୟନ୍ତ ଅବୁଝା ଓ ଅବୋଧ ବ୍ୟକ୍ତିତ୍ୱଟିଏ ହୋଇ ରହିଗଲେ ।

ନାନା କାରଣରୁ ରାଜକିଶୋର ଥିଲେ ଅତ୍ୟନ୍ତ ଅଭିମାନୀ ପୁରୁଷ । ଅଭିଜାତ ଓ ଶିକ୍ଷିତ ସମାଜ ବିରୁଦ୍ଧରେ ତାଙ୍କର ଥିଲା ଭୟଙ୍କର ଅଭିଯୋଗ । ଆଜୀବନ ସେ ଅବହେଳିତ ହୋଇ ତାଙ୍କର ଲେଖକୀୟ ଏବଂ କର୍ମଜୀବୀ ଜୀବନରେ ଉପଯୁକ୍ତ ସ୍ୱୀକୃତି ପାଇପାରିଲେ ନାହିଁ ବୋଲି ବୋଧହୁଏ ଅଭିଶୋଷ କରୁଥିଲେ । ଏ ସବୁ ସତ୍ତ୍ୱେ ସାହିତ୍ୟ ସାଧକମାନଙ୍କ ପ୍ରତି ତାଙ୍କର ଥିଲା ଅପାର ସମ୍ମାନ ଓ ସହାନୁଭୂତି "ସଞ୍ଜବତୀ" ଉପନ୍ୟାସ ୧୯୫୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକରେ "ମୋ କହିବାର କଥା" ରେ ରାଜକିଶୋରଙ୍କର ଅଭିମତ ଥିଲା । ଏହିପରି—"ଅଠର ବର୍ଷ ତଳେ ଓଡ଼ିଆ ସାହିତ୍ୟରେ ସାହିତ୍ୟିକ ତାଲିକାରେ ନାମ ଲେଖାଇଥିଲି । ସେ'ଦିନ ଯେଉଁମାନେ ଜନ୍ମ ହୋଇଥିଲେ, ଆଜି ରାମରାଜ୍ୟର କୃପାରେ ସେମାନେ ସାହିତ୍ୟିକ ଖ୍ୟାତି, ପ୍ରସିଦ୍ଧି ଓ ଅର୍ଥରେ ମୋଠାରୁ ଉପରକୁ ଯାଇଛନ୍ତି । ସେମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି । ଆଶା କରେ ମୋର ଜୀବଦ୍ଦଶାରେ ଆଜି ଜନ୍ମ ହେଉଥିବା ବଂଶଧରମାନେ ସେହିପରି ଆଗେଇ ଯିବେ ।



ଅଠର ବର୍ଷ ତଳେ ଯେଉଁମାନେ ଓଡ଼ିଶା ପରି ଅନୁର୍ବର ଦେଶରେ କିରାନୀ ହେଇ ନିଜର ଭବିଷ୍ୟତର ସୀମାରେଖା ଆଙ୍କୁ ଥିଲେ ସେମାନେ ଆଜି ରାମରାଜ୍ୟ କୃପାରୁ ଦେଶର ସବୁଠାରୁ ଉଚ୍ଚ ସ୍ତରରେ । ସେମାନଙ୍କର ଦୟାରୁ ଆଜି ସାହିତ୍ୟିକ ଅସାହିତ୍ୟିକର ମାନଦଣ୍ଡରେ ଓଜନ ହେଉଛି ।

ଓଡ଼ିଶା ଶାଖା, 'ଅଲ୍ ଇଣ୍ଡିଆ ରେଡ଼ିଓ' ର ସାହିତ୍ୟିକ ତାଲିକାରୁ ନାମ କଟି ଯାଇଛି । ଶିକ୍ଷା ବିଭାଗ, ଗ୍ରାମମଙ୍ଗଳ ବିଭାଗ, ପ୍ରଚାର ବିଭାଗ ଆଦି ଓଡ଼ିଶା ସରକାରଙ୍କ ବିଭିନ୍ନ ବିଭାଗରେ ସାହିତ୍ୟିକର ତାଲିକାରୁ ନାମ କଟି ଯାଇଛି । ଉଚ୍ଚକୋଟୀର ସାହିତ୍ୟିକମାନେ ସାହିତ୍ୟିକଙ୍କ ତାଲିକା କଲାବେଳେ ଏହି ନାମ ଲେଖିବାକୁ ଭୁଲିଯାଉଛନ୍ତି ।

ତେଣୁ ମନରେ ଭାରି ଉତ୍ସାହ ଓ ଆନନ୍ଦ ଯେ ଓଡ଼ିଶାର ଓଡ଼ିଆମାନେ ବହୁତ ଉନ୍ନତି କରିଛନ୍ତି । ରାମରାଜ୍ୟର ପ୍ରଜାମାନେ ଭୂଇଁ ଛାଡ଼ି ଗଛ ଶିଖରକୁ ଚାଲିଯାଇଛନ୍ତି । ଜୟହିନ୍ଦ୍ ।''

ରାଜକିଶୋରଙ୍କର ପେଶା ଥିଲା ଆଇନ ବ୍ୟବସାୟ । ମାତ୍ର ନିଶା ଥିଲା ସାହିତ୍ୟ ଚାଷ । ଜୀବନ ସଂଗ୍ରାମର ଉତ୍କଟ ପରିବେଶ ମଧ୍ୟରେ ରାସାଳ ଲେଖକୀୟ ଜୀବନ ନିରସ ଗଦ୍ୟମୟ ହୋଇ ଉଠୁଥିଲା । ଥରେ ଜଣେ କବି ଲେଖିଥିଲେ—'ଦରିଦ୍ର କବିରେ ସଂସାର ପୀଡ଼େ । କବିତାକୁ ବେଳ କାହିଁ ଏ ଭିଡ଼େ ।'' ରାଜକିଶୋର ''ଅଷ୍ଟମୀଚାନ୍ଦ'' ''ଉପନ୍ୟାସଟି ନାଟ୍ୟକାର ରାମାରଞ୍ଜନ ମହାନ୍ତିଙ୍କୁ ଉତ୍ସର୍ଗ କରି ୧୦-୧୦-୧୯୬୪ ତାରିଖରେ ଲେଖିଥିଲେ—''ଦିନ ମଜୁରିଆ ଶ୍ରେଣୀର ଓକିଲାତି ଜୀବନରେ ସୌଖିକ ସାହିତ୍ୟିକର କରୁଣସ୍ୱର୍ଶ ମରିଗଲା । ସେହି ଜୀବିକାବାହୀ ଜୀବନର ଅହେତୁକ ସନ୍ଦେହ ଓ ଅଯୌକ୍ତିକ । ବିଷଣ୍ଣତା ମଧ୍ୟରେ ସାଧାରଣ ଦୃଷ୍ଟିକୋଣ ମଧ୍ୟ ବିଭଙ୍ଗ ହୋଇ ବସା ବାନ୍ଧିଲା ।''

ସେହି ଉପନ୍ୟାସରେ 'ମୋର କହିବାର କଥା' ପ୍ରସଙ୍ଗରେ ଲେଖକୀୟ ବ୍ୟଥାକୁ ରାଜିକିଶୋର ପ୍ରକାଶ କରିଥିଲେ ଏହିପରି—'ଅହଙ୍କାର ଓ ଅହମିକା ନାନା କାରଣରୁ ବିଧେୟ, ବାଞ୍ଛନୀୟ ଓ କରଣୀୟ ନୁହେଁ । ପ୍ରଜାତନ୍ତ୍ର ପ୍ରଚାର ସମିତି'ରେ ଲେଖା ବିଷୟରେ ଆସ୍ଫାଳନ କରି ଦୀର୍ଘ ପାଞ୍ଚବର୍ଷ ମଧ୍ୟରେ ଧାଡ଼ିଏ ବି ଲେଖିପାରିନାହିଁ ।

ପୃଥିବୀର ଶକ୍ତିଶାଳୀ ସାହିତ୍ୟ-ସାଧକଗଣ ଏକାଧାରରେ ଉଚ୍ଚକୋଟୀର ସ୍ରଷ୍ଟା ଏବଂ ପ୍ରଭାବଶାଳୀ ସମାଲୋଚକ । ନିଜ ସୃଷ୍ଟି ଶିଳ୍ପର ମୁଖବନ୍ଧ ରୂପେ ବହୁ ଲେଖକ ନାନାଭାବରେ ନିଜ ରଚିତ ପୁସ୍ତକ ସମ୍ବନ୍ଧରେ ବୈଜ୍ଞାନିକ ଅନୁଶୀଳନ କରି ଥାଆନ୍ତି । ରାଜକିଶୋର ଯଦିଓ ସେହିପରି ପାଣ୍ଡିତ୍ୟପୂର୍ଣ୍ଣ ମୌଳିକ ଅନୁଶୀଳନ ଆମକୁ ଦେଇ ଯାଇନାହାନ୍ତି, ତଥାପି

ତାଙ୍କର ଲେଖକୀୟ ସୂଚନାରେ ଗଭୀର ଆତ୍ମବିଶ୍ୱାସ ଓ ତିର୍ଯ୍ୟକ ବିଚାର-ଆଲୋଚନାର ପରିଚୟ ମିଳିଥାଏ ।

୮-୪-୧୯୫୫ ତାରିଖରେ ଶ୍ରମତୀ ତୃପ୍ତି ଦେବୀଙ୍କୁ 'ପ୍ରେମିକର ଡାଏରୀ' ଉପନ୍ୟାସ ଉତ୍ସର୍ଗ କରି ରାଜକିଶୋର ଲେଖିଥିଲେ—''ପ୍ରେମିକର ଡାଏରୀ'' ଗୋଟିଏ ମିଛ କଥା । ତଥାପି ବହୁତ ଲୋକ ଏହାକୁ ସତ କଥା ବୋଲି ଭାବିବେ । XXXX ବହି ହିସାବରେ ଏହି 'ପ୍ରେମିକର ଡାଏରୀ' ବହୁତ ଦିନ ବଞ୍ଚିବ; ଆଉ ଅନେକ ଲୋକଙ୍କୁ ଭଲ ଓ ଖରାପ ବାଟରେ ଚଳାଇବ । ସେଥିପାଇଁ ମୋର ଇଛା ଯେ, ମୂର୍ଖ ଅପରିପକ୍ୱ ଓ ଅନଭିଜ୍ଞ ଲୋକେ ଏହାକୁ ନ ପଢ଼ନ୍ତୁ । କେତେକ ଲୋକ ଏହାର ପାଣ୍ଡୁଲିପି ପଢ଼ି କହିଛନ୍ତି ଯେ, ଏ ବହି ଭାରି ନୀରସ ଓ କ୍ଳାନ୍ତିକର ହୋଇଛି । ହୋଇଥିବ, କାରଣ ଏହାକୁ ଲେଖିବାକୁ ମୋତେ ପୂରା ପାଞ୍ଚବର୍ଷ ଲାଗିଲା ।

ବାସ୍ତବିକ ରାଜକିଶୋରଙ୍କ ଥିଲେ ଜଣେ ଖାଣ୍ଟି ସାହିତ୍ୟ ସାଧକ କୌଣସି ଉପଢ଼ୌକନ ଓ ତଥାକଥିତ ଆନୁଷ୍ଠାନିକ ସ୍ୱୀକୃତି ତାଙ୍କ ପାଇଁ ଥିଲା ଏକପ୍ରକାର ପ୍ରହସନ । ରାତି ପାହିଲା ବେଳକୁ ସେ ସାହିତ୍ୟକର ମୁକୁଟ ପିନ୍ଧି ପାରିବେ ବୋଲି କେବେହେଲେ ସ୍ୱପ୍ନ ଦେଖି ନଥିଲେ । ଖଣ୍ଡିଏ ଉପନ୍ୟାସ ଲେଖିବା ପାଇଁ ତାଙ୍କ ବର୍ଷାଧିକ କାଳ କଲମଚାଷ କରିବାକୁ ପଡୁଥିଲା । ଗୋଟିଏ ଲେଖାର ନିର୍ଦ୍ଦିଷ୍ଟ ମାନ ରକ୍ଷିବା ପାଇଁ ସେ ବାରମ୍ବାର ଲେଖୁଥିଲେ ଏବଂ ସଂଶୋଧନ କରୁଥିଲେ । ଅନ୍ୟର ମତ ଓ ପ୍ରତିକ୍ରିୟା ପ୍ରତି ତାଙ୍କର ଆନ୍ତରିକ ସମ୍ମାନ ରହିଥିବାର ଜଣାଯାଏ । 'ସଂଜବତୀ' ଉପନ୍ୟାସର ପ୍ରାରମ୍ଭରେ ଗୋଟିଏ ଲେଖାରୁ ଏହାର ପ୍ରମାଣ ମିଳିଥାଇବ । ସେ ଲେଖିଥିଲେ—'ଏହି ବହିଟି ତିନିଥର ଲେଖା ହୋଇଛି । ଶ୍ରଦ୍ଧେୟ ବନ୍ଧୁ ଶ୍ରୀଯୁକ୍ତ ବିଶ୍ୱନାଥ ମହାପାତ୍ରଙ୍କ ପରାମର୍ଶରେ ଥରେ ଲେଖିଥିଲି । ସେଇଟା ନ' ମାସ ତଳେ ମୋ ନିଜ ଭାଷାରେ ଛାପା ହେବା ପରେ କବି ଓ ଗଳ୍ପ ଲେଖକ ଶ୍ରୀଯୁକ୍ତ ଦାଶରଥି ଦାସ ଏହା ଭଲ ହୋଇନାହିଁ କହିବାରୁ ତାଙ୍କ ନିର୍ଦ୍ଦେଶରେ ଏହାକୁ ଆଉଥରେ ରଙ୍ଗ ଦେଲି ।''

ଆଜିର ଅହଂମନ୍ୟ ଯୁଗରେ ଏପରି ଲେଖକୀୟ ନମ୍ରତା ଓ ଉଦାର ଭାବନା ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଚିନ୍ତା ରାଜ୍ୟରେ ରାଜକିଶୋର ଧରାବନ୍ଧା ଚିନ୍ତାର ଅର୍ଗଳି ମଧ୍ୟରେ ବନ୍ଦୀ ହୋଇ ନଥିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଚିନ୍ତା ଓ ଚେତନାରେ ପରିବର୍ତ୍ତନ ଆସିବା ସ୍ୱାଭାବିକ । ସମାଜର ଅନୁବୀକ୍ଷଣ ମଧ୍ୟ ସେହି ଅନୁସାରେ ପରିବର୍ତ୍ତନଶୀଳ । ତେଣୁ ରାଜକିଶୋରଙ୍କ ଉପନ୍ୟାସର ଚରିତ୍ରମାନେ ରୂପ ପରବର୍ତ୍ତନ କରନ୍ତୁ, ଏହା ଥିଲା ପ୍ରବୀଣ ଲେଖକଙ୍କର



ଅଭିଳାଷ । ସେହି କାରଣରୁ ତରୁଣ ଆଖିରେ ଦେଖିଥିବା 'ସିନ୍ଦୂରଗାର'ର ଚରିତ୍ରମାନେ ପ୍ରବୀଣ ଲେଖକର ଲେଖନୀରେ ନୂତନ ରୂପରେ ପ୍ରତିଭାତ ହୋଇଛନ୍ତି । ଏହି ପ୍ରକାର ପ୍ରଚେଷ୍ଟା ସାହିତ୍ୟରାଜ୍ୟରେ ମଧ୍ୟ ଅଭିନବ ମନେ ହୋଇଥାଏ । 'ସିନ୍ଦୂରଗାର' ଉପନ୍ୟାସରେ ୧-୧୦-୧୯୫୯ ସାଲରେ 'ମୋର କହିବାର କଥା' ଶୀର୍ଷକରେ ଲେଖକ ଲେଖିଥିଲେ— ''ବାଇଶବର୍ଷ ତଳେ ଯେଉଁ 'ସିନ୍ଦୂରଗାର' ଲେଖି ମୋର ଲେଖକ ଜୀବନର ପ୍ରଥମ ଅର୍ଘ୍ୟ ଓଡ଼ିଆ ସାହିତ୍ୟକୁ ଦେଇଥିଲି.....ଏହି ପରିବର୍ଦ୍ଧିତ ଓ ପରିବର୍ତ୍ତିତ । 'ସିନ୍ଦୂରଗାର' ପୁଣି ଥରେ ମୋର ଲେଖକ ଜୀବନର ଦ୍ୱିତୀୟ ପର୍ଯ୍ୟାୟରେ ଦେଖା ଦେଇଛି । ସେହି ଅଧ୍ୟାୟରେ ଏଇଟି ଦ୍ୱିତୀୟ ପୁସ୍ତକ—'କଜ୍ଜଳଗାର' ପରେ ।

ମୋର ପରିଚିତ ଓ ପ୍ରିୟ ପାଠକମାନଙ୍କୁ ସନିର୍ବନ୍ଧ ଅନୁରୋଧ ଯେ ସେମାନେ ଦୟାକରି ଏହା ସହିତ ପରିଚୟ କରିବେ ।

ଏକୋଇଶି ବର୍ଷ ବୟସରେ ଯୁବକର ଉତ୍ସାହ ଥିଲା । ଆଜି ତେୟାଳିଶ ବର୍ଷରେ ପ୍ରୌଢ଼ର ନିଷ୍କ୍ରିୟତା ଆସିଲାଣି । ସେହିପରି ''ସିନ୍ଦୂରଗାର'' ଚରିତ୍ର ଓ ପଟ୍ଟଭୂମି ସମସ୍ତେ ବାଇଶି ବର୍ଷ ବଢ଼ି ଯାଇଛନ୍ତି...ପୁରୁଣା ହୋଇଛନ୍ତି ।''

ରାଜକିଶୋର ଥିଲେ ପ୍ରତିଭାର ପୂଜାରୀ । ଶ୍ରଦ୍ଧାହୀନ, ସଙ୍ଗତିହୀନ, ଆନୁଗତହୀନ ଓଡ଼ିଆ ସମାଜରେ ଅକାଳରେ ସ୍ୱତିଭାସମ୍ପନ୍ନ ବ୍ୟକ୍ତିତ୍ୱ ମଉଳି ଯାଆନ୍ତି ଅଥବା ବିସ୍ମୃତିର କରାଳ ଗହ୍ୱରରେ ଅବସ୍ଥାନ କରନ୍ତି । 'ନିର୍ଣ୍ଣାଣଖଣ୍ଡ' ଗଳ୍ପ ସଂକଳନ ରାଜକିଶୋର ସ୍ୱନାମଧନ୍ୟ ପଣ୍ଡିତ ଡଃ କରୁଣାକର କରଙ୍କୁ ଉତ୍ସର୍ଗ କରିଥିଲେ । କାରଣ ଯେଉଁ ସମୟରେ ବଙ୍ଗଳା ପଢ଼ି ନ ଜାଣିଲେ ଉଚ୍ଚ ସଂସ୍କୃତ ବ୍ୟାକରଣ ପାଠ କରିବା ସମ୍ଭବ ହେଉ ନଥିଲା, ସେହି ଅଭାବ ଦୂର କରିବାପାଇଁ ଡଃ କରୁଣାକର ଲେଖିଥିଲେ, 'ସଂସ୍କୃତ ରଚନା ଓ ଅନୁବାଦ ଶିକ୍ଷା' । ଗଭୀର କୃତଜ୍ଞତା ଶ୍ରଦ୍ଧା ନିବେଦନ ପାଇଁ ବାଳକ ରାଜକିଶୋର ସହପାଠୀ ବନ୍ଧୁମାନଙ୍କ ସହିତ ପୁରୀ ଯାଇଥିଲେ ଡଃ କରୁଣାକର କରଙ୍କ ନିକଟକୁ । ଉତ୍ସର୍ଗପତ୍ରରେ ଜୁନ ମାସ ୧୯୫୧ ସାଲରେ ଲେଖକ ଲେଖିଥିଲେ—ସେତେବେଳ ବଙ୍ଗଳା ଭାଷାର ପ୍ରାଧାନ୍ୟ ରହିଥାଏ । ସଂସ୍କୃତ ରଚନା ପାଇଁ ଶାସ୍ତ୍ରୀ ମହାଶୟଙ୍କର ବଙ୍ଗଳା ବହି ପଢ଼ିବାପାଇଁ ହେଉଥିବା ଅସୁବିଧା ଆପଣ ଦୂର କରିଥିବାରୁ ଆମ ସ୍କୁଲରୁ ଚାରିଜଣ ପିଲା ପୁରୀ ସଂସ୍କୃତ କଲେଜକୁ ଆପଣଙ୍କୁ ଦେଖିବାକୁ ଯାଇଥିଲୁ ସେଇଟା ଅତି ପୁରୁଣା କଥା ।''

ଜାତୀୟବୀରମାନଙ୍କୁ ଉପଯୁକ୍ତ ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରିବା ହେଉଛି ଉତ୍ତରାଧିକାରୀମାନଙ୍କର ପରମକର୍ତ୍ତବ୍ୟ । ପୂଜ୍ୟପୂଜାର ବ୍ୟତିକ୍ରମ ହେଲେ ପ୍ରଗତି ପରାହତ ହୁଏ । ସାଂସ୍କୃତିକ ମୂଲ୍ୟବୋଧ ଅବକ୍ଷୟ ମଧ୍ୟରେ ଭ୍ରଷ୍ଟ ହୋଇଯାଏ । ପୂଜ୍ୟପୂଜାର ବ୍ୟତିକ୍ରମ

ଦେଖି ରାଜକିଶୋର ବିଚଳିତ ହୋଇଛନ୍ତି । ଯେଉଁମାନଙ୍କର ସାଧନା ଓ ତ୍ୟାଗ ଫଳରେ ସାମାଜିକ ଜୀବନ ସମୃଦ୍ଧ ହୋଇଥିଲା, ସେମାନଙ୍କୁ ସ୍ମରଣ କରିବା ପରିବର୍ତ୍ତେ ନ୍ୟସ୍ତସ୍ୱାର୍ଥସେବୀ ନେତୃବୃନ୍ଦ ସେମାନଙ୍କୁ ନିନ୍ଦିତ କରିବା ପାଇଁ କୁଣ୍ଠିତ ହୋଇ ନାହାନ୍ତି । ଏହିପରି ଜଣେ ଅବହେଳିତ ଜାତୀୟନେତା ଥିଲେ ଗୋଦାବରୀଶ ମିଶ୍ର । ସେମାନଙ୍କର ନିଃସ୍ୱାର୍ଥପର ଜନସେବାର ପଟାନ୍ତର ନାହିଁ । ଦେଶର କଲ୍ୟାଣ ପାଇଁ ସେମାନେ ସ୍ୱେଚ୍ଛାକୃତ ଭାବରେ ବହୁ ଦୁଃଖ ଓ ଦାରିଦ୍ର୍ୟ ବରଣ କରିଥିଲେ । ସ୍ୱାଧୀନତା ପରେ ସୁବିଧାବାଦୀ ନେତୃବୃନ୍ଦ ସେମାନଙ୍କୁ ତୁଠ ପଥର ପରି ଅବହେଳା କରିବାକୁ, ଲାଗିଲେ । ଦୁଃଖରେ ଅଭିଭୂତ ରାଜକିଶୋର ୩୦-୬-୧୯୪୮ ମସିହାରେ 'ତୁଠପଥର' ଗଳ୍ପ ପୁସ୍ତକକୁ ପୂଣାତ୍ମା ଗୋଦାବରୀଶ ମିଶ୍ରଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଲେଖିଥିଲେ—

ଗାଧୁଆ ତୁଠରେ ଅଧା ପାଣି ଓ ଅଧା ଶୁଖିଲାରେ ହୋଇ ଯେଉଁ ଚଉରସିଆ ପଥର ଖଣ୍ଡଟିମାନ ସମସ୍ତଙ୍କର ଗୋଡ଼ଘସା ପାଇଁ ପଡ଼ିରହିଥାଏ ସେଇଟି ସଂସାରର ଗୋଟିଏ ଇଙ୍ଗିତପୂର୍ଣ୍ଣ ନିଶାଣ । କାରଣ ସଂସାରର ଅସଂଖ୍ୟ ନରନାରୀ କର୍ମବୀରମାନଙ୍କୁ ତୁଠ-ପଥର ପରି ବ୍ୟବହାର କରି ଗୋଇଠା ଦେଇ ହସି ହସି ଚାଲିଯାଆନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ଓଡ଼ିଆ-ଜାତି-ପ୍ରାଣ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ଆଜି ଓଡ଼ିଆ ଜାତି ସେହି ତୁଠ-ପଥରର ପୂଜା ଦେବାକୁ ଆରମ୍ଭ କରିଛି । ତାଙ୍କର ଅସାମାନ୍ୟ ପ୍ରତିଭାର ପୂଜାନୈବେଦ୍ୟ ରୂପେ ଏହି 'ତୁଠ-ପଥର' ପୁସ୍ତିକାଟି ଭକ୍ତି ସହିତ ଉତ୍ସର୍ଗ କଲି ।

ସାଧାରଣ ପାଠକକୁଳ ଲେଖକ ବିଷୟରେ ଜାଣିବା ପାଇଁ ବିଶେଷ ଆଗ୍ରହୀ ହୁଅନ୍ତି ନାହିଁ । ଯାହାଙ୍କର ରସାଳ ଲେଖା ପାଠକ ସଂସାରକୁ ମନକୁ ଆପ୍ଲୁତ କରି ରଖିଥାଏ, ତାଙ୍କର ଜୀବନର ଆଭିମୁଖ୍ୟ ସଂପର୍କରେ ନ ଜାଣିଲେ ତାଙ୍କର ଲେଖାଗୁଡ଼ିକର ଉପଯୁକ୍ତ ଅନୁବୀକ୍ଷଣ ହୋଇ ପାରିବ ନାହିଁ ଫଳରେ ଲେଖକଙ୍କ ଗଳ୍ପ-ଉପନ୍ୟାସର ଚରିତ୍ର ସଂସାର ପ୍ରତି ସହାନୁଭୂତି ଓ ଦରଦୀ ଭାବନାର ଅଭାବ ରହିଯିବ ।

ଓଡ଼ିଆ ସାହିତ୍ୟର ଜଣେ ଶକ୍ତିଶାଳୀ କଥାକାର ରାଜକିଶୋରଙ୍କର କଳ୍ପନାବିଳାସ ଯେଉଁପରି ରେଖାପାତ ଧର୍ମୀ, ତାଙ୍କର ସାରସ୍ୱତ-ବ୍ୟକ୍ତିତ୍ୱ ଓ ତପସ୍ୟା ମଧ୍ୟ ସେହିପରି ପ୍ରଭାବଶାଳୀ ।

କେନ୍ଦୁଝର କଲୋନୀ,
କନିକାଛକ, କଟକ-୮





# ରାଜା ନୁହଁନ୍ତି କିଶୋର

## ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

ଜୀବନ ନାଟକର ଶେଷ ଦୃଶ୍ୟରେ ସେ ପାଇଲେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସ୍ୱୀକୃତି ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର । ସେତେବେଳକୁ ସେ ଚଳତ୍ ଶକ୍ତିକ୍ଷମ ନ ଥିବାରୁ ଏକ ବିଶେଷ ଉତ୍ସବରେ ତାଙ୍କ ଘରେ ସାହିତ୍ୟ ଏକାଡ଼େମୀର ସଭାପତି, ସଂପାଦକ ଓ ଆଉ କେତେ ଜଣ ବ୍ୟକ୍ତିଙ୍କ ଉପସ୍ଥିତିରେ ପୁରସ୍କାର ବାବଦ ଟଙ୍କା ଦେଇ ପଟ ଉଠାଇଲେ । ତା'ର କେଇଟା ଦିନ ପରେ ଆଖି ବୁଜିଲେ ସାହିତ୍ୟିକ ରାଜକିଶୋର ପଟ୍ଟନାୟକ । ଚିକିତ୍ସା ପାଇଁ ଔଷଧ କିଣା ବାବଦ ଧାର ଟଙ୍କା ଶୁଝେଟ୍ ହେଲା ଏ ପୁରସ୍କାର ଟଙ୍କାରେ । ଖବରକାଗଜରେ ଏହି ପ୍ରକାର ଦୟନୀୟ ବିବରଣୀ ବାହାରିଲା । ଲୋକେ କୁହାକୁହି ହେଲେ ପୁରସ୍କାର ପ୍ରାପ୍ତିର ଗୌରବ ଲାଭର ଦିନ କେଇଟାରେ ସେ ସବୁକିଛି ତ୍ୟାଗ କରି ଚାଲିଗଲେ । ଏ ଗୌରବ, ଏ ସମ୍ମାନକୁ ତ ସାରା ଜୀବନ ତୁଚ୍ଛ କରିଥିଲେ । ଆମେ ତାଙ୍କୁ ଯେବେ କୌଣସି ସମ୍ବର୍ଦ୍ଧନା ସଭାକୁ ଡାକୁ ସେ ବିରକ୍ତ ହୁଅନ୍ତି । ବଳେଇ କହିବାକୁ ଭରସି ପାରୁନା । ଏ ଅଭିମାନୀ ମଣିଷଟି ଆମ ପାଖରେ ସବୁଦିନେ ଅବୁଝା । ଏକବାଗିଆ ।

ସ୍ୱାଭିମାନ ତାଙ୍କର ଥିଲା ବହୁତ । ଛୋଟିଆ ବଢ଼େଇ ପିଲାର ଯୋଉ ଅଭିମାନିଆ କଥା—ସେ ଲେଖିଥିଲେ ତାଙ୍କ 'ଘାସ' ଗପରେ, ସବୁରି ଗୋଡ଼ତଳର ଘାସ ହୋଇଥିବା ସମାଜର ନହୁଁ ନିଗଡ଼ା ମଣିଷର କଥା ତାଙ୍କ ଦରଦୀ ପ୍ରାଣକୁ କେମିତି ସ୍ପର୍ଶ କରିଥିଲା । ତାର ସନ୍ଧାନ ଥିଲା ସେଥିରେ । ଆଇ.ଏ. ଶ୍ରେଣୀରେ ପଢ଼ିଲା ବେଳର ସେ ଗପ ଏବେ ବି ସ୍ମୃତିରେ ସତେଜ । 'ହୃଦୟର ବନ୍ଧନ' ଗଳ୍ପ ସଂକଳନର ସେ ଗୋଟିଏ ।

ସେତେବେଳକୁ ବିନୋଦବିହାରୀର ପୁସ୍ତକ ବିପଣୀ ଖୋଲି ନ ଥାଏ । ଯାହାଥାଏ ନିମିଚଉଡ଼ିରୁ ବାଲୁବଜାର ଭିତରେ । ଆଉ ଉମାଚରଣ ମହାନ୍ତିଙ୍କ କଟକ ପବ୍ଲିଶିଂ ହାଉସ୍ ନୟାସଡ଼କରେ । ନିମଚଉଡ଼ିରେ ନିଶାମଣି ତ୍ରିପାଠୀଙ୍କ ଷ୍ଟାଣ୍ଡାର୍ଡ଼ ବୁକ୍‌ମାର୍ଟ—ଯୋଉଠି ଏବେ ମୁଣ୍ଡ ଟେକିଛି ଗୋକୁଳି କରଙ୍କ ୟୁନାଇଟେଡ଼୍ ବୁକ୍ ହାଉସ୍ । ନୂଆ ପ୍ରକାଶିତ ପୁସ୍ତକର ନାମ ଗୋଟିଏ ଗୋଟିଏ ପଟିରେ ଲେଖା ହୋଇ ଦୋକାନ କବାଟରେ କଣ୍ଟାମରା ହୋଇ ଝୁଲୁଥାଏ । ସେଥିଭିତରୁ କେତେକରେ ରାଜକିଶୋର ପଟ୍ଟନାୟକଙ୍କ ସଦ୍ୟପ୍ରକାଶିତ ପୁସ୍ତକର ନାମ । କିଏ ସେହି ରାଜକିଶୋର ପଟ୍ଟନାୟକ ? ଆମେ ପରସ୍ପର ଚାହାଁ ଚାହିଁ ହେଉ । ଯେଉଁ ଦିନ 'ଚଲାବାଟ' ବହି ବାହାରିଲା, ସେଥିରେ ତାଙ୍କର ସାହିତ୍ୟ ଏକାଡ଼େମି କର୍ତ୍ତୃପକ୍ଷଙ୍କୁ





ଥିଲା ଏକ ଆହ୍ୱାନ । ଓଡ଼ିଆ ପୁରସ୍କାର ପ୍ରଦାନରେ ପକ୍ଷପାତ ରୀତି ତାଙ୍କ ଲେଖକୀୟ କୋମଳ ହୃଦୟକୁ ବାଧିଥିଲା । ତେଣୁ ସେ ଲେଖିଥିଲେ ସାହିତ୍ୟ ଏକାଡେ଼ମି ବାଲାଏ ଏପରି ଗୋଟିଏ ବହି ଲେଖି ଦେଖାନ୍ତୁ ।

ତାଙ୍କର ପ୍ରତିଭା ଅମଳିନ । ସେ ଝଲକି ଉଠି ଝଲସାଇ ଦେଉଥିଲା ସବୁରି ଚକ୍ଷୁକୁ ମାତ୍ର ଓଡ଼ିଆ ସାହିତ୍ୟର ବଡ଼ ପଣ୍ଡାଏ ତାଙ୍କୁ ଆଡ଼େଇ ଦେଇ ଥିଲେ । ଯେତେବେଳେ ସୁଦିନ ଆସିଲା, ତାକୁ ସେ ବାଧରେ ଗ୍ରହଣ କଲେ ସିନା । ମାତ୍ର ଆପଣେଇଲେ ନାହିଁ ।

ଭଉଣୀ ବସନ୍ତ ପଟ୍ଟନାୟକଙ୍କ 'ଅମଡ଼ାବାଟ' ଭାରି ନାଁ କରିଥାଏ । ଗୋପାଳ ଛୋଟରାୟ ନାଟ୍ୟରୂପ ଦେଲେ । ଅନ୍ନପୂର୍ଣ୍ଣା, 'ବି' ଗ୍ରୁପ୍ ଥିଏଟରରେ ପରିବେଷଣ କଲେ । ବାବୁଲାଲ ଯୋଷୀ ତାର ଚଳଚ୍ଚିତ୍ର ରୂପ ଦେଲେ । ସାନ ଭଉଣୀର କୃତିତ୍ୱରେ ତାଙ୍କର ଥିଲା ଯଥେଷ୍ଟ ଆନନ୍ଦ । ଘରେ ପ୍ରେକ୍ଷାଗୃହ କରିଥିଲେ । କେତେ ଲୋକ ଲଗାଇଲେ ପାଶ୍ ଦେଲେ ମାଗଣା ଦେଖିବାକୁ ଯିଏ ସେ ଛବିକୁ । ମୁହଁ ଖୋଲିଲେ ରାଜକିଶୋର, କ'ଣ ବହିଟାଏ ଲେଖିଦେଲୁ ବୋଲି ଦେଖାଇବା କାମ କି ଆମର । ରୋକ୍‌ଠୋକ୍ କଥା ।

ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରବନ୍ଧ ପ୍ରତିଯୋଗିତାରେ 'ଓଡ଼ିଆ ସାହିତ୍ୟରେ ନନ୍ଦକିଶୋର' ଓ 'ଓଡ଼ିଆ ସାହିତ୍ୟରେ ଗଙ୍ଗାଧର' ପ୍ରବନ୍ଧ ଲେଖି ମୁଁ ଦୁଇଥର ପ୍ରଥମ ସ୍ଥାନ ଅଧିକାର କରିଥିଲି । ଅକ୍ସଫୋର୍ଡ ୟୁନିଭର୍ସିଟି ପ୍ରେସ୍‌ର ଇଂରାଜୀରେ ସେଲି, କିଟ୍‌ସ୍, ବାଇରନ୍, ଓ୍ୱାଡ଼ସ୍‌ଓ୍ୱାର୍ଥ ଆଦି କବିମାନଙ୍କ ଉପରେ ଖଣ୍ଡିଏ ଖଣ୍ଡିଏ ବହି ପ୍ରକାଶ ପାଇଥିବା ଖ୍ରୀଷ୍ଟ ମହାବିଦ୍ୟାଳୟରେ ଦେଖିଥିଲି । ଆମ ସାହିତ୍ୟରେ ସମାଲୋଚନା ଅଭାବ ଥିବାରୁ ସେହି ଆଦର୍ଶରେ ମୁଁ ଗୋଟିଏ କବି ପରିଚୟ ସିରିଜ୍ ଲେଖିବା ମନସ୍ଥ କଲି । ପଲ୍ଲୀକବି ପରିଚୟ ନାମରେ ନନ୍ଦକିଶୋରଙ୍କ ଉପରେ ଲିଖିତ ବହି ଓଡ଼ିଶା ପବ୍ଲିଶିଂ ହାଉସ୍ ଭକ୍ତକବି ମଧୁସୂଦନଙ୍କ ସଂପର୍କରେ ଭକ୍ତକବି ପରିଚୟ, ରବୀନ୍ଦ୍ରନାଥ ମିଶ୍ରଙ୍କ ଉତ୍କଳ ବାଣୀବିହାର, ଉପେନ୍ଦ୍ର ଭଞ୍ଜଙ୍କ ଉପରେ ଲିଖିତ ପୁସ୍ତକ ଓ୍ୱାଣୀଭାଣ୍ଡାର କଟକ ବୁକ୍‌ଷ୍ଟୋର ଛପାଇଥିଲେ । ଏହା ପୂର୍ବରୁ ଓଡ଼ିଆ ଦଳିତ ଜାତି ସମ୍ପର୍କ ଅସ୍ପୃଶ୍ୟତା ନିବାରଣ ଉପରେ ଗୋଟିଏ ନାଟକ 'ଯୁଗାନ୍ତର' ପ୍ରକାଶ କରି ଓଡ଼ିଶାର ଚାରିଆଡ଼େ ସଂଘ ପକ୍ଷରୁ ପ୍ରଦର୍ଶନ କରିଥିଲେ । ହେଲେ ବି ସେ ସବୁଥିରୁ ଲାଭାଂଶ କିଛି ମିଳୁ ନଥିଲା । ଏହି ସମୟରେ ରାଜକିଶୋର ବାବୁ ଲେଖକମାନଙ୍କୁ ପ୍ରକାଶନରେ ସାହାଯ୍ୟ କରିବାପାଇଁ ଗୋଟିଏ ପ୍ରକାଶକ ସଂସ୍ଥା ଖୋଲିଲେ । ମୋର 'ଓଡ଼ିଆ ସାହିତ୍ୟରେ ଗଙ୍ଗାଧର' ପ୍ରବନ୍ଧଟି ପ୍ରକାଶ ପାଇଥିଲା । ଲେଖକମାନଙ୍କୁ ଉତ୍ସାହ ପ୍ରଦାନ ଥିଲା ତାହାଙ୍କ 'ଶାନ୍ତିନିବାସ ବାଣୀ ମନ୍ଦିର'ର ଲକ୍ଷ୍ୟ । ବହୁ ଲେଖକ ଏହା ମାଧ୍ୟମରେ ପୁସ୍ତକ ପ୍ରକାଶ କରି ଉପକୃତ ହୋଇଥିଲେ ।



ପାଠାଗାରମାନଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରି ସେମାନଙ୍କ ସମସ୍ୟା ସମାଧାନ ଦିଗରେ ତାଙ୍କର ଥିଲା ଅବାରିତ ଚେଷ୍ଟା ଓ ତା'ର ଫଳ ସ୍ୱରୂପ ଗୋଟିଏ ଦୈନିକ ପତ୍ରିକା 'ପାଠଚକ୍ର'ର ସୃଷ୍ଟି । ଏ କଳ୍ପନା ମଧ୍ୟ ତାଙ୍କର ଅଳ୍ପଦିନ ସ୍ଥାୟୀ ହେଲା । କଚେରୀରୁ ଫେରିବା ପରେ ଦୈନିକ ଲେଖା ଲେଖି କରି, ଠିକଣା ଲେଖି ପାଠକ/ଗ୍ରାହକମାନଙ୍କ ପାଖକୁ ପଠାଇବା ହେଲା ତାଙ୍କର ଦୈନନ୍ଦିନ କର୍ମସୂଚୀ । ଏ କଳ୍ପନା ଆମ ରାଜ୍ୟରେ ଥିଲା ଅଭିନବ ।

ଆଡ୍‌ଭୋକେଟ୍ ଭାବରେ ତାଙ୍କର ଖ୍ୟାତି ଥିଲା । ରାଜା ଜମିଦାରଙ୍କ ଶୋଷଣରୁ ଦୁଃସ୍ଥ ଜନସାଧାରଣଙ୍କୁ ରକ୍ଷା କରିବାର ବ୍ରତ ନେଇ ସେ ଦୁର୍ବଳର ପକ୍ଷ ସମର୍ଥନ କରୁଥିଲେ ।



କୃଷ୍ଣମୂର୍ତ୍ତିଙ୍କ ଦର୍ଶନ ସଂପର୍କରେ ସେ ଆଲୋଚନା କରୁଥିଲେ । ସତ୍ୟସାଇବାବାଙ୍କ ବିଷୟରେ କେତେ କଥା ଗପିବା ମଧ୍ୟ ମୁଁ ଡଗର ପ୍ରେସ୍‌ରେ ଶୁଣିଛି । ସେ ତହିଁରେ ପ୍ରଭାବିତ ନ ହେବା କଥା କହନ୍ତି । ହେଲେହେଁ ସମସ୍ତ ଧର୍ମଗ୍ରନ୍ଥରେ ଥିବା ମାନବବାଦ ବିଷୟରେ ତାଙ୍କର ଆସ୍ଥା ଥିଲା । ତାହା ତାଙ୍କର ଗଳ୍ପ ଉପନ୍ୟାସମାନଙ୍କରୁ ସ୍ପଷ୍ଟ ଜଣାପଡୁଥିଲା । ଭାବ ରାଜ୍ୟରେ ସେ ଥିଲେ ଚିର କିଶୋର ।

ତାଙ୍କର ବିୟୋଗରେ ଓଡ଼ିଆ ସାହିତ୍ୟରେ ଯେଉଁ ଶୂନ୍ୟସ୍ଥାନ ରହିଲା, ସେ ସ୍ଥାନକୁ ଆଉ କେହି ପୂର୍ଣ୍ଣ କରି ପାରିବେ ନାହିଁ । ସେହି ସ୍ୱାଭିମାନୀ ମଣିଷଟି ନିଜ ସହିତ ଆସନଟିକୁ ମଧ୍ୟ ଘେନିଯାଇଛି ଯେମିତିକି ଆଉ କେହି ଆସନ ପାଇଁ ଆଶା ନ କରୁ । ଭଗବାନ ତାଙ୍କ ଆତ୍ମାର ସଦ୍‌ଗତି କରନ୍ତୁ ।

ନିର୍ମଳ କୁଟୀର,
ବଙ୍ଗାଳୀସାହି,
କଟକ-୯

# ଚଲାବାଟର ଏକାକୀ ପଥିକ :

# ବାଟ ସରି ନାହିଁ ଯାତ୍ରା ଶେଷ !

ବିଭୂତି ପଟ୍ଟନାୟକ

''କାହିଁକି ଲେଖା ଆରମ୍ଭ କଲି କହିପାରିବି ନାହିଁ । ବୋଧ ହୁଏ ଯୁବକ ମନ ଆନନ୍ଦରେ ଦିନେ ଦିନେ ବସି ଗୁଣୁ ଗୁଣୁ ହୋଇ ଗାଇଲା ପରି ଭାବର ଆବେଗରେ ଯାହା ଲେଖି ଯାଇଥିଲି ତାହା ମୋର ପ୍ରଥମ ଲେଖା । ସେତେବେଳର ସାହିତ୍ୟିକ ବନ୍ଧୁମାନଙ୍କ ପାଖକୁ ନେଇ ସେଇଟି କଟାଡ଼ଣା କରି ଠିକ୍ କଲି । ତା'ପରେ ବ୍ରହ୍ମପୁରରେ ପ୍ରକାଶ ପାଉଥିବା ଗୋଟିଏ ସାହିତ୍ୟ-ପତ୍ରକୁ ପଠାଇ ପ୍ରକାଶର ଅପେକ୍ଷାରେ ରହିଲି । ***

ହଠାତ୍ ମନେହେଲା ଯେ, ମୁଁ ଜଣେ ଲେଖକ । କାରଣ ମୋର ଲେଖା ଛପା ହୋଇପାରୁଛି । ପଛକୁ ପଛ ଲେଖି ନଗଲେ କାଳେ ଛାପା ହେବାରେ ବାଧା ଆସିବ ବୋଲି ବଡ଼ ଅଧ୍ୟବସାୟର ସହିତ କେଇବର୍ଷ ଲେଖିଲି । ସେହିଗୁଡ଼ିକରେ ଯୁବକ ମନର କଅଁଳ ଅନୁଭୂତି ସବୁ ରସ ନିଗାଡ଼ି ଦେଇଛି । କୋଟିଏ ଓଡ଼ିଆଙ୍କର ଜଣେ ଲେଖକ ବୋଲି ସୁମାରିକୁ ଆସିଛି ।''

''ମୁଁ କାହିଁକି ଲେଖେ ?'' ଶୀର୍ଷକ 'ଡଗର'ରେ ପ୍ରକାଶିତ ଲେଖକୀୟ ସ୍ୱୀକାରୋକ୍ତିରେ ଏହାହିଁ ଥିଲା କଥା ଶିଳ୍ପୀ ରାଜକିଶୋର ପଟ୍ଟନାୟକଙ୍କର ଅକପଟ ଅଭିବ୍ୟକ୍ତି ।

ସେ ଲେଖୁ ଲେଖୁ ଲେଖକ । ଗଳ୍ପ ଲେଖା ତାଙ୍କର ବାମ ହାତର ଖେଳ ଭଳି । ସେ ଅନ୍ୟମାନଙ୍କ ଭଳି ଦାନ୍ତ ଚିପି, ଅଙ୍କ କଷିଲା ଭଳି ଲେଖନ୍ତି ନାହିଁ । ଗଳ୍ପ ତାଙ୍କ କଲମ ମୁନକୁ ଆପେ ଆପେ ଚାଲି ଆସେ । ''ଥରେ ପ୍ରସିଦ୍ଧ ଔପନ୍ୟାସିକ କାହ୍ନୁ ଚରଣଙ୍କ କଥାରେ ସେ ୧୨ ଘଣ୍ଟା ମଧ୍ୟରେ ୧୦ ଗୋଟି ଗଳ୍ପ ଲେଖି ଦେଇଥିଲେ । ଏହା ଅନ୍ୟ ଲେଖକ ପକ୍ଷରେ କଳ୍ପନାତୀତ, କାରଣ ଗୋଟିଏ ଗଳ୍ପ ଲେଖିବା ପାଇଁ ଅନ୍ୟମାନେ ୧୫ ଦିନ କିମ୍ବା ମାସେ ସମୟ ନିଅନ୍ତି । କାହ୍ନୁ ଚରଣ ଏ କାର୍ଯ୍ୟରେ ବିସ୍ମିତ ଓ ଆନନ୍ଦିତ ହୋଇ ଲେଖକଙ୍କୁ ୫୦ ଟଙ୍କା ପାରିଶ୍ରମିକ ସ୍ୱରୂପ ଦେଇଥିଲେ । ପରେ ଅବଶ୍ୟ ଗଳ୍ପଗୁଡ଼ିକ ବିଭିନ୍ନ ପତ୍ରିକାରେ ପ୍ରକାଶିତ ହେଲା ।'' ('ଅଧୁନା', ମାର୍ଚ୍ଚ-ମେ, ୧୯୭୬) । ନିଜ ଗଳ୍ପ ସଂପର୍କରେ ରାଜକିଶୋର 'ଡଗର'ରେ ପ୍ରକାଶିତ 'ମୁଁ କାହିଁକି ଲେଖେ' ରଚନାରେ ଗୋଟିଏ ଜାଗାରେ



ଉଲ୍ଲେଖ କରିଥିଲେ—''ସହଜରେ ହୋଇଯିବ ବୋଲି ଗଳ୍ପ ଲେଖୁଥିଲି । ଓଡ଼ିଆରେ ସବୁଠାରୁ ଭଲ ଗଳ୍ପ ମୋର ହେଉଥିବ ବୋଲି ବେଳେବେଳେ ଧାରଣା ହେଉଥିଲା । ତେବେ ସେତକ ଭୁଲ । ଏବେ ଗଳ୍ପ ପାଇଁ ଟଙ୍କା ମିଳୁଛି । ଗୋଟିଏ ଗଳ୍ପ ଏବେ ଓଡ଼ିଶାରେ ପ୍ରଥମ ହୋଇ ୨୦୦ ଟଙ୍କା ପୁରସ୍କାର ପାଇଲା ।''

ପ୍ରାୟ ୬୦ ବର୍ଷ ତଳେ ସେ ଗଳ୍ପ ଲେଖା ଆରମ୍ଭ କରିଥିଲେ 'ସହକାର' 'ନବଭାରତ' ପୃଷ୍ଠାରେ । ସେତେବେଳେ ଓଡ଼ିଆରେ ଗଳ୍ପ ଲେଖକଙ୍କ ସଂଖ୍ୟା ଥିଲା ସୀମିତ । ନିତ୍ୟାନନ୍ଦ ମହାପାତ୍ର, ହରିଶ୍ଚନ୍ଦ୍ର ବଡ଼ାଳ, କାଳିନ୍ଦୀଚରଣ ପାଣିଗ୍ରାହୀ, ରାଜକିଶୋର ରାୟ ପ୍ରମୁଖ ହେଲେ ଓଡ଼ିଆ ଗଳ୍ପର ପ୍ରମୁଖ ରୂପକାର । ସେମାନଙ୍କ ମଧ୍ୟରେ ରାଜକିଶୋର ପଟ୍ଟନାୟକଙ୍କ ଗଳ୍ପର ଭାବ ଓ ଭାଷା ଥିଲା ଅଲଗା । ରାଜକିଶୋର ରାୟଙ୍କ ଭାଷାର ଆଳଙ୍କାରିକତା, ନିତ୍ୟାନନ୍ଦ ମହାପାତ୍ରଙ୍କ ଗଳ୍ପର ଦାର୍ଶନିକତା କିମ୍ବା କାଳିନ୍ଦୀଚରଣଙ୍କ ଗଳ୍ପର କଥାବସ୍ତୁର ଚମତ୍କାରିତା ରାଜକିଶୋର ପଟ୍ଟନାୟକଙ୍କ ଗଳ୍ପରେ ନଥିଲା, କିନ୍ତୁ ପଟ୍ଟନାୟକ ଗଳ୍ପର ଭାବର ଗମ୍ଭୀରତା ଏବଂ ଭାଷାର ସରଳତା ଏବଂ କାବ୍ୟିକ ସୁଷମା ସେମାନଙ୍କ ଗଳ୍ପରେ ସହଜଲଭ୍ୟ ନଥିଲା ।

ନିଜ ଗଳ୍ପ-ଉପନ୍ୟାସର ବୈଶିଷ୍ଟ୍ୟ ସଂପର୍କରେ ନିକଟରେ ଏକ ସାକ୍ଷାତକାରରେ ସେ କହିଥିଲେ—''ଆଧୁନିକ ମଣିଷର ଜୀବନ କଥା ହିଁ ମୋ ସୃଷ୍ଟିର ଉପାଦାନ । ଆଜିର ସମାଜର ଏହା ନିଛକ ଚିତ୍ର । ଗୋପୀନାଥ ନିଜ ସୃଷ୍ଟି ପାଇଁ ଆଦିବାସୀ ସମାଜ ପାଖକୁ ଯାଇଛନ୍ତି । ସୁରେନ୍ଦ୍ର ମହାନ୍ତି ଯାଇଛନ୍ତି ବୁଦ୍ଧ-କାଳୀନ ସମାଜ ପାଖକୁ । ମାତ୍ର ମୁଁ ଯାହା ମୋ ପାଖ ସମାଜ ଓ ସେହି ସମାଜରେ ଥିବା ମଣିଷର ସୁବିଧା ଅସୁବିଧା ଯାହା, ତାହା ମୋ ସୃଷ୍ଟିରେ ସ୍ଥାନ ପାଇଛି ।''

ଗୋପୀନାଥ ମହାନ୍ତି ଯେ, କେବଳ ଆଦିବାସୀ ଜୀବନ ଉପରେ ଆଧାରିତ ଗଳ୍ପ ଉପନ୍ୟାସ ଲେଖିଛନ୍ତି; ସୁରେନ୍ଦ୍ର ମହାନ୍ତି ଖାଲି ବୌଦ୍ଧ ଯୁଗର ଐତିହାସିକ ପୃଷ୍ଠଭୂମିରେ ନିଜକଥା ସାହିତ୍ୟର ସୌଧ ନିର୍ମାଣ କରିଛନ୍ତି-ସାମାଜିକ ମଣିଷର ଜୀବନାଲେଖ୍ୟ ତାଙ୍କ ଗଳ୍ପ ଉପନ୍ୟାସରେ ଅଙ୍କିତ ହୋଇନାହିଁ-ତା ନୁହେଁ, ରାଜକିଶୋର ପଟ୍ଟନାୟକ ଯେପରି ଏକାଗ୍ରଚିତ୍ତରେ ସମସାମୟିକ ସମାଜ ଏବଂ ତହିଁରେ ଆତଯାତ ହେଉଥିବା ମଣିଷମାନଙ୍କର ସୁଖଦୁଃଖ, ବିଚିତ୍ର ଜୀବନଯାପନ ପ୍ରଣାଳୀକୁ ପର୍ଯ୍ୟବେକ୍ଷଣ କରି ଅନ୍ତରଙ୍ଗତାର ସହିତ ନିଜ ଲେଖାରେ ପ୍ରକାଶ କରିଛନ୍ତି; ଅନ୍ୟମାନଙ୍କ କ୍ଷେତ୍ରରେ ତାହା ହୋଇନାହିଁ ।

ରାଜକିଶୋରଙ୍କ ଗଳ୍ପଗୁଡ଼ିକରେ ତୁଚ୍ଛାତିତୁଚ୍ଛ ପଦାର୍ଥ ପ୍ରାଧାନ୍ୟ ଲାଭ କରି ଯେପରି ପାଠକର ମନକୁ ଏକ ଦିବ୍ୟ ଅନୁଭୂତିରେ ପୁଲକିତ କରିଦିଏ, ଅନ୍ୟ ଅନେକ ତାଙ୍କ

ସମସାମୟିକ କଥାଶିଳ୍ପୀଙ୍କର ଗଳ୍ପରେ ତାହା ଦୁର୍ଲ୍ଲଭ । 'ଧୂଳି' 'ବାଲି' 'ଘାସ' 'ପାଚିଲାପତ୍ର' 'ତୁଠ ପଥର' ଇତ୍ୟାଦି ଯେଉଁ ବସ୍ତୁ ସାଧାରଣ ଲୋକଙ୍କ ଆଖିରେ ତୁଚ୍ଛ, ଉପେକ୍ଷିତ, ରାଜକିଶୋରଙ୍କ ଶିଳ୍ପୀ ଦୃଷ୍ଟିରେ ତାହା ମହନୀୟ । ଏଇ ସାମାନ୍ୟ ବସ୍ତୁକୁ ସାମାଜିକ ମଣିଷର ଜୀବନ-ଦର୍ଶନ ଭାବରେ ସେ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । 'ଧୂଳି' ଗଳ୍ପର ନାୟକ ଗୋପାଳ ବାବୁ ଧୂଳି ଭିତରେ ବଢ଼ି ଉଠିଥିବା ଦେବଦାରୁ, ନଡ଼ିଆଗଛର ଉଚ୍ଚତାକୁ ଲକ୍ଷ୍ୟ କରି ଅନୁଭବ କରନ୍ତି ଠେଲିପେଲି ସବୁଗଛ ଡେଙ୍ଗା ହୋଇଯାଉଛନ୍ତି—ମଣିଷ ବୋଲି ଗୋଟିଏ ନିର୍ଦ୍ଦିଷ୍ଟ ବୟସ ପରେ ଆଉ ତାଙ୍କର ଉଚ୍ଚା ବଢ଼ୁନାହିଁ । ସେହିପରି ''ତୁଠ ପଥର'' ଗଳ୍ପରେ ତାଙ୍କର ଉପଲବ୍ଧି—''ଗାଧୁଆ ତୁଠରେ ଅଧାପାଣି ଓ ଅଧା ଶୁଖିଲା ହୋଇ ଯେଉଁ ଚଉରସିଆ ପଥର ଖଣ୍ଡଟିମାନ ସମସ୍ତଙ୍କ ଗୋଡ଼ ଘସା ପାଇଁ ପଡ଼ି ରହିଥାଏ, ସେଇଟି ସଂସାରର ଗୋଟିଏ ଇଙ୍ଗିତପୂର୍ଣ୍ଣ ନିଶାଣ । କାରଣ ସଂସାରର ଅସଂଖ୍ୟ ନରନାରୀ କର୍ମବୀରମାନଙ୍କ ତୁଠ [illegible] କରି ଗୋଇଠା ଦେଇ ହସି ହସି ଚାଲିଯାଆନ୍ତି ।''

'ତୁଠ ପଥର' ଭଳି ବାଟ କଡ଼ରେ ଗାଈଗୋରୁଙ୍କ ପାକୁଳି ଆଉ ମଣିଷମାନଙ୍କ ପାଦତଳେ ଚାପି ହୋଇ ଘାସ ଯେତେବେଳେ ପୁଣି ପଲ୍ଲବିତ ହୋଇଉଠେ, ଧୂସର ପଥକୁ ସବୁଜ ରଙ୍ଗରେ କୋମଳ କରିଦିଏ ସେଇବାଟ ଦେଇ ତୋରାଣି ପିଇ ସାତ ପଇସା ଦୈନିକ ମଜୁରୀରେ ସାର୍ଜକେଲ ଦୋକାନରେ କାମ କରୁଥିବା ଲିଙ୍ଗା ପ୍ରତିକୂଳ ପରିବେଶରେ ବଞ୍ଚି ରହିବାର ତାତ୍ପର୍ଯ୍ୟ ଉପଲବ୍ଧି କରେ । ତା' ମନରେ ପ୍ରଶ୍ନ ଉଠେ—''ବାଟ କରରେ ଥାଇ ସୁଦ୍ଧା ଏତେ ଲୋକର ଯିବା ଆସିବାରେ ଘାସ, ଗାଈଗୋରୁଙ୍କ ପାଟି ତାହାକୁ ପୋଛି ଦେଇପାରି ନାହିଁ । ତାହାହେଲେ ମଣିଷ ଜାତି କାହିଁକି ଟଳିବ [illegible] ଏହି ଅଭାବ ଭିତରେ ବଢ଼େଇ ପିଲାଟି [illegible]''

କେବଳ ଛୋଟ ଗଳ୍ପରେ ନୁହେଁ, [illegible] 'ସିନ୍ଦୂର ଗାର' 'ପ୍ରେମିକର ଡାଏରୀ' 'ଅଷ୍ଟମୀ ଚାନ୍ଦ' ଓ 'ଗଳିବାଟ' ପ୍ରଭୃତି ଉପନ୍ୟାସରେ ମଧ୍ୟ କାହାଣୀର ଚମତ୍କାରିତା ଅପେକ୍ଷା ବିଶ୍ଳେଷଣର [illegible] ପାଠକମାନଙ୍କ ମନଯୋଗ ବିଶେଷ ଭାବରେ ଆର୍କଷଣ କରେ । ଏକ ଆକର୍ଷଣୀୟ ଆରମ୍ଭ, ଉତ୍କଣ୍ଠିତ ମଧ୍ୟଭାଗ ଏବଂ ନାଟକୀୟ ପରିସମାପ୍ତି-ସଫଳ ଉପନ୍ୟାସର ଏହି ଗତାନୁଗତିକ ବିଧିବଦ୍ଧ ଗଠନ କଳାରେ ସେ ବିଶ୍ୱାସ କରନ୍ତି ନାହିଁ । ସେଥିପାଇଁ ତାଙ୍କ ଉପନ୍ୟାସ ପଢ଼ିଲା ବେଳେ ପାଠକ ଆରମ୍ଭ କଲାବେଳେ ଯେଉଁଠି ଥାଏ; ଶେଷ କଲା ପରେ ମଧ୍ୟ ସେଇଠାରେ ରହିଯାଏ । ତାଙ୍କ ଉପନ୍ୟାସରେ କିଛି ଗୋଟାଏ ହଠାତ୍ ବିସ୍ଫୋରଣ ଘଟେ ନାହିଁ ।



ପାଠକର ଚିତ୍ତ-ଚାଞ୍ଚଲ୍ୟ ସୃଷ୍ଟି କରିବା ପାଇଁ ସେ ଉପନ୍ୟାସ ଲେଖନ୍ତି ନାହିଁ । ଧ୍ରୁପଦୀ ସଂଗୀତର ଆଳାପ ଭଳି ତାଙ୍କ ଉପନ୍ୟାସର ଭାବ ଧୀରେ ଧୀରେ ପାଠକ ହୃଦୟକୁ ଆନ୍ଦୋଳିତ କରେ । ଆଖ୍ୟାନ ବସ୍ତୁ ସମତଳ ହେଲେ ମଧ୍ୟ ତାଙ୍କ ଉପନ୍ୟାସର ବ୍ୟାଖ୍ୟାନ ଅତଳସ୍ପର୍ଶୀ ।

ତାଙ୍କର ବହୁ-ଚର୍ଚ୍ଚିତ ଉପନ୍ୟାସ 'ଚଲାବାଟ' ଅମରେନ୍ଦ୍ର-ରୀତା-ସୁମତି-ଏହି ତିନି ପୁରୁଷ ନାରୀଙ୍କ ପରସ୍ପର ପ୍ରତି ରାଗ-ଅନୁରାଗ-ବୈରାଗ୍ୟକୁ ନେଇ ରଚିତ । କିନ୍ତୁ ଏହା ଠିକ୍ ଗତାନୁଗତିକ ତ୍ରିକୋଣୀ-ପ୍ରେମ କାହାଣୀ ନୁହେଁ । ଏହି ତିନି ଚରିତ୍ରର ବିଶ୍ଳେଷଣ ମଧ୍ୟରେ ରାଜକିଶୋର ପ୍ରେମର ଏଭଳି ଏକ ବିଷଣ୍ଣ ଜଳଛବି ଆଙ୍କିଛନ୍ତି-ଯାହା ପାଠକକୁ ଏକ ପ୍ରେମାତିରିକ୍ତ ଜଗତକୁ ନେଇଯାଏ । ପୁଣି ଏହି ନାୟକ-ନାୟିକମାନଙ୍କ ଚାରିତ୍ରିକ ବିଶ୍ଳେଷଣ ମଧ୍ୟରେ ସେ ସମକାଳୀନ ନାରୀ-ପୁରୁଷ ଚରିତ୍ରର ଅନାବିଷ୍କୃତ ଦିଗ ପାଠକ ଆଖିରେ ଉନ୍ମୋଚିତ କରି ଦେଇଛନ୍ତି ।

ରୀତା ଆଉ ଅମରେନ୍ଦ୍ର ମଧ୍ୟରେ ହୃଦୟ-ବିନିମୟର କେନ୍ଦ୍ରବିନ୍ଦୁ ଥିଲା— ଦୁହେଁ ଯାକ ପଢ଼ିବାକୁ ଯାଉଥିବା ପାଠାଗାରର ବହି । ଏହି ପାଠାଗାରର ବହି ସଂପର୍କରେ ରାଜକିଶୋରଙ୍କ ପର୍ଯ୍ୟବେକ୍ଷଣ ହେଲା- "ଜିଅନ୍ତା ମଣିଷ ଜିଅନ୍ତା ମଣିଷକୁ ଏକା କନ୍ଦାଏ ନାହିଁ । ପ୍ରାଣ ନଥିବା ବହି ସେତେ ନିର୍ଜୀବ ହେଲେ ବି ଶିକ୍ଷିତ, ବିଶ୍ଳେଷଣ ଲୋକର ହୃଦୟରେ ଏକାଧିପତ୍ୟ କରି ରହିପାରେ । ମଣିଷ ମନେ କରେ ସେ ଛୋଟ ବୋଲି, ବୟସ୍କ ବୋଲି । ଦରିଦ୍ର କି ଅଶିକ୍ଷିତ ବୋଲି ସଂସାରରେ ସାନ ହେଉନାହିଁ —ତା'ପାଇଁ ଝୁରିବାକୁ କେହି ନାହାନ୍ତି କିନ୍ତୁ ପ୍ରାଣହୀନ ବହି ମଣିଷକୁ ପ୍ରେମିକା ଠାରୁ ପ୍ରେମ ଠାରୁ ବିଜୁଳିର ଆକର୍ଷଣ ଠାରୁ ଅଧିକ ବଳରେ ବହି ଟାଣି ଆଣିପାରେ ।''
('ଚଲାବାଟ'-ପୃଷ୍ଠା ୭୨) ।

ସେହିପରି ବ୍ୟର୍ଥ ନାୟିକା ରୀତା ଅଧ୍ୟାପିକା ହେଲା ପରେ ଛାତ୍ରୀମାନଙ୍କୁ ପ୍ରାଣ ଖୋଲି ନ ହସିବା ପାଇଁ ଯେତେବେଳେ ଆକଟ କରିଛନ୍ତି-ସେତେବେଳେ ସେମାନଙ୍କର ପ୍ରତିକ୍ରିୟା ହୋଇଛି—''ଆମ ବଗିଚାର ମାଳି ଆଉ କଲେଜ ପ୍ରଫେସର ସମାନ । ସେ କହେ ଫୁଲ ପାଖକୁ ଯାଅନାହିଁ— ଫୁଲ ଛିଣ୍ଡାଅ ନାହିଁ । ଆଉ ରୀତା ଦେବୀ କହୁଛନ୍ତି, ହସ ନାହିଁ । ଆଉ ଓଠ ବୁଜିଦିଅ ।'' (ପୃ-୧୦)

ମାଳିର ବାରଣ ସତ୍ତ୍ୱେ ଫୁଲବୃନ୍ତଚ୍ୟୁତ ହୁଏ । ଅଧ୍ୟାପିକାଙ୍କ ଆକଟ ପରେ ମଧ୍ୟ ଛାତ୍ରୀମାନେ ହସନ୍ତି । ସେମାନଙ୍କ ହସର ହିଲ୍ଲୋଳରେ ପୃଥିବୀ ଶବ୍ଦମୟ ହୁଏ । ଜୀବନ ଓ





ଜଗତ ସଂପର୍କରେ ଏହି ଅପୂର୍ବ ଉପଲବ୍ଧି ଯୋଗୁଁ ରାଜକିଶୋରଙ୍କ ଉପନ୍ୟାସ ମନନଶୀଳ ପାଠକର ହୃଦୟସ୍ପର୍ଶ କରିଯାଏ ।

ତାଙ୍କ ଭଳି ଭଲ ଗଳ୍ପ ଅନ୍ୟ କେହି ଲେଖିପାରନ୍ତି ନାହିଁ. 'ଚଲାବାଟ' ପରି ଉପନ୍ୟାସ ଆଉ କେହି ଲେଖିପାରିବେ ନାହିଁ—ରାଜକିଶୋରଙ୍କ ଏଭଳି ମନ୍ତବ୍ୟରେ ଅହଂକାର ନୁହେଁ, ଆତ୍ମ-ପ୍ରତ୍ୟୟର ଭାବ ହିଁ ବେଶୀ ପ୍ରକଟିତ ।

ତାଙ୍କର ଏହି ଆତ୍ମ-ପ୍ରତ୍ୟୟ ତାଙ୍କୁ ଯେପରି ନାନା ପ୍ରତିକୂଳ ପରିବେଶରେ ବାଟ ଅବାଟ ନମାନି ଲେଖିଯିବାର ଶକ୍ତି ଓ ସାମର୍ଥ୍ୟ ଯୋଗାଇଥିଲା, ସେହିପରି ମଧ୍ୟ ଅନେକ ସମୟରେ ଏକୁଟିଆ କଣ୍ଟକାକୀର୍ଣ୍ଣ ପ୍ରାନ୍ତରରେ ଏକୁଟିଆ ଠିଆ କରାଇ ଦେଇଥିଲା ।

ଫତୁରା ନନ୍ଦଙ୍କ ଭାଷାରେ "ଲେଖକମାନଙ୍କର ପ୍ରକାଶକମାନଙ୍କ ଦୁଆରେ ଦାନ୍ତ ନିକୁଟି ଠିଆ ହେବାଟାକୁ ରାଜୁବାବୁ ସହ୍ୟ କରିପାରୁ ନଥିଲେ । 'ଶାନ୍ତି ନିବାସ ବାଣୀ ମନ୍ଦିର' ନାମରେ ଗୋଟିଏ ପ୍ରକାଶନ ସଂସ୍ଥା ଖୋଲିଥିଲେ । ଲେଖକମାନେ ଆଶାନୁରୂପ ସହଯୋଗ କରିଥିଲେ ସଂସ୍ଥାଟି ଆଜି ଏକ ପ୍ରକାଣ୍ଡ ଅନୁଷ୍ଠାନରେ ପରିଣତ ହୋଇଥାନ୍ତା । ଦୁର୍ଭାଗ୍ୟର କଥା କେହି ସେପରି ସହଯୋଗ କଲେ ନାହିଁ । ସବୁ ପ୍ରକାଶକ ତାଙ୍କ ସହିତ ଶତ୍ରୁତା ଆରମ୍ଭ କରିଦେଲେ । ବର୍ଷ ଶେଷରେ ରାଜୁବାବୁ ନିଜେ ଟଙ୍କା ନେଇ ଲେଖକଙ୍କ ଘରେ ଦେବା ମୁଁ ଦେଖି ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ପ୍ରକାଶକମାନଙ୍କ ନାକଟେକା, ଲେଖକମାନଙ୍କୁ ଦୟାର ପାତ୍ର ବୋଲି ବିଚାରିବା, ସେମାନଙ୍କ ପାଖରେ ବାରମ୍ବାର ଅଧିଆ ପଡ଼ିବାକୁ ବାଧ୍ୟ କରିବା ଦେଖି ମନଟା ବିଶେଇ ଉଠିଥିଲା । ରାଜୁବାବୁ ଗୋଟାଏ ଆଶା ଭରସାର ସ୍ଥଳ ହୋଇଉଠିଲେ । କିନ୍ତୁ ହାୟ ! ଲେଖକ କପାଳ ପଥର ତଳେ, ସବୁ ଫୁସ୍ ହୋଇଗଲା । କେହି ତାଙ୍କ ଡାକ ନଶୁଣିବାରୁ ସେ ଏକାକୀ ଆଗେଇ ଚାଲିଛନ୍ତି ।"

ଫତୁରା ନନ୍ଦ ନାହାନ୍ତି । ଯେଉଁ କଥା ସାହିତ୍ୟିକ ରାଜକିଶୋର ପଟ୍ଟନାୟକଙ୍କ ସମ୍ପର୍କରେ ସେ ଏ ମନ୍ତବ୍ୟ କରିଥିଲେ ସେ ମଧ୍ୟ ନାହାନ୍ତି । ଚଲାପଥର ସେଇ ଏକାକୀ ପଥିକ ସବୁ ବାଦବିସମ୍ବାଦ, ପୁରସ୍କାର-ତିରସ୍କାର, ଶତ୍ରୁ-ମିତ୍ରଙ୍କ ବନ୍ଧନ କାଟି ଗତ ମାର୍ଚ୍ଚ ପହିଲା ଦିନ ଆରପାରିକୁ ଚାଲି ଯାଇଛନ୍ତି ।

ରାଜୁବାବୁଙ୍କ ସହିତ ଚାକ୍ଷୁସ ପରିଚୟ ହେବାର ଅନେକ ଆଗରୁ ତାଙ୍କ 'ଘାସ' ଗଳ୍ପ ଆଉ 'ପ୍ରେମର ନିୟତି' ପ୍ରେମ-ତତ୍ତ୍ୱମୂଳକ ରମଣୀୟ ରଚନା ସହିତ ମୋର ଆତ୍ମୀୟତା ହୋଇ ସାରିଥିଲା । 'ଘାସ' ଗଳ୍ପ ଥିଲା ମାଟ୍ରିକ୍ ପରୀକ୍ଷାର ପାଠ୍ୟବସ୍ତୁ, 'ପ୍ରେମର ନିୟତି' ଥିଲା ମୋ ପାଇଁ ଅପାଠ୍ୟ, ନିଷିଦ୍ଧ । ଅନ୍ୟମାନଙ୍କ ଆଖିର ଆଢୁଆଳରେ ଗୋପୀନାଥ,



ନିତ୍ୟାନନ୍ଦ, ରାଜକିଶୋରଙ୍କ ପତ୍ରଲିପିରେ ଉତ୍କୀର୍ଣ୍ଣ ସେଇ ପ୍ରେମତତ୍ତ୍ୱ ଠିକ୍ ବୁଝିପାରିଥିଲି ବୋଲି ଠିକ୍ କହିପାରିବି ନାହିଁ; କିନ୍ତୁ 'ପ୍ରେମର ନିୟତି'ର ପତ୍ରମାଳା ମୋ ଅବଚେତନରେ ଏପରି ପ୍ରଭାବ ବିସ୍ତାର କରିଥିଲା ଯେ, 'ଦିନ ଯାଏ ଚିହ୍ନ ରହେ' ନାମକ ପତ୍ରୋପନ୍ୟାସ ନଲେଖି ସାରିବା ପର୍ଯ୍ୟନ୍ତ ମତେ ସେଥିରୁ ମୁକ୍ତି ମିଳିନଥିଲା ।

କଟକରେ ବିନୋଦ ବିହାରୀ ବହି ଦୋକାନରେ ରାଜୁବାବୁଙ୍କ ସହ ଥରେ ନୁହେଁ, ଅନେକ ଥର ଦେଖାହୋଇଛି । ଲେଖାରେ ନିଜ ଗଳ୍ପ-ଉପନ୍ୟାସ ସଂପର୍କରେ ସେ ଯେତେ ଦାମ୍ଭିକତା ଦେଖାନ୍ତୁ ନା କାହିଁକି, ସାମ୍ନାସାମ୍ନି ତାଙ୍କ ଗଳ୍ପ-ଉପନ୍ୟାସ ସମ୍ପର୍କରେ ଆଲୋଚନା କଲେ ସେ ଲଜ୍ଜାରେ ଅପ୍ରତିଭ ହୋଇ ପଡୁଥିଲେ ।

କଟକରୁ ଚାଲି ଆସିଲା ପରେ ତାଙ୍କ ସହିତ ମୋର ପ୍ରାୟ ଦେଖାହୁଏ ନାହିଁ । ପରିଣତ ବୟସରେ ସୁଦ୍ଧା ସେ ଗଳ୍ପ, ଉପନ୍ୟାସ ନିୟମିତ ଲେଖି ଯାଉଥିଲେ । ପ୍ରତିବର୍ଷ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଘୋଷିତ ହେଲାବେଳେ ତାଙ୍କ ନାମ ଶୁଣାଯିବ ବୋଲି ମୁଁ ଆଶା କରି ଅପେକ୍ଷା କରିଥାଏ । ମୋର ଆଶା ଅପୂର୍ଣ୍ଣ ରହିଯାଏ ।

ଗତବର୍ଷ ରାଜୁବାବୁଙ୍କର ଦୁଇଟି ପୋଷ୍ଟକାର୍ଡ ଚିଠି ମୋ ପାଖରେ ପହଞ୍ଚି ଥିଲା । ସିରିଡ଼ି ସାଇବାବାଙ୍କ ପାଖକୁ ଯାଇ ସେ ରୋଗମୁକ୍ତ ଓ ମାନସିକ ଶାନ୍ତି ଫେରି ପାଇଛନ୍ତି । ମତେ ପରାମର୍ଶ ଦେଇଥିଲେ, ସୁବିଧା ପାଇଲେ ମୁଁ ସିରିଡ଼ି ସାଇବାବାଙ୍କୁ ଯେପରି ଦର୍ଶନ କରିଆସେ ।

''ହାଟ ବାହୁଡ଼ା''ଗଳ୍ପ ସଂକଳନରେ କେତୋଟି ଗଳ୍ପରେ ଭଗବତ ଚିନ୍ତା ତାଙ୍କର ପ୍ରାଧାନ୍ୟଲାଭ କରିଥିଲା । ଈଶ୍ୱରଙ୍କ ପାଖକୁ ଯିବା ପାଇଁ ନିଜ ଭିତରେ ସଂଭବତଃ ସେ ଏକ ପ୍ରକାର ବ୍ୟାକୁଳତା ଅନୁଭବ କରିଥିଲେ ।

ଗତ ମାର୍ଚ୍ଚ ୧ ତାରିଖ ଥିଲା ଚଲାବାଟର ଏକାକୀ ପଥିକର ଯାତ୍ରା ଶେଷର ଦିନ ।



# କିମ୍ବଦନ୍ତୀ ପୁରୁଷ ରାଜକିଶୋର

ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ

ରାଜକିଶୋର ପଟ୍ଟନାୟକ, ଓଡ଼ିଆ ସାହିତ୍ୟ ଜଗତରେ ଏକ ଅନନ୍ୟ ସାଧାରଣ କିମ୍ବଦନ୍ତୀ ପୁରୁଷ ହୋଇ ରହିଗଲେ । କଥାରେ କଥାରେ ଶାଣିତ କଟାକ୍ଷ, ପଦେ ପଦେ ପ୍ରଚଣ୍ଡ ସ୍ୱାଭିମାନର ଚିହ୍ନ, ଆଳାପ ଆଲୋଚନାରେ ଅଧଃମାନବକୁ ଊର୍ଦ୍ଧ୍ୱକୁ ଉଠାଇବାଲାଗି ଉଦ୍ୟମର ସମ୍ମୋହନ ତାଙ୍କଠାରେ ଏକତ୍ର ଦେଖାଯାଉଥିଲା । ଓଡ଼ିଆ ଜାତି ଓ ସାହିତ୍ୟର ନିଜସ୍ୱ ଗାରିମା ସଂରକ୍ଷଣ ଲାଗି, ତା'ର ଅଧିକରୁ ଅଧିକ ଉତ୍କର୍ଷ ସାଧନ ଲାଗି ସେ ଥିଲେ ସତତ ଉଦ୍ୟମରତ ଏକ ମୋହାବିଷ୍ଟ ସୈନିକ । କିନ୍ତୁ ସେ ଥିଲେ ଅତ୍ୟନ୍ତ ନିଃସଙ୍ଗ ! ଏପରି ବ୍ୟକ୍ତିତ୍ୱ ନିଃସଙ୍ଗ ହେବାହିଁ ସ୍ୱାଭାବିକ । ଏଭଳି ବ୍ୟକ୍ତିଙ୍କର ସାଙ୍ଗ ହେଲେ ସ୍ୱୀକୃତି ମିଳିବା କଷ୍ଟ ହେବ । ଏଭଳି ବ୍ୟକ୍ତି ସଙ୍ଗରେ ଥିଲେ କାହାକୁ ଦେଖି ଇଚ୍ଛା ନଥାଇ ସୁଦ୍ଧା ଦାନ୍ତ ନିକୁଟି, ମୁହଁରେ ହସ ଫୁଟାଇ ସମ୍ଭାଷଣ ଜଣାଇବାର ଛଳନା କରି ହେବ ନାହିଁ । ତଥାପି ତାଙ୍କର ସାହଚର୍ଯ୍ୟ ପାଇଥିବା (ହେଉପଛେ ସାମୟିକ) ଯେକେହି ଚେତନାଶୀଳ ବ୍ୟକ୍ତି ନିଜକୁ ମୁହୂର୍ତ୍ତକ ପାଇଁ ହେଲେ ଗୌରବାନ୍ୱିତ ମନେ କରିବ, ଏଥିରେ ସନ୍ଦେହ ନାହିଁ ।

ରାଜୁବାବୁଙ୍କ ସହ ମୋର ପରିଚୟ ହୋଇଥିଲା ପ୍ରଥମେ ଏକ ସାହିତ୍ୟ ସଭାରେ । ୧୯୬୨ ମସିହାରେ ଶ୍ରୀଯୁକ୍ତ ଦେବୀନାରାୟଣ ମହାପାତ୍ରଙ୍କ ରବିବାସରୀୟ ସାହିତ୍ୟ ସଂସଦର 'ଶିଶିର ଉତ୍ସବ'ରେ । ସେଦିନ ଗଳ୍ପ ପାଠୋତ୍ସବରେ ମୁଖ୍ୟ ଅତିଥି ଥିଲେ ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକ । ତାଙ୍କ ଲେଖା ବହି କେଇଟି ଆଗରୁ ପଢ଼ିଥିଲି, ତାଙ୍କ ବିଷୟରେ ଅନେକ କଥା ଶୁଣିଥିଲି । ତାଙ୍କୁ ସାକ୍ଷାତରେ ଦେଖିବା ସଙ୍ଗେ ସଙ୍ଗେ ମୋ ' ଲେଖା ସମ୍ବନ୍ଧରେ ତାଙ୍କଠାରୁ ଦିପଦ ଶୁଣିବାଲାଗି ମୋ' ମନରେ ପ୍ରଚଣ୍ଡ ଲୋଭ ଜାତ ହୋଇଥିଲା । ଗାଳ୍ପିକମାନେ ନିଜ ଲେଖା ଗପ ପଢ଼ିସାରିଲା ପରେ ମୁଖ୍ୟ ଅତିଥି ନିଜର ସମୀକ୍ଷା ଓ ମତାମତ ଦେବାକୁ ଉଠିଲାବେଳେ ମୋ' ମନରେ ଯେ କି ଉତ୍କଣ୍ଠା ତାହା ଆଜି ମଧ୍ୟ ପ୍ରକାଶ କରିବା ପୂରାପୂରି ସମ୍ଭବ ନୁହେଁ । ସମସ୍ତଙ୍କ ଗପ ଉପରେ ଦି ଚାରି କଥା କହିଲା ପରେ (ସାଧାରଣ ଭାବରେ) ମୋ' ଗପ ନେଇ ନିର୍ଦ୍ଦିଷ୍ଟ ଭାବେ କିଛି କହୁନାହାନ୍ତି ବୋଲି ମନ ମାରିବା ଆରମ୍ଭ କଲାବେଳକୁ ରାଜୁବାବୁ ମୋ' ଲେଖା ନେଇ ମାତ୍ର ଗୋଟିଏ ବାକ୍ୟ ''ଆଜିଠାରୁ କୋଡ଼ିଏ ବର୍ଷପରେ ଏ ଗପର ଲେଖକ ନରେନ୍ଦ୍ରବାବୁ ଯଦି ପାଠକ ଶ୍ରେଣୀରେ ରହିଥିବେ ତେବେ ସେତେବେଳେ ତାଙ୍କ ଗପ ଉପରେ ମୋର ମତାମତ ଦେବି'' କହି ଗଳ୍ପ ସାହିତ୍ୟ ନେଇ ସେ ନିଜର ଅଭିଭାଷଣ ଦେଲେ । ମୋ' ଲେଖା ନେଇ ତାଙ୍କ କଥା



ଶୁଣି ମୋର ଯେପରି ସବୁ ଓଲଟ ପାଲଟ ହୋଇଗଲା—କି ପ୍ରଚଣ୍ଡ ଆହ୍ୱାନ—ନା ଅବଜ୍ଞା !

ମୋ' ଲେଖାନେଇ ରାଜକିଶୋର ବାବୁଙ୍କର ଏ ମନ୍ତବ୍ୟକୁ ଅନେକ ସମୟରେ ମନେ ମନେ ଗୁଣି ହୋଇଛି । ମାତ୍ର କ'ଣ ହେଲା ? ସତରେ ତ କାହିଁ ୧୯୮୨ ବେଳକୁ ମୁଁ ସାହିତ୍ୟର ସେ ଭଳି ପାଠକ ହୋଇ ରହିପାରିଲିନି !! ତେବେ ମୋ' ଲେଖାରୁ କ'ଣ ସେଦିନ ସେ ଏହି ସୂଚନା ପାଇ ଯାଇଥିଲେ ? ୧୯୬୨ ବେଳକୁ ମୋ' ଲେଖା ପରି ବେଶି ଲୋକ ଲେଖୁ ନଥିଲେ । ମୁଁ ତାକୁ ଗପ ବି କହୁନଥିଲି । ବନ୍ଧୁ ଅଧ୍ୟାପକ ପ୍ରଭାତ ମହାପାତ୍ରଙ୍କ ଉକ୍ତି ଅନୁସାରେ ୧୯୭୦ ଦଶକରେ ସେପରି ଗପ ଲେଖା ଅନେକ ଆରମ୍ଭ କରିଥିଲା ବେଳେ ମୋ' କଲମ ( ସେ କ୍ଷେତ୍ରରେ ପ୍ରାୟତଃ ପ୍ରଥମ କଲମ) ବନ୍ଦ ହୋଇଗଲା । ଏହାର [illegible] ସମ୍ଭାବ୍ୟ କାରଣ ମଧ୍ୟ ରାଜକିଶୋରଙ୍କ ଚିନ୍ତନରୁ ମିଳିଥିଲା । ସାହିତ୍ୟ ହେଲା ଜୀବନର ପ୍ରଶ୍ନ—ସମକାଳୀନ ସମାଜର ପ୍ରଶ୍ନ । ଏ ପ୍ରଶ୍ନର ସମାଧାନ ଯଦି ସାହିତ୍ୟରୁ ନ ମିଳେ ତେବେ ସେ ସାହିତ୍ୟ ଲେଖିବା କାହିଁକି ନା ପଢ଼ିବା କାହିଁକି ? ଆଜିର ଦ୍ୱନ୍ଦ୍ୱମୟ ଜୀବନରେ ସାହିତ୍ୟ ଯଦି ଏକ ଅନାସକ୍ତ ମାର୍ମିକ ଶାନ୍ତର ସନ୍ଧାନ ନ ଦିଏ ସେ ସାହିତ୍ୟ ହୃଦୟସ୍ପର୍ଶୀ ହେବନାହିଁ । ସାହିତ୍ୟ ହୃଦୟସ୍ପର୍ଶୀ ନହେଲେ ରଦ୍ଦିକାଗଜର ଅଳିଆ କାହିଁକି ଖାଲି ବଢ଼ାଇବା ? କିନ୍ତୁ ମୋ' ଲେଖାରେ ତ ଖାଲି ସମକଳୀନ ଜୀବନର ପ୍ରଶ୍ନ ଖାଲି ଖୋଜିଥିଲା ତେବେ ତାହା କାହିଁକି ରାଜକିଶୋରଙ୍କ ହୃଦୟକୁ ସ୍ପର୍ଶ କଲାନାହିଁ ।

ରାଜକିଶୋର ପଟ୍ଟନାୟକଙ୍କ ସହ ପରିଚୟରୁ କୁଆଡ଼େ ଚାଲିଗଲି ! ହଁ, ସେଦିନ ସଭା ହେଉଥିଲା କଟକର ଶ୍ରୀରାମଚନ୍ଦ୍ର ଭବନରେ । ସଭାରେ ସଭାପତି ମୁଖ୍ୟ ଅତିଥିଙ୍କୁ ଭେଟି ମୋର ପରିଚୟ ଦେଲେ ଓ ମୋ ଲେଖା ଉପରେ ସିଦ୍ଧାନ୍ତ ଦେଇ ମୋର ଭବିଷ୍ୟତ ଉପରେ ଟିପ୍ପଣୀ କରିଥିବାରୁ କ୍ଷୋଭ ପ୍ରକାଶ କଲି । ସେତିକିବେଳେ ସେ ମତେ କହିଥିଲେ—"ଅପର ମନରେ ନିଜପ୍ରତି କରୁଣା ଉଦ୍ରେକ କରିବାକୁ ଚେଷ୍ଟା କରନ୍ତୁ ନାହିଁ । ଏକାକୀ ଛିଡ଼ା ହୁଅନ୍ତୁ । ନିଜ ଭିତରକୁ ଓ ବାହାରକୁ ଭଲ କରି ଦେଖନ୍ତୁ । ନିଜର ଖୋଳ ପୋପାଡ଼ି ଦେଇ ଲକ୍ଷ୍ୟ ସ୍ଥିର କରି ଆଗେଇ ଚାଲନ୍ତୁ । ଖାଲି ମନେ ରଖିବେ—ସମସ୍ୟା କି ଘଟଣା ବାସ୍ତବ ହେଲେବି ଯେମିତି ସେମିତି ଲେଖି ଦେଲେ ଗଳ୍ପ କି ଉପନ୍ୟାସ ହୁଏନା । ତାହା ସାହିତ୍ୟ ବି ହୁଏନା ।" ହୁଏତ ତାଙ୍କର ଏହି କଥାରେ ଥିଲା ମୋ' ପ୍ରଶ୍ନର ଉତ୍ତର । ଏହାପରେ ମଝିରେ ମଝିରେ ଦେଖାହେଲେ ସିଏ ମତେ ପଚାରନ୍ତି—"ଲକ୍ଷ୍ୟ ସ୍ଥିର କଲେଣି ? ଏକାକୀ କେତେବାଟ ଆଗେଇଛନ୍ତି ?" ପରେ ଦୈବଯୋଗରୁ ତାଙ୍କ ସହ ମୋର ପାରିବାରିକ ସମ୍ପର୍କ ସ୍ଥାପିତ





ହୋଇଛି । ମୋର ସହଧର୍ମିଣୀ ଶ୍ରୀମତୀ ରେଖା ଦାସ ତାଙ୍କର ଭାଣିଜୀ । ଏ ସମ୍ପର୍କ ପରେ ୧୯୮୦ ଡିସେମ୍ବରରେ ସେ ପୁଣି ମନେ ପକେଇ ଦେଇଥିଲେ, ''ଷ୍ଟେସନଟିଏ ସ୍ଥିର କରନ୍ତୁ—ତା'ପରେ ସବୁ ଠିକ୍ ହୋଇଯିବ ।'' ସେତେବେଳକୁ ମୁଁ ପ୍ରାୟ ପ୍ରତ୍ୟେକ ବିଭାଗରେ ଲେଖିବାକୁ ବେଳେବେଳେ ଉଦ୍ୟମ କରୁଥିଲି । ଆଜି ସେ (ରାଜକିଶୋର ପଟ୍ଟନାୟକ) ବଡ଼ ମାମୁଁ ଆଉ ନାହାନ୍ତି—ମାତ୍ର ମୋର ଷ୍ଟେସନ ଖୋଜା ବି ସରିନାହିଁ । ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ଲାଗି ମଧ୍ୟ ସମାଗ୍ରିକଭାବେ ଏ ଷ୍ଟେସନ ଖୋଜାର ଆବଶ୍ୟକତା ରହିଛି ।

୧୯୬୨ର ତାଙ୍କ କଥା ଯେ କୌଣସି ଘଟଣା ଯେତେ ବାସ୍ତବ ହେଲେ ବି ତାକୁ ଯେମିତି ସେମିତି ଲେଖିଦେଲେ ସାହିତ୍ୟ ହେବ ନାହିଁ ମୋ' ମନରେ ଅନେକ ସମୟରେ ଉଠିଛି । ସେ କହୁଥିଲେ ଯେ ଦୁଇ ଜଣ ଏକା କଥା କହିଲେ ବି ଜଣକ କଥା ସ୍ୱାଭାବିକ ମନେ ହେଲାବେଳେ ଅନ୍ୟଜଣକର କଥା ଅସ୍ୱାଭାବିକ ଲାଗିପାରେ । ଏହା କ'ଣ ପାଠକ/ଶୁଣିଲାବାଲା ଉପରେ ନିର୍ଭର କରେନା ? ପାଠକଙ୍କୁ ସ୍ୱାଭାବିକ ମନେ ହେଲା ପରି ଢଙ୍ଗରେ ସାହିତ୍ୟ ଲେଖା ହେବା ଦରକାର ବୋଲି ବୋଧହୁଏ ସେ ଭାବୁଥିଲେ । ୧୯୬୫ ଆରମ୍ଭରେ ଜଗତ୍‌ସିଂହପୁରସ୍ଥିତ ସ୍ୱାମୀବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟର ଏକ ବାର୍ଷିକ ଉତ୍ସବରେ ଶ୍ରୀଯୁକ୍ତ କାହ୍ନୁଚରଣ ମହାନ୍ତି 'କଥାଟିଏ କହୁଁ' ପ୍ରକାଶନଟିକୁ ଉନ୍ମୋଚନ କରି ତହିଁରେ ସନ୍ନିବିଷ୍ଟ ପ୍ରଥମ ଗଳ୍ପଟି ଉପରେ ଆଲୋଚନା କରି ଯେଇଆ କହିଥିଲେ । ସେ କହିଥିଲେ ଯେ ସାହିତ୍ୟ, ଅନ୍ତତଃ ଓଡ଼ିଆ ସାହିତ୍ୟ ଓଡ଼ିଶାର ସବୁ ଅଞ୍ଚଳ ଓ ସବୁ ଶ୍ରେଣୀର ପାଠକ ପାଠିକାଙ୍କ ମନକୁ ଛୁଇଁଲା ଭଳିଆ ଲେଖାହେବା ଦରକାର । ସେ ଗଳ୍ପଟିକୁ ମୁଁ ଲେଖିଥିବାରୁ କାହ୍ନୁବାବୁଙ୍କୁ କି ସେଦିନ ମୁଁ ପଚାରିଥିଲି ''ଲେଖାରେ ଆମ ମନରେ ଆବେଗକୁ ପ୍ରକାଶ କରିବା ନା ଆମ ଲେଖାକୁ ସମସ୍ତେ ଭଲ କହନ୍ତୁ/ଗ୍ରହଣ କରନ୍ତୁ ବୋଲି ଭାବିକି ଲେଖିବା ?'' ପରେ ମୋର ଏ ପ୍ରଶ୍ନର ଉତ୍ତର ଦେଇଥିଲେ ରାଜକିଶୋର । ସେ କହିଥିଲେ ଯେ ଆମେ ଯେଉଁ ସମାଜର ସେହି ସମାଜକୁ ଭଲଲାଗିଲା ପରି କଥା ନ କହିଲେ ଓ ସେହି ଅନୁସାରେ କାମ ନ ଦେଖେଇଲେ ଲୋକମାନେ ଆମ୍ଭକୁ ଭଲ କହିବେ । ରାଜୁବାବୁଙ୍କ ଧାରଣା (Perception) ର ଏହି ଲୋକମାନେ ବୁଦ୍ଧିଜୀବୀ ବା ଶିକ୍ଷିତ ସମାଜ କିମ୍ବା ବେତନଭୋଗୀ କି ପେଷାଦାର ନୁହଁନ୍ତି । ତାଙ୍କ ଲୋକମାନେ ଥିଲେ ଓଡ଼ିଶାର ସାଦାସିଧା ସାଧାରଣ ଓଡ଼ିଆ ।

ଓଡ଼ିଶା ଓ ଓଡ଼ିଆଙ୍କୁ ଆଖି ଆଗରେ ରଖି ଲେଖା ଲେଖିବା, କାମ କରିବା ଉପରେ ସେ ଏତେ ଗୁରୁତ୍ୱ ଦେଉଥିଲେ ପତ୍ରିକା ''ଚାବିକାଠି'' ପଢ଼ିଲାପରେ ସେ ପୁଣି ସେହି କଥା ଦୋହରାଇଥିଲେ । ତାଙ୍କ ସାନଭାଇ ଭଉଣୀ ମିଶି ପୁରୀଘାଟ ରୋଡ୍ ସ୍ଥିତ ସେଲ୍ଫ ଏଡୁକେଶନ



ଟ୍ରଷ୍ଟ ଗଢ଼ିଛନ୍ତି । ସେହି ଟ୍ରଷ୍ଟ ତରଫରୁ ଜେ. କ୍ରିଷ୍ଣମୂର୍ତ୍ତିଙ୍କର ଲେଖା ଓ କଥାକୁ ସମସ୍ତଙ୍କ ପାଖରେ ଅବିକଳ ଭାବେ ପହଞ୍ଚାଇବା ଲାଗି ସେହି ଟ୍ରଷ୍ଟ ପକ୍ଷରୁ 'ଚାବିକାଠି' ନାମକ ତ୍ରୈମାସିକ ପତ୍ରିକାଟିଏ ପ୍ରକାଶିତ ହେଉଥିଲା । ପତ୍ରିକାଟିର ମୁଖ୍ୟ ସମ୍ପାଦକ ଥିଲେ ରାଜୁବାବୁଙ୍କ ସାନ ଭଉଣୀ ସ୍ୱନାମଧନ୍ୟା ଔପନ୍ୟାସିକା ବସନ୍ତ କୁମାରୀ ପଟ୍ଟନାୟକ । ସେଥିରେ କୃଷ୍ଣମୂର୍ତ୍ତିଙ୍କ ଲେଖା ସାଙ୍ଗକୁ ସେହିଭଳିଆ ଅନ୍ୟାନ୍ୟ ଲେଖା ମଧ ରହୁଥିଲା । ସେହି 'ଚାବିକାଠି'ର ତୃତୀୟ ସଂଖ୍ୟା ପଢ଼ିସାରି ୫ । ୬ । ୧୯୯୫ ରେ 'ସବୁକଥାକୁ ଓଡ଼ିଶାର ମାପକାଠି (standard)ରେ ବୁଝିବାକୁ ପରାମର୍ଶ ଦେଇ ରାଜୁବାବୁ ଚିଠିଟିଏ ଲେଖିଥିଲେ—"ଲୋକ ବୁଝି ପାରିବା ଦରକାର । ନହେଲେ ସପୁରି, ପଣସ, ତାଳସଜ, ମଞ୍ଜା, ଭଣ୍ଡା, ଓଲୁଅ ଖାଇ ହେବନାହିଁ । କାରଣ କାଟିବା ତାଛିବା ଜଣାଥିବା ଦରକାର । ତା'ପରେ ରନ୍ଧାଜ୍ଞାନ ଥିବା ଦରକାର ।"

ଓଡ଼ିଆ ଓ ଓଡ଼ିଶା ପାଇଁ ତାଙ୍କର ନୈତିକ ଦାୟିତ୍ୱବୋଧର ଆଉ ଏକ ଦିଗ ମଧ ଥିଲା । କେଉଁଠି କିଛି ଭଲ, ଖରାପ ବା ଗର୍ହିତ ତର୍କଯୋଗ୍ୟ କଥା, କାମ ଘଟଣା ଦେଖିଲେ, ଶୁଣିଲେ ବା ପଢ଼ିଲେ ସାଙ୍ଗେ ସାଙ୍ଗେ ସମ୍ପୃକ୍ତ କଥା ସହୃଦୟ ବ୍ୟକ୍ତି/ସଂସ୍ଥା/ ଅନୁଷ୍ଠାନକୁ ସେ ପୋଷ୍ଟକାର୍ଡ଼ଖଣ୍ଡେ ଲେଖି ଲେଖି ପଠାଉଥିଲେ । ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ବିଭିନ୍ନ ସମସ୍ୟା ଉପରେ ମୋ ଅଫିସ୍‌ରେ କେତେବେଳେ କେମିତି ପୋଷ୍ଟକାର୍ଡ଼ ଚିଠି ତାଙ୍କଠାରୁ ମିଳିଛି । ସବୁକଥାରେ ଉପଯୁକ୍ତ ସବୁବେଳେ ଆବଶ୍ୟକ ପଦକ୍ଷେପ ନେବା ପ୍ରଚଳିତ ବ୍ୟବସ୍ଥାରେ ସମ୍ଭବ ନୁହେଁ । ମାତ୍ର ସମ୍ପୃକ୍ତ ବ୍ୟକ୍ତି/ଅନୁଷ୍ଠାନର ନିରବତା ତାଙ୍କୁ ଏଭଳି ଚିଠି ଲେଖିବାରୁ ନିବୃତ୍ତ କରି ପାରିନଥିଲା ଶେଷ ପର୍ଯ୍ୟନ୍ତ । ୧୯୯୬ରେ ସେ ବାର୍ଲି, ଶାଗୁର ପୌଷ୍ଟିକ ଗୁଣ ବିଷୟରେ ମୋ ଠାରୁ ଜାଣିବାକୁ ଏକ ଚିଠି ଲେଖିଥିଲେ । ତା'ପରେ ୧୯୯୬ ଅକ୍ଟୋବର ତାରିଖର ଦିନ "ସମ୍ବାଦ"ରେ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀଙ୍କର ଗାଈଦୁଧର ଉପାଦେୟତା ସମ୍ବନ୍ଧରେ ଲେଖା ପଢ଼ି ସେ ଓଡ଼ିଶା ଓ ଭାରତ ସରକାରଙ୍କୁ ପୋଷ୍ଟକାର୍ଡ଼ ଲେଖିଥିଲେ । ମତେ ମଧ୍ୟ ଏକ ପୋଷ୍ଟକାର୍ଡ଼ରେ ତା'ର ମର୍ମ ଲେଖିଥିଲେ । ତାଙ୍କ ଲେଖାର ସାରକଥା ଥିଲା ଯେ ସମାଜରେ ଏବେ ଦୁଇଟି ଶ୍ରେଣୀର ଲୋକ—ଗୋଟିଏ ହେଲା ବେତନ/ପେନ୍‌ସନ୍‌ଭୋଗୀ ଏବଂ ଅନ୍ୟଟି ଏହି ସୌଭାଗ୍ୟରୁ ବଞ୍ଚିତ ଭିକମାଗୁଥିବା ଶ୍ରେଣୀ । ଓଡ଼ିଶା ଭଳି ରାଜ୍ୟର ସାଧାରଣ ଲୋକଙ୍କ ପାଇଁ ଅଳ୍ପ ପଇସାରେ ସୁଷମଖାଦ୍ୟର ଏକ ଖାଦ୍ୟ ତାଲିକା (diet chart ) ଦେବା ଏକ ସାମାଜିକ କର୍ତ୍ତବ୍ୟ (social duty) ହୋଇ ପଡ଼ିଛି ବୋଲି ମତେ ସେହି ଚିଠିରେ ସେ ଲେଖିଥିଲେ । ଏଥିରେ ସାଧାରଣ ଓଡ଼ିଆଙ୍କ ସକାଂଶେ ଦରଦ ଯେତିକି, ନିଜର ଆର୍ଥିକ ସ୍ଥିତି ପାଇଁ, ଅନ୍ୟ

ମନରେ ନିଜପ୍ରତି ଦୟା ବା କରୁଣା ଉଦ୍ରେକ କରାଇବାକୁ ଚାହୁଁନଥିବା ସ୍ୱାଭିମାନର ସାଲିଶ ଭାବ ସେତିକି ଥିଲାଭଳି ମୋର ମନେ ହୋଇଛି । ତାଙ୍କର ସବୁକଥା ବା କାମ ସହିତ ମୋର ନିଃସର୍ତ୍ତ ସହମତି ସବୁବେଳେ ନଥିଲେ ବି ତାଙ୍କର ଏଭଳି ପରିବର୍ତ୍ତନ ମତେ ଦୁଃଖ ଦେଇଥିଲା ।

ତାଙ୍କର ଦେହାନ୍ତ ପରେ ତାଙ୍କ କଥାରେ ପ୍ରାସଙ୍ଗିକତା ତଥା ତାତ୍ପର୍ଯ୍ୟ ଆହୁରି ବଢ଼ିଯାଇଛି । ତାଙ୍କର ଏକାକୀତ୍ୱ, ନିଃସଙ୍ଗ ଜୀବନ, ସ୍ୱାଭିମାନ ସଙ୍ଗେ ସଙ୍ଗେ ଶେଷ ଜୀବନରେ ସାଲିଶ ମନୋଭାବ ମନରେ ନାନା ଦ୍ୱନ୍ଦ୍ୱ ସୃଷ୍ଟି କରୁଛି । ବେଳେବେଳେ ଲାଗୁଛି ସିଏ ନିଜେ କ'ଣ ଓଡ଼ିଆଙ୍କୁ, ଓଡ଼ିଶାକୁ ଓଡ଼ିଶୀ ମାପକାଠି (standard)ରେ ବୁଝିଥିଲେ ? ସିଏ ନିଜେ କ'ଣ ଏକ ଷ୍ଟେସନ ସ୍ଥିର କରି ପାରିଥିଲେ ? ପ୍ରଥମ ଲେଖା ପ୍ରକାଶ ପାଇବାର ପନ୍ଦର ବର୍ଷ ଭିତରେ ଅର୍ଥାତ୍ ବୟସ ପଇଁଚାଳିଶି ବର୍ଷ ହେବା ପୂର୍ବରୁ ସାହିତ୍ୟ ପାଇଁ ପୁରସ୍କାର ଦେବା ବା ନେବା ସ୍ୱାର୍ଥାନ୍ଧ ଲୋକଙ୍କୁ ଚିହ୍ନିଥିବା ଭଳି ସ୍ୱାଭିମାନୀ ରାଜକିଶୋର ମୃତ୍ୟୁ ଶଯ୍ୟାରେ ପଡ଼ିଥିଲା ବେଳେ ମୃତ୍ୟୁର ମାତ୍ର କୋଡ଼ିଏ ଦିନ ପୂର୍ବରୁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅତିବଡ଼ୀ ଜଗନ୍ନାଥ ପୁରସ୍କାର ଗ୍ରହଣ କଲେ । ଏ ସାଲିସ୍ ସେ କାହିଁକି କଲେ ମୁଁ ତାଙ୍କୁ ବଞ୍ଚିଥିଲା ବେଳେ ବୁଝି ପାରିନାହିଁ । ଏ ସାଲିସ୍ ଆହତ ଅଭିମାନର, ନିଃସଙ୍ଗ ମାନସିକ ନିଃସ୍ୱତ୍ୱର । ରାଜକିଶୋର ପଟ୍ଟନାୟକ, ଆମ ବଡ଼ମାମୁଁଙ୍କର ଏହି ସାଲିସି ପରେ ଆମେ ଯଦି କିଛି ଶିଖୁଁ ଆମେ ସମସ୍ତେ ଯଦି ଟିକିଏ ସଲଜ ହେଉ ତେବେ ହୁଏତ ଦୁର୍ବାର ଓଡ଼ିଆ ପ୍ରେମୀ, ପ୍ରଚଣ୍ଡ ସ୍ୱାଭିମାନୀ ତାଙ୍କ ଆତ୍ମା ନିଜର ପରାଜୟ ଭିତରେ ଉଲ୍ଲସିତ ହେବ, ଗୌରବାନ୍ୱିତ ହେବ ।

ଭୁବନେଶ୍ୱର



# ଅନନ୍ୟ ସାଧାରଣ ମଣିଷର ମହାଯାତ୍ରା

ଗିରିଜା ଭୂଷଣ ପଟ୍ଟନାୟକ

ସକାଳୁ ନରେନ୍ଦ୍ର (ପ୍ରସାଦ ଦାସ) ଖବର ଦେଲେ । ରାଜକିଶୋର ପଟ୍ଟନାୟକ ଆଉ ନାହାନ୍ତି । କାଲି ରାତିରେ ବିଳମ୍ବିତ ପ୍ରହରରେ 'ପଂଝୁରୀ ପକ୍ଷୀ' ପଂଝୁରୀ ଛାଡ଼ି ଉଡ଼ିଯାଇଚି । ମାତ୍ର ବିଗତ ସପ୍ତାହରେ ସାହିତ୍ୟ ଏକାଡେ଼ମୀ ତାଙ୍କୁ ସମ୍ମାନିତ କରିଥିଲା, ବହୁ ବିଳମ୍ବରେ । ରାଜକିଶୋର 'ଜୀବନ ସଂଧ୍ୟା'ରେ ପହଞ୍ଚି ସାରିଥିଲେ । ବୟସ ୮୦ ବର୍ଷ ହୋଇଥିଲା । ଗଲା କେତେ ବର୍ଷ ହେଲା ସେ ଆଉ କଲମ ଧରି ପାରୁ ନଥିଲେ । ଜୀବନବ୍ୟାପୀ ସେ ଥିଲେ ଅଗ୍ନି [illegible] ତାଙ୍କ ପାଖରେ ହାର ମାନିଥିଲା । ଚିରକାଳ ସେ ରହିଗଲେ ସେଇପରି ଅବିନୀତ, ରୁକ୍ଷ ଏବଂ ଉଦାର । ବାପା ଶ୍ରୀବତ୍ସ ପଟ୍ଟନାୟକ ଆସିଥିଲେ [illegible]ସେଲକୁଣ୍ଡ (ବର୍ତ୍ତମାନ [illegible]ଜନଗର) ପାଖ ନୂଆଗାଁରୁ । ନଅ ଭାଇଙ୍କ ମଧ୍ୟରୁ ଲକ୍ଷ୍ମୀ ନାରାୟଣ ([illegible] ପଟ୍ଟନାୟକ ଓ ବିଜୁ ପଟ୍ଟନାୟକଙ୍କ ବାପା) କଟକରେ ବସତି ସ୍ଥାପନ କରିଥିଲେ । ଶ୍ରୀବତ୍ସ ପଟ୍ଟନାୟକ ପେଶାରେ ଇଂଜିନିଅର କିନ୍ତୁ ନିଶା ଥିଲା ବଗିଚା କରିବା । ଆଜି [illegible] ପାଖରେ ତାଙ୍କର ବଗିଚା ହତଶ୍ରୀ ଅବସ୍ଥାରେ ରହିଛି । ତାଙ୍କୁ ଦେଖି ଲୋକେ ସମୟ କଳନା କରୁଥିଲେ । 'ପଟ୍ଟନାୟକଙ୍କ ସାଇକେଲ ଦେଖାଗଲାଣି.... [illegible] ହେଲେ [illegible] ବାଜିଲାଣି' । ଲକ୍ଷ୍ମୀନାରାୟଣ ବ୍ରାହ୍ମ ହୋଇ ଯାଇଥିଲେ [illegible]ହେଁ ଶ୍ରୀବତ୍ସ ସେଥିରୁ ମୁକ୍ତ ରହିଥିଲେ । କିନ୍ତୁ [illegible]ପାଢ଼ିରେ କୃଷ୍ଣମୂର୍ତ୍ତିଙ୍କର ଦର୍ଶନ ଓ ଚିନ୍ତାଧାରା ଏକ ପରିବାରକୁ ସଂକ୍ରମିତ କରିଥିଲା । ରାଜକିଶୋର ପଟ୍ଟନାୟକ କିନ୍ତୁ କୌଣସି ଧାରାରେ ପଡ଼ି [illegible] ନାହାନ୍ତି । ତାଙ୍କ [illegible]' ସ୍ୱତନ୍ତ୍ର ଏବଂ ଅନନ୍ୟ ସାଧାରଣ । ଲେଖା ମଧ୍ୟ ଠିକ୍ [illegible] ନଥିଲା ପ୍ରିୟାପ୍ରୀତି ତୋଷଣ, ନ ଥିଲା କୁର୍ଣ୍ଣିସର ମଧୁର ଆସ୍ୱାଦନ । ଥିଲା ଦୁର୍ବାର ଆହ୍ୱାନ । 'ସାହିତ୍ୟ ଏକାଡେ଼ମୀକୁ ମୋର ଆହ୍ୱାନ ଯଦି ସେମାନେ ଆଗାମୀ ଦଶନ୍ଧିରେ ଏଇଭଳି ଖଣ୍ଡିଏ ପୁସ୍ତକ ପ୍ରକାଶନ କରି ପାରିବେ ।' ଏଇଥିଲା ନିଜର କୌଣସି ଏକ ବହିର ମୁଖବନ୍ଧରେ ତାଙ୍କର ଆହ୍ୱାନ । ଏତ ଖାଲି ସାହିତ୍ୟ ଏକାଡେ଼ମୀ ପ୍ରତି ଆହ୍ୱାନ ନୁହେଁ, ଏ ଆହ୍ୱାନ ସମଗ୍ର ଜାତିକୁ ।

ରାଜକିଶୋର ପାଠ ପଢ଼ିଥିଲେ ବିଜ୍ଞାନରେ । ପରେ ଆଇନରେ ସ୍ନାତକ ହୋଇ ସେ ହେଲେ ଆଡ଼ଭୋକେଟ ଆଇନ ବ୍ୟବସାୟ ପେଶା । ଲେଖିବା ଥିଲା ନିଶା । କାହାରି ଉପରେ ନିର୍ଭର କରିବେ ନାହିଁ, କାହାରିକୁ ଖୋସାମତ କରିବେ ନାହିଁ, ପୁରସ୍କାରଟିଏ





ପାଇଁ, ଉପାଧିଟିଏ ପାଇଁ କାହାରି ଖିଦ୍‌ମତ୍ କରିବେ ନାହିଁ ସେଇ ଯୋଗୁଁ ଓକିଲାତି କଲେ । ଦୁର୍ବିନୀତ ହୋଇ ରହିବା ପାଇଁ ସେ ଅନେକ ଦିନ ଧରି ବିବାହ ମଧ୍ୟ କରି ନଥିଲେ । ପରିଣତ ବୟସରେ ସେ ଶୈଳବାଳା ଦେବୀଙ୍କୁ ବିବାହ କଲେ । କିନ୍ତୁ ରାଜକିଶୋର ତ କାହାକୁ ଛାଡ଼ିବାକୁ ପ୍ରସ୍ତୁତ ନୁଅନ୍ତି । ''ସେମାନେ ଗାଁ ମଣିଷ ହୋଇଥିଲେ ଓଢ଼ଣା ଦେଇଥାନ୍ତେ କିନ୍ତୁ ସେ ତ ସଭ୍ୟ ଲୋକ । ସେ ଓଢ଼ଣା ଦିଅନ୍ତି ନାହିଁ । ସେମାନେ ଗୋଡ଼ ଦୁଇଟିକୁ ରୁମାଲରେ ଘୋଡ଼ାଇ ଦିଅନ୍ତି ।'' ରାଜକିଶୋରଙ୍କ ''କଳ୍ପନାର ଫୁଲ'' ଫୁଟି ନାହିଁ ସାଧାରଣ ଭାବରେ । 'ପଥର ଡିମା' ଉପରେ ଦେଇ ତାଙ୍କ ଜୀବନର ''ହାଟ ସଉଦା'' ଚାଲିଥିଲା ।

ଏହି କିଛି ବର୍ଷ ତଳର କଥା । ରାଜକିଶୋର ଖବର କାଗଜରେ ଏକ ବିବୃତି ଦେଲେ । ସେ ଖଣ୍ଡିଏ ବହି ଛପାଇବାକୁ ଚାହାନ୍ତି । କିନ୍ତୁ ଆର୍ଥିକ ସମ୍ବଳ ନାହିଁ । ଶୁଭେଚ୍ଛୁମାନଙ୍କ ସାହାଯ୍ୟ ଲୋଡ଼ିଥିଲେ । ଯେଉଁମାନେ ସାହାଯ୍ୟ ଦେଇଥିଲେ ସେମାନଙ୍କ ଭିତରେ ମୋ ପରିବାର ଅନ୍ୟତମ । କିନ୍ତୁ ସେ ଅର୍ଥ [illegible] ଧନ୍ୟବାଦ, ଦାନ ଅର୍ଥ କୁଳାନ ହେଲା ନାହିଁ । ଆର୍ଥିକ ସାହାଯ୍ୟ ଆବଶ୍ୟକ ପଡ଼ିଲା ନାହିଁ । ସେ ଅର୍ଥ ଫେରାଇ ଦେଇଥିଲେ ସମସ୍ତଙ୍କୁ ପୁଣି ମନିଅର୍ଡ଼ର ଖର୍ଚ୍ଚ କରି । 'ଅସ୍ତରନ୍ତି' ରେ କାହାଣୀ ତାଙ୍କର 'ସପନ କୁହୁଡ଼ି' 'ଭସାମେଘ' ପରି ଭାସିଯାଇଛି ଜୀବନର କାହାଣୀ ।

ଭଉଣୀ ବସନ୍ତ କୁମାରୀ ମଧ୍ୟ ଲେଖିକା । ଆନ୍ତରିକ ଭାବରେ ମମତା ଖୁବ୍ । କିନ୍ତୁ ସମସ୍ତଙ୍କ ଠାରୁ ସେ, ଏକାକୀ, ନିଃସଙ୍ଗ । ସ୍ତ୍ରୀଙ୍କୁ ଏକାକିନୀ ହେବାକୁ ହୁଏତ ଦେଇ ନାହାନ୍ତି କିନ୍ତୁ ୫୦ର ଊର୍ଦ୍ଧ୍ୱ ବହିର ଲେଖକ ଅତ୍ୟନ୍ତ ସାଧାରଣ ହୋଇ ରହିଯାଇଛନ୍ତି ସେ ଚିରକାଳ ।

ସମୟ ଅତିକ୍ରାନ୍ତ ହୋଇଛି । ରାଜକିଶୋର ପାସୋରା ହୋଇଯାଇଛନ୍ତି ସମସାମୟିକ ପୀଢ଼ିରୁ । କିନ୍ତୁ ସେ ସମ୍ମାନର ପାତ୍ର ହୋଇଛନ୍ତି ବହୁ [illegible] । ସେଇଯୋଗୁଁ ତାଙ୍କର ମୃତ୍ୟୁରେ ଖାଲି ଶୋକ [illegible] କାହାରି ଲୁହ [illegible] ରବି ମହାପାତ୍ର, ରବି ସିଂ, ମନୋରମା ମହାପାତ୍ର ପ୍ରଭୃତି ।

ରାଜକିଶୋରଙ୍କର ପରଲୋକ [illegible] ସଞ୍ଜାନରେ । ମୃତ୍ୟୁ ଆସିଛି, ଧୀରେ ଧୀରେ ଏବଂ ସେ ଆଖି ବୁଜି ଦେଇଛନ୍ତି । 'କଳା ପରଦା' ନଇଁ ଆସିଛି । ରାଜକିଶୋର ଅନେକ 'ସ୍ମୃତିର ମଶାଣି ।' ସେ ଅଧ୍ୟାୟର ଶେଷ ଯବନିକା ପଡ଼ିଯାଇଛି । ସେ ପାଲଟି ଯାଇଛନ୍ତି ଇତିହାସ, ଆମର ଉଜ୍ଜ୍ୱଳ ପରମ୍ପରା ହୋଇ ।

ଦି ୟୁନିଭର୍ସ, ମୈତ୍ରିସରଣୀ, କଟକ-୧





# ନୈତିକ ପୁରୁଷ ରାଜକିଶୋର ପଟ୍ଟନାୟକ

**ରଣଜିତ୍ ସିଂହ**

ସ୍ୱର୍ଗତଃ ରାଜକିଶୋର ପଟ୍ଟନାୟକ ମୋର ଆତ୍ମୀୟ ନଥିଲେ, ସମବୟସ୍କ ନଥିଲେ, କୌଣସି ସମ୍ପର୍କୀୟ ବା ସହପାଠୀ ନଥିଲେ, ତଥାପି ଥିଲେ ଖୁବ୍ ଅନ୍ତରଙ୍ଗ, ଖୁବ୍ ଆପଣାର । ଏ ଦୁନିଆରେ ଏପରି କେତେକ ମଣିଷ ଥାନ୍ତି, ଯେଉଁମାନଙ୍କ ପାଇଁ ଇତିହାସ ଲେଖାହୁଏନା, ମାତ୍ର ସେମାନେ ଐତିହାସିକ ଚରିତ୍ରଠାରୁ ଆହରି ମହାନ୍ ଆହୁରି ବିରାଟ ହୋଇଥାନ୍ତି । ଏପରି ଏକ ଚରିତ୍ରର ଅଧିକାରୀ ଥିଲେ ରାଜକିଶୋର ପଟ୍ଟନାୟକ, ଯାହାଙ୍କୁ ସମସ୍ତେ ସସ୍ନେହରେ 'ରାଜୁବାବୁ' ବୋଲି ଡାକୁଥିଲେ । ତାଙ୍କ ସହିତ ଯେ ଥରେ ଆଳାପ କରିବାର ସୁଯୋଗ ପାଇଛି, ସମ୍ପର୍କର ସେତୁ ଆପେ ଆପେ ଗଢ଼ି ଉଠିଛି । ଯେ ଥରେ ତାଙ୍କର ବିଶାଳ ହୃଦୟ ଓ ମହନୀୟ ଚରିତ୍ରର ସଂସ୍ପର୍ଶରେ ଆସିଛି, ସେହି କେବଳ ଜାଣିପାରିବ ତାଙ୍କ ଚରିତ୍ରର ମହନୀୟତା ।

ମୁଁ ମାଟ୍ରିକ ପଢ଼ିବା ବେଳେ ତାଙ୍କର ସନ୍ଧ୍ୟା ପ୍ରକାଶିତ 'ପ୍ରେମର ନିୟତି' ବାହାରି ଥାଏ । ବୋଧ ହୁଏ ୧୯୪୫/୪୬ ମସିହା କଥା । ମୋର [illegible] ବୟସରେ ସେ ବହିଟି ମତେ ସ୍ୱପ୍ନର [illegible] ଭିତରକୁ ନେଇଥାଏ । ମନେହେଲା, [illegible] କି'ଣ ପ୍ରେମର ତର୍ଜମା କରିବାକୁ ଯାଇ ଅବିକଳ ମୋରି ମନ କଥାଗୁଡାକ ଲେଖିଛନ୍ତି ସେ । ସତେ ଯେପରି ତରୁଣ ହୃଦୟର ଶିକାଳି [illegible] ପରିପ୍ରେକ୍ଷୀରେ [illegible] ଅତି ନିଖୁଣ ଭାବରେ ବୟାନ କରି ଥିଲେ ସେ । [illegible] ଧାଡ଼ି [illegible] ତରୁଣୀମାନେ ଉଦ୍ଧାର କରି ପତ୍ର ଲେଖୁଥିଲେ । ବହିଟିର ଅନ୍ୟ ଦୁଇଜଣ ଲେଖକ ଥିଲେ ବି ରାଜୁବାବୁଙ୍କର ନିଖୁଣ ଉପସ୍ଥାପନା ଖୁବ୍ ଉଚ୍ଚକୋଟୀର ହୋଇଥିଲା ।

ମୁଁ ଯେତେବେଳେ ରେଭେନ୍ସାରେ ନାମ ଲେଖାଇଲି, 'ଘାସ' ଗଳ୍ପଟି ପଢ଼ିବାର ସୁଯୋଗ ପାଇଲି । ଏହା ପାଠ୍ୟ ପୁସ୍ତକର ଅନ୍ତର୍ଗତ ଥିଲା । ଘାସ ଗଳ୍ପଟି ସେ ଯୁଗ ଓ ଏ ଯୁଗର ଏକ ଶ୍ରେଷ୍ଠ ଗଳ୍ପ, ଏଥିରେ ସନ୍ଦେହ ନାହିଁ । ଗଳ୍ପ ମାଧମରେ ଲେଖକ ଘାସକୁ ମହାଦ୍ରୁମ ଠାରୁ ଅଧିକ ମହାନ୍ ବୋଲି ବର୍ଣ୍ଣନା କରି କହିଛନ୍ତି ଯେ, ମହାଦ୍ରୁମ ଝଡ଼ ଝଞ୍ଜାରେ ଟଳି ପଡ଼ିବ, ମାତ୍ର ଘାସ ସେମିତି ରହିଛି ରହିଥିବ । ଏହି ଦର୍ଶନ ଭିତରେ ଭରିରହିଛି ଭଙ୍ଗା ଗଢ଼ା ଦୁନିଆର ଏକ ଦୁରନ୍ତ ସତ୍ୟ । ଏହି ସତ୍ୟର ବିଲୟ ହେବ ନାହିଁ ଓ କୌଣସି





ସମ୍ପାଦକ ଏହି ଗଳ୍ପଟିକୁ ଯୋଗ ନକରି ପାଠ୍ୟ-ପୁସ୍ତକ ସଂକଳନ କରି ପାରିବେ ନାହିଁ।

ସେ ଥିଲେ ଏକାଧାରରେ ଗାଳ୍ପିକ, ଔପନ୍ୟାସିକ, ଦାର୍ଶନିକ ଓ ଆଇନଜ୍ଞ। ପରବର୍ତ୍ତୀ ଜୀବନରେ ତାଙ୍କର ଅସଂଖ୍ୟ ବହି ପଢ଼ି ମୁଁ ତନ୍ମୟ ହୋଇଛି, ତାଙ୍କର ଅଜ୍ଞାତରେ ତାଙ୍କ ଲେଖାର ପ୍ରେରଣା ମତେ ମଧ୍ୟ ଲେଖକ କରିଛି। ସମୟାନୁକ୍ରମେ ମୁଁ ତାଙ୍କ ସଂସ୍ପର୍ଶରେ ଆସିଛି। ଘନିଷ୍ଠତା ବଢ଼ିଛି ମୁଁ ମୁଗ୍ଧ ହୋଇ ତାଙ୍କ କଥା ଶୁଣିଛି, ବହୁ କଥା ଶିଖିଛି।

ସେ ଯେତେବେଳେ ଆସନ୍ତି ପୁରୁଣା ସାଇକେଲ ଚଢ଼ି ମତେ ଦୁଃଖ ଲାଗେ। ଏତେ ବଡ଼ ଓକିଲ, ଏତେ ବଡ଼ ଲେଖକ, ଏତେ ବଡ଼ ଖାନଦାନୀ ଘର, ଅଥଚ ସ୍କୁଟରଟିଏ ନାହିଁ। ସାଇକେଲ ଧରି କଟକ ରାଜରାସ୍ତାରେ ଗଲାବେଳେ କେହି ଚିହ୍ନି ପାରିବେ ନାହିଁ ଯେ, ଏପରି ଏକ ସମ୍ମାନାସ୍ପଦ ବ୍ୟକ୍ତି ସାଧାରଣ ମଣିଷଟିଏ ପରି ଯାଉଛନ୍ତି ବୋଲି।

ତାଙ୍କ ଲେଖକ ଜୀବନର [illegible] କରିବାକୁ ଅସମର୍ଥ, ଆଜି ମଧ୍ୟ ତାହା ଉଲ୍ଲେଖ କରିବା ଅପ୍ରାସଙ୍ଗିକ। ଆଜି ତାଙ୍କୁ ସ୍ମରଣ କରିବାର ବେଳ, ଲୁହ ଢାଳିବାର ବେଳ। ଭବିଷ୍ୟତରେ ତାଙ୍କ ସାହିତ୍ୟ ଉପରେ କେତେ ଗବେଷଣା ହେବ, କେତେ ତରୁଣ ସାହିତ୍ୟିକ ପି.ଏଚ୍. ଡି ଲାଭ କରିବେ, କେତେ ସାହିତ୍ୟ ଆସରରେ ତାଙ୍କର ସାହିତ୍ୟ-କୃତିର ବିଷଦ୍ ଆଲୋଚନା ହେବ, ମାତ୍ର ତାଙ୍କ ଜୀବିତ ଅବସ୍ଥାରେ ତାଙ୍କୁ ସରକାରୀ ବା ବେସରକାରୀ ସ୍ତରରେ କେହି ସ୍ୱୀକୃତି କରି ନାହାନ୍ତି। ତାଙ୍କର ଶେଷ ଅବସ୍ଥାରେ, ହୁଏତ କିଛି ସମ୍ମାନ ବା ଉପାୟନ ମିଳିଥିଲେ ସୁଦ୍ଧା ତାହା ସେ ଅନୁଭବ କରି ପାରି ନାହାନ୍ତି।

ମୁଁ ଭଲଭାବରେ ଜାଣେ, ସେ କେବେ କୌଣସି ସମ୍ମାନ ବା ପୁରସ୍କାର ପଛରେ ଗୋଡ଼ାଇ ନଥିଲେ ବା ସମାଜର ଶୀର୍ଷାସନ ପାଇଁ ଲାଳାୟିତ ନଥିଲେ। ଗୋଟିଏ ପ୍ରକାର ପୋଷାକ ([illegible] ସାର୍ଟ), ଗୋଟିଏ ପ୍ରକାର ଜୋତା (ଚପଲ) ଗୋଟିଏ ପ୍ରକାର ଖାଦ୍ୟ (ଚାହା), ଗୋଟିଏ ପ୍ରକାର ସବାରୀ (ସାଇକେଲ), ଗୋଟିଏ ଜୀବନାଦର୍ଶ (ସତ୍ୟକଥନ) — ଏହାହିଁ ଥିଲା ତାଙ୍କର ଦୈନନ୍ଦିନ ଜୀବନର ପ୍ରବହମାନ ଗତି।

ତାଙ୍କ ସହିତ ଆଳାପ କଲାବେଳେ ତାଙ୍କର ଅନ୍ତରର ଶୁଦ୍ଧତା ଓ ନିଷ୍କପଟତା ଖୁବ୍ ଉଜ୍ଜ୍ୱଳ ହୋଇ ପ୍ରତିଭାତ ହୋଇଥାଏ। ତାଙ୍କର ସାହିତ୍ୟର ପ୍ରଶଂସା କଲା ବେଳେ ସେ କଥାର ମୋଡ଼କୁ ବଦଳାଇ ଦିଅନ୍ତି। କାହାରି ଚାଟୁବାକ୍ୟ ଶୁଣିବାକୁ ସେ କଦାପି ପ୍ରସ୍ତୁତ ନଥିଲେ। ଏହାହିଁ ତାଙ୍କ ଚରିତ୍ରର ଶୁଦ୍ଧତା ଓ ପବିତ୍ରତା।

ଲେଖକ ଜୀବନ ବାହାରେ ତାଙ୍କର ଆଇନଜ୍ଞ ଜୀବନ ଅତି ଉଚ୍ଚକୋଟୀର ଥିଲା। ତାଙ୍କର ସହକର୍ମୀଙ୍କ ମଧ୍ୟରେ ସେ ଥିଲେ ଖୁବ୍ ଆଦରଣୀୟ। ବିଚାରପତିଗଣ ତାଙ୍କୁ ଖୁବ୍



ସମ୍ମାନ ଦେଇ ଫ୍ରଣ୍ଟ ଲାଇନ୍‌ରେ ବସାଇ ଥିଲେ । ଆଇନ ବିଷୟରେ ତାଙ୍କର ଧାରଣା (Concept) ଖୁବ୍ ପ୍ରାଞ୍ଜଳ ଓ ନିର୍ଭୁଲ ଥିଲା । ଭାରତୀୟ ସିଭିଲ କୋଡ଼ର ଧାରାଗୁଡ଼ିକ ତାଙ୍କର ମୁଖସ୍ଥ ଥିଲା । ରେକର୍ଡ଼ ଦେଖି ସେ କହି ପାରୁଥିଲେ, କେସ୍‌ଟିର ମେରିଟ୍ ଅଛି କି ନାହିଁ । ମୁଁ ଥରେ ମୋର ଗୋଟିଏ ଜମିବାଡ଼ି ସଂକ୍ରାନ୍ତିୟ କେସ୍ ବିଷୟରେ କହିଲା ବେଳେ, ସେ କହିଲେ—ମୁଁ କଚେରୀରୁ ରେକର୍ଡ଼ ଦେଖି ଆସେ । ତୁମକୁ କହିବି । ସତକୁ ସତ ଠିକ୍ ତା ପରଦିନ କେସ ରେକର୍ଡ଼ ପଢ଼ି ପ୍ରେସ୍ ଦୋକାନରେ (ଓଡ଼ିଶା ଜଗନ୍ନାଥ କମ୍ପାନୀ) କହିଲେ ଯେ ମୁଁ ଏ କେସ୍‌ରେ ନିଶ୍ଚୟ ହାରିଯିବି । କାରଣ ମୋର ଅଭିଯୋଗ ପତ୍ର (Plaint)ଟି ଠିକ୍ ଭାବରେ ଲେଖା ହୋଇ ନାହିଁ । ମୋର ଓକିଲ କେବଳ ଇଜ୍‌ମେଣ୍ଟ ରାଇଟ୍ ବଳରେ କେସ୍ କରିଛନ୍ତି । କିନ୍ତୁ ଏହା ପ୍ରମାଣ କରିବା ବଡ଼ କଷ୍ଟ । ବିପକ୍ଷ ପାର୍ଟି ଏହା ସୁଯୋଗ ନେଇ ବିବାଦୀୟ ଜାଗାକୁ ତାଙ୍କର ନିଜସ୍ୱ ବୋଲି କହିବାର ଅଧିକାର ଯାଚି କରି ଦିଆହୋଇଛି । ମୁଁ ତାଙ୍କ କଥା [illegible] ଓକିଲଙ୍କୁ ନିଯୁକ୍ତ କରିଥିଲେ ସୁଦ୍ଧା ଶେଷରେ ମୁଁ ହାରି ଯାଇଥିଲି । ସେ ଯାହାହେଉ, ତାଙ୍କର ଆଇନ୍ ସଂକ୍ରାନ୍ତରେ ବ୍ୟୁତ୍ପତ୍ତି ଅତି ଉଚ୍ଚମାନର, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ସେ କିଛି ବର୍ଷ ଆଇନ କଲେଜରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ ।

ତାଙ୍କର ସୁଗୁଣାବଳୀର ସୂଚୀପତ୍ର [illegible] ଅସମ୍ଭବ । କାରଣ ତାଙ୍କର ଏତେ ସୁଗଣାବଳୀ ଥିଲା ଯେ ତାହା ଗୋଟିଏ ଲେଖା ମାଧ୍ୟମରେ ପ୍ରକାଶ କରି ହେବ ନାହିଁ । ଗୋଟିଏ କଥା ନ ଲେଖି ରହି ପାରୁନି । ତାହା ହେଲା, [illegible] ଚିଠି ପତ୍ର । ସେ ପତ୍ର ଲେଖିଲା ବେଳେ [illegible] ଗୋଟିଏ ରିପ୍ଲାଇ କାର୍ଡ଼ ଯୋଡ଼ିଥାନ୍ତି । [illegible] ଚିଠି ଲେଖିଲା ବେଳେ, ମତେ ଖର୍ଚ୍ଚ [illegible]କୁ ପଡ଼େନାହିଁ ।

ତାଙ୍କର ବ୍ୟକ୍ତିତ୍ୱ [illegible] । ଜୀବନଧାରା [illegible] ନୈଷ୍ଠିକ । ଜ୍ଞାନରେ ଥିଲେ ବୁଦ୍ଧ, ନିଃସ୍ୱତାରେ ଥିଲେ ଶିବ [illegible] ଥିଲେ ଶାହାଜାହାନ୍ । ତାଙ୍କର ଗୁଣାବଳୀକୁ ଅଧାରିତ କରି, କିଛି ଲେଖିବାର, [illegible] ନାହିଁ । ମୋର ସାଧାରଣ-ଧାରଣାଠୁ ବହୁ ଉର୍ଦ୍ଧ୍ୱରେ ସେ ରହିଥିଲେ ଓ ରହିଥିବେ ମୋର ଜୀବନ କାଳ ପର୍ଯ୍ୟନ୍ତ ।

ବୁଢ଼ୀ ଠାକୁରାଣୀ କଟକ-୨

ତା ୩୧-୩-୯୭







# ସ୍ୱାଭିମାନୀ କଥାକାର ରାଜକିଶୋର

ଏଲୋରା ପଟ୍ଟନାୟକ

ଆଧୁନିକ ଓଡ଼ିଆ ସାହିତ୍ୟକୁ ଯେଉଁ କେତେଜଣ ପ୍ରତିଭାଧର ସ୍ରଷ୍ଟା ନିଜର ସାଧନା ବଳରେ ସମୃଦ୍ଧ କରିଯାଇଛନ୍ତି ସେମାନଙ୍କ ମଧ୍ୟରେ ବର୍ଷିଆନ କଥାକାର ରାଜକିଶୋର ପଟ୍ଟନାୟକ ଅନ୍ୟତମ । ଆଇନଜୀବୀ ହୋଇଥିବାରୁ ନିଜର ଜୀବନବ୍ୟାପୀ ତିକ୍ତମଧୁର ଅନୁଭୂତି ସବୁକୁ ସ୍ପଷ୍ଟ ଏବଂ ନିର୍ଭୀକ ଭାବରେ ପ୍ରକାଶ କରିଛନ୍ତି । ସେଥିପାଇଁ ସେ ବହୁବାର ସମସ୍ୟା ଘେରରେ ପଡ଼ିଛନ୍ତି ଏବଂ କିଛି ପୁରସ୍କାର ପାଇବାରୁ ବଞ୍ଚିତ ହୋଇଛନ୍ତି । ତଥାପି ସେ କେବେ ପଳାୟନବାଦୀ ହୋଇ ନିଜ ଆତ୍ମସମ୍ମାନକୁ ବଳି ଦେବାକୁ ପସନ୍ଦ କରିନାହାନ୍ତି । ପ୍ରଶଂସା ପାଇବାକୁ ସେ କେବେ ବି ଲାଳାୟିତ ନଥିଲେ । ସେ ଥିଲେ ଜଣେ ସ୍ୱାଭିମାନୀ ନୀରବ ସାଧକ ।

ସ୍ୱର୍ଗତ ରାଜକିଶୋର ୧୯୧୬ ମସିହା ଏପ୍ରିଲ୍ ୮ ତାରିଖ ଦିନ କଲିକତା ମହାନଗରୀର ୬୭ ନମ୍ବର ଗ୍ରେଷ୍ଟ୍ରିଟରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ତାଙ୍କର ପୈତୃକ ବାସସ୍ଥାନ ହେଉଛି ଗଞ୍ଜାମ ଜିଲ୍ଲାର ରସୁଲକୁଣ୍ଡା ଅଞ୍ଚଳରେ । ଜନନାୟକ ବିଜୁ ପଟ୍ଟନାୟକଙ୍କ ପିତା ଲକ୍ଷ୍ମୀ ନାରାୟଣ ଏବଂ ଶ୍ରୀବତ୍ସ ପଟ୍ଟନାୟକ ଥିଲେ ଦୁଇ ଭାଇ । ପିତା ଶ୍ରୀବତ୍ସ ପଟ୍ଟନାୟକ ଏବଂ ମାତା ସୁନ୍ଦରମଣି ପଟ୍ଟନାୟକ ପିଲାଟି ଦିନରୁ ରାଜକିଶୋରଙ୍କୁ ଜଣେ ସ୍ପଷ୍ଟବାଦୀ, ନିର୍ଭୀକ ମଣିଷ କରି ଗଢ଼ିଥିଲେ । ପିତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ ରାଜକିଶୋରଙ୍କ ଉପରେ ପଡ଼ିଥିଲା ।

ରାଜକିଶୋର ବାଲ୍ୟକାଳ କଲିକତାରେ କଟାଇବା ପରେ କୈଶୋର ଜୀବନରେ ଫେରି ଆସିଥିଲେ କଟକକୁ ଏବଂ ରେଭେନ୍ସା କଲିଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ । ତାପରେ ରେଭେନ୍ସା ମହାବିଦ୍ୟାଳୟରୁ ବିଜ୍ଞାନରେ ସ୍ନାତକ ଉପାଧି ଲାଭ କରି ଥିଲେ । ସେ କେତେ ସ୍ୱାଭିମାନୀ, ଗୋଟିଏ ଛୋଟ ଘଟଣାକୁ ଲକ୍ଷ୍ୟ କଲେ ସହଜରେ ଜାଣି ହେବ । ସେ କେବଳ ଜଣେ ଭଲ ଛାତ୍ର ନଥିଲେ, ସେ ଥିଲେ ଜଣେ ଭଲ ସାଇକେଲ୍ ରେସ୍ ରେକର୍ଡ଼ଧାରୀ ଏବଂ ଫୁଟବଲ ଖେଳାଳୀ । ୧୯୩୪ ମସିହାରେ ରେଭେନ୍ସା କଲେଜ୍‌ର ସିନିୟର ଫୁଟବଲ୍ ଦଳରେ ରାଇଟ୍ ହାପ୍ ଭାବରେ ୩ ବର୍ଷ ଖେଳି ନିଜର କ୍ରୀଡ଼ା ନୈପୁଣ୍ୟର ପରିଚୟ ଦେଇଛନ୍ତି । ୧୯୩୭ରେ ତାଙ୍କ ଦଳ ଲିଗ୍ ସିଲ୍‌ଡ୍ ପାଇଥିଲା । ଫଟୋ ଉଠାଇଲା

ବେଳେ ସେ ସମୟର ପ୍ରଫେସର ଡଃ, ବଳଭଦ୍ର ପ୍ରସାଦ ଏବଂ କ୍ୟାପଟେନ୍ ନୀଳମଣି ମହାନ୍ତି ରାଜକିଶୋରଙ୍କୁ ବସିବାକୁ ଚୌକି ନ ଦେଇ ଭୈରବ ଚନ୍ଦ୍ର ମହାନ୍ତିଙ୍କୁ ଦେବାର ସିଦ୍ଧାନ୍ତ କରିବାରୁ ସ୍ୱାଭିମାନୀ ରାଜକିଶୋର ସେହି ଦିନଠାରୁ ଆଉ ଫୁଟବଲ୍ ଖେଳିବାକୁ କିମ୍ବା ଦେଖିବାକୁ ଯାଇନଥିଲେ ।

ସ୍ନାତିକ ଉପାଧି ଲାଭ କଲା ପରେ ବହୁ ଭଲ ଭଲ ଚାକିରୀ ପାଇବାର ସୁଯୋଗକୁ ହାତ ଛଡ଼ା କରି ସ୍ୱାଧୀନ ଭାବରେ ଆଇନ୍ ବ୍ୟବସାୟ କରିବାକୁ ସେ ଅଧିକ ପସନ୍ଦ କରିଥିଲେ । ସେ ଓକିଲାତି ସହିତ ଆଇନ୍ କଲେଜରେ ଅଧ୍ୟାପକ ଭାବରେ କିଛି ଦିନ କାର୍ଯ୍ୟ କରିଥିଲେ । ସେଥିରେ ତାଙ୍କ ସୃଜନଶୀଳ ମନ ମାନୁନଥିଲା । ଛାତ୍ର ଜୀବନରୁ ସାହିତ୍ୟ ସାଧନା ପ୍ରତି ତାଙ୍କର ଆଗ୍ରହ ଥିଲା ଏବଂ ଗଳ୍ପ, ଉପନ୍ୟାସ ଲେଖିବା ଆରମ୍ଭ କରିଥିଲେ । ତାଙ୍କର ପ୍ରଥମ ଲେଖା ଛପାଯାଇଥିଲା ୧୯୩୬ ଏପ୍ରିଲ ମାସରେ ଏକ ସମୟରେ ସହକାର, ଉତ୍କଳ ସାହିତ୍ୟ ଏବଂ ନବଭାରତ ମାସିକପତ୍ରମାନଙ୍କରେ । ତାଙ୍କର ପ୍ରଥମ ବହି 'ସିନ୍ଦୁରଗାର' ପ୍ରକାଶ କରିଥିଲେ ମହମ୍ମଦ ଅବଦୁଲ ହାଦି, ଲକ୍ଷ୍ମୀନାରାୟଣ ପ୍ରେସ୍, ଜଗନ୍ନାଥ ବଲ୍ଲଭ କଟକ । ସେତେବେଳେ ରାଜକିଶୋରଙ୍କୁ ମାତ୍ର ସତର ବର୍ଷ । ଏଥିରେ ତାଙ୍କର ଆତ୍ମଜୀବନୀ କିୟଦଂଶରେ ପ୍ରତିଫଳିତ ହୋଇଛି । ୧୯୫୨ ମସିହାରେ ଚାନ୍ଦିନୀଚୌକ ପ୍ରଭାତୀ ପ୍ରେସରେ ରାଜକିଶୋରଙ୍କର 'କଜ୍ଜଳଗାର' 'ଭସାମେଘ' ଏବଂ 'ପ୍ରେମିକର ଡାଏରୀ' ଏକା ସଙ୍ଗରେ ଛାପା ଚାଲିଥିଲା । ସମକାଳୀନ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ପଞ୍ଜୁରୀ ପକ୍ଷୀ, ପ୍ରେମର ନିୟତି, ଦୁଇ ପଥର, ଶାଳଗ୍ରାମ ଇତ୍ୟାଦି ଗଳ୍ପ ପାଠକ ମହଲରେ ବେଶ୍ ଚମକ ସୃଷ୍ଟି କରିଥିଲା । ପରବର୍ତ୍ତୀ ସମୟରେ ତାଙ୍କର ପଞ୍ଜୁରୀ ପକ୍ଷୀ, ପ୍ରେମର ନିୟତି, ଅସରନ୍ତି, ସପନ କୁହୁକ, ଅଡୁଆସୂତା, ରାସକେଲି ସଂଜବତୀ, ନିଶାଶିଖା, କଜ୍ଜଳରେଖା, ଭସାମେଘ ପ୍ରକାଶ ପାଇଛି ଏବଂ ବେଶ୍ ଆଦୃତ ।

ଏଇ ସମାଜର ସାଧାରଣ ଚରିତ୍ରମାନଙ୍କୁ ଭିତ୍ତିକରି ସେ ତାଙ୍କର ଗଳ୍ପ କବିତାରେ ସ୍ଥାନ ଦେଇଛନ୍ତି । ସେମାନଙ୍କର ଦୁଃଖ, ଅଭାବ, ସମସ୍ୟା, ଜୀବନ ଯନ୍ତ୍ରଣାକୁ ସୁନ୍ଦର ଭାବରେ ରୂପାୟିତ କରିବାରେ ସେ ଥିଲେ ସିଦ୍ଧହସ୍ତ । ନାରୀ ମନର ଅବ୍ୟକ୍ତ ବେଦନାକୁ ସେ ଯେଭଳି ଅନ୍ତରଙ୍ଗ ଭାବରେ ବିଶ୍ଳେଷଣ କରିଛନ୍ତି ଖୁବ୍ କମ୍ ସ୍ରଷ୍ଟା ସେଭଳି କରିବାକୁ ସଫଳ ହୋଇଛନ୍ତି । ଆଦର୍ଶ ଦୃଢ଼ଆତ୍ମବିଶ୍ୱାସ, ମନୋବଳ ଥିଲେ ମଣିଷ ସବୁଠି ସଫଳ ହୋଇପାରିବ ଏବଂ ସବୁ ସମସ୍ୟାକୁ ଅତିକ୍ରମ କରି ନିଜର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବ । ଏଇଥିଲା ତାଙ୍କ ସାହିତ୍ୟ କୃତିର ନିର୍ଯ୍ୟାସ । ଚିରନ୍ତନ ସୃଷ୍ଟି ଲୀଳାର ରହସ୍ୟକୁ ଉନ୍ମୋଚନ କରିବା ପାଇଁ ସେ ନିଜ ଭିତରେ ଖୋଜିଛନ୍ତି ତାଙ୍କ ଗଳ୍ପ ଉପନ୍ୟାସର ଚରିତ୍ରମାନଙ୍କୁ ।





ସେଥିପାଇଁ ସିନ୍ଦୂର ଗାର ଏବଂ ଜୀବନ ସନ୍ଧ୍ୟା ପୁସ୍ତକରେ ନିଜକୁ ଏକ ଚରିତ୍ର କରି ସେଥିରେ ସାମିଲ୍ ହୋଇଛନ୍ତି । କଟକ ସହର ପୃଷ୍ଠଭୂମିରେ ଲିଖିତ ତାଙ୍କର ଅସଂଖ୍ୟ କ୍ଷୁଦ୍ର ଗଳ୍ପରେ ସେ ସାଧାରଣ ଚରତ୍ରଗୁଡ଼ିକୁ ଅତି ନିଖୁଣ ଭାବରେ ଚିତ୍ରଣ କରି ସାମାଜିକ ନ୍ୟାୟ ପାଇଁ ଦାବି କରିଛନ୍ତି । ଶୋଷଣ, ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସାମାଜିକ ନ୍ୟାୟ ପାଇଁ ଦାବି କରିଛନ୍ତି । ଶୋଷଣ, ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଧନୀ, ଟାଉଟର ନେତାମାନଙ୍କ ମୁଖା ଖୋଲି ଦେବାକୁ ଉଦ୍ୟମ କରିଛନ୍ତି । ଥିଲାବାଲା ଏବଂ ନଥିଲା ବାଲାର ହୃଦୟକୁ ସେ ମାନବବାଦୀ ଦୃଷ୍ଟିକୋଣ ନେଇ ଅନୁଶୀଳନ କରିଛନ୍ତି । ସ୍ୱାର୍ଥପର ମଣିଷମାନଙ୍କ ଠାରୁ ଦୂରେଇ ଏକାକୀ ରହିବାକୁ ସେ ଅଧିକ ପସନ୍ଦ କରିଛନ୍ତି । ତେଣୁ ସେ ମଣିଷଠାରୁ କୁକୁରକୁ ଅଧିକ ବିଶ୍ୱାସୀ ଏବଂ ପ୍ରଭୁଭକ୍ତ ବୋଲି ସ୍ୱୀକାର କରିଛନ୍ତି । ଅବକ୍ଷୟର ଶିକାର ହୋଇ ଭୁଷୁଡ଼ି ପଡୁଥିବା ମୂଲ୍ୟବୋଧର ପୁନରୁଦ୍ଧାର ପାଇଁ ସେ ସାରାଜୀବନ ସଂଗ୍ରାମ କରିଛନ୍ତି । ଦଳଖୋରୀ ସାହିତ୍ୟ ପ୍ରତିଷ୍ଠାନ ସାହିତ୍ୟିକ ଗୋଷ୍ଠୀ ଗଠନ, ପୁରସ୍କାର ଲାଭ କରିବାପାଇଁ ଚକ୍ରାନ୍ତକୁ କଡ଼ାଭାବରେ ନିନ୍ଦା କରିଛନ୍ତି ।

ସେ ଇଂରାଜୀ ପାକ୍ଷିକ ସ୍କୁଟିନି, ଦେଶକଥା, ଆମର ଆଇନ ଏବଂ ଲ ନୋଟିସ ପତ୍ରିକାର ସଂପାଦନା କରୁଥିଲେ । [illegible]ରେ ବାଣୀମନ୍ଦର ନାମକ ଏକ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କରି ଲେଖକମାନଙ୍କୁ ଯଥାଭାଗ ପ୍ରଦାନ କରିବା ପାଇଁ ଆନ୍ଦୋଳନ ଆରମ୍ଭ କରିଥିଲେ । କେବଳ ଗଳ୍ପ ଉପନ୍ୟାସ ନୁହେଁ, ବହୁ ଜୀବନୀ ପୁସ୍ତକ, ଭ୍ରମଣ କାହାଣୀ, ଆଇନ ପୁସ୍ତକ ଇତ୍ୟାଦି ଲେଖି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରି ଯାଇଛନ୍ତି । ପ୍ରତ୍ୟେକ ଲେଖାର ଭାଷା ଅତି ସରଳ ଏବଂ ସାବଲୀଳ । ନିଜର ବକ୍ତବ୍ୟକୁ ସେ ସ୍ପଷ୍ଟ ଏବଂ ନିର୍ଭୀକ ଭାବରେ ପ୍ରକାଶ କରିଛନ୍ତି ଯାହାଫଳରେ ପାଠକମାନେ ତାହା ସହୃଦୟତାର ସହିତ ଗ୍ରହଣ କରିଛନ୍ତି ଏବଂ ସମାଲୋଚକମାନେ ତାଙ୍କ ଲେଖାକୁ ଶ୍ରେଷ୍ଠ ସାହିତ୍ୟ ରଚନା ବୋଲି ସ୍ୱୀକାର କରିଛନ୍ତି । ରାଜନୀତିରେ ମଧ୍ୟ ସେ କିଛି ଦିନ ନିଜକୁ ନିୟୋଜିତ କରିଥିଲେ । କିନ୍ତୁ ନିର୍ମଳ ଭାବମୂର୍ତ୍ତି ରକ୍ଷା କରି ରାଜନୀତି କରିବା ସମ୍ଭବ ନଥିବାରୁ ସେ ଦିଗରେ ସେ ବିଶେଷ କିଛି ସଫଳତା ହାସଲ କରିପାରି ନଥିଲେ । କିନ୍ତୁ ଦିନେ ସ୍ୱତନ୍ତ୍ର ଦଳର ସଂଗଠନ ସଂପାଦକ ଭାବରେ କାର୍ଯ୍ୟକରି ସ୍ୱତନ୍ତ୍ର ଏବଂ ଜନକଂଗ୍ରେସ ମିଳିତ ସରକାର ଗଠନ କରିବା ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସ୍ୱତନ୍ତ୍ର ଦଳ ପକ୍ଷରୁ ରାଜ୍ୟସଭାକୁ ପ୍ରତିଦ୍ୱନ୍ଦିତା କରି ବିଶ୍ୱାସଘାତକତାର ସାମନା କରି ନ ପାରି ଅଳ୍ପ ଭୋଟ ବ୍ୟବଧାନରେ ପରାଜିତ ହୋଇଥିଲେ । ପରେ ସ୍ୱତନ୍ତ୍ର ଦଳ ଛାଡ଼ି ସ୍ୱାଧୀନ ଓଡ଼ିଶା ଦଳ ଗଠନ କରିଥିଲେ । କିନ୍ତୁ ୧୯୬୭ ମସିହା ନିର୍ବାଚନ ପରେ ପରେ ଏହି ଦଳ ଅର୍ଥାଭାବରୁ ନିଷ୍କ୍ରିୟ ହୋଇ ଯାଇଥିଲା ।



ଜୀବନରେ ସେ ବହୁ ସ୍ଥାନରେ ସମ୍ମାନୀତ ହୋଇଛନ୍ତି । ପ୍ରଜାତନ୍ତ୍ର ପ୍ରଚାର ସମିତି ୧୯୭୦ ମସିହାରେ ଝଙ୍କାର ପୁରସ୍କାର ପ୍ରଦାନ କରିଥିଲେ । ୧୯୯୭ ମସିହା ଫେବୃଆରୀ ଆଠ ତାରିଖ ଦିନ ତାଙ୍କୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର ପ୍ରଦାନ କରି ସମ୍ମାନୀତ କରିଥିଲେ । ପୁରସ୍କାର ବାବଦରେ ନଗଦ ୨୫ ହଜାର ଟଙ୍କା ଏବଂ ଉପଢ଼ୌକନ ପ୍ରଦାନ କରାଯାଇଥିଲା । ଏହି ପୁରସ୍କାର ଲାଭ କରିବାର ମାତ୍ର କୋଡ଼ିଏ ଦିନ ପରେ ମାର୍ଚ୍ଚ ଦୁଇ ତାରିଖ ଦିନ ଏହି ବର୍ଷିୟାନ ସାହିତ୍ୟସାଧକ ଚରିଦିନ ପାଇଁ ଆଖିବୁଜି ଦେଇଥିଲେ ।

ବୃଦ୍ଧ ରାଜକିଶୋର ଭଙ୍ଗା ସାଇକେଲ ଚଢ଼ି ଝିଡ଼ିହାଣି କଟକ ରାଜରାସ୍ତାରେ ବୁଲିବାର ଦୃଶ୍ୟ ବହୁ ଲୋକ ଦେଖିଛନ୍ତି । ପରିଚିତ ଲୋକଟିଏ ଦେଖିଲେ ସେ ଭାବବିହ୍ୱଳ ହୋଇ କୁଣ୍ଢାଇ ପକାଉଥିଲେ ଏବଂ ଭଲ ମନ୍ଦ ବୁଝୁଥିଲେ । ନୂଆ ଲେଖକମାନଙ୍କୁ ସେ ଗୋଟିଏ କଥା କହୁଥିଲେ ''ଲେଖି ସ୍ୱାର୍ଥ ପ୍ରକାଶ କରି ପ୍ରଚାର ପାଇଁ ଅପେକ୍ଷା ରଖନି । ସାହାଯ୍ୟ ପାଇଁ କାହାକୁ ଖୋସାମଦ କରି ଆତ୍ମସମ୍ମାନକୁ ବଳି ଦିଅନି ।

୧୯୮୩ର ଗଳ୍ପ ପୁସ୍ତକ ଅତଥା ସ୍ୱଦ୍ୱାର ମୁଖବନ୍ଧରେ କଥାକାର ରାଜକିଶୋର ପଟ୍ଟନାୟକ ଯାହା ଉଲ୍ଲେଖ କରିଛନ୍ତି ତାହା ଏହିପରି—''ଏହି ବହିର ମୂଲ୍ୟ ପଚିଶିଟଙ୍କାର ଶତକଡ଼ା ପନ୍ଦର ପରସେଣ୍ଟ ରୟାଲଟି ପ୍ରକାଶକ ଶ୍ରୀଯୁକ୍ତ ଖଣ୍ଡକ୍ଷୀରୋଦ ମିଶ୍ରଙ୍କ ଠାରୁ ଗ୍ରହଣ କଲି । ଏହି ଟଙ୍କାକୁ ତାଙ୍କ ପାଖରେ ଜମା ରଖିଲି । ଏଥିରୁ ଦୁଇ ହଜାର ପାଞ୍ଚଶହ ଟଙ୍କା ପୁରୀ ବଡ଼ଦେଉଳରେ ପୂଜା ଆଦିରେ ବା ଅନ୍ୟ ପ୍ରକାରରେ ବିନିଯୁକ୍ତ କରିବେ । ଅବଶିଷ୍ଟ ଏକ ହଜାର ଟଙ୍କା କଟକର ଶ୍ରୀ ମନସୁର ବାବାଙ୍କ ସେବାରେ ନିଜ ଇଚ୍ଛାରେ ଥରକରେ ବା ଏକାଧିକ ଥରରେ ଲଗାଇବେ ।'' ଏଥିରୁ ସେ କେତେ ଈଶ୍ୱର ବିଶ୍ୱାସୀ ତାହା ସହଜରେ ଅନୁମେୟ । ତାଙ୍କର ଶେଷ ଜୀବନ ଅଭାବ ଅନାଟନରେ କଟି ଥିଲେ ମଧ୍ୟ ସେ କେବେ କାହାପାଖରେ ହାତ ପତେଇ ନ ଥିଲେ । ତାଙ୍କ ଭଳି ପ୍ରତିଭାଧର, ସ୍ପଷ୍ଟବାଦୀ, ସ୍ୱାଧୀନଚେତା, ସ୍ୱାଭିମାନୀ ଓ ଉଦାର ମଣିଷଟେ ଏ ସମାଜରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅଲିଶା ବଜାର, କଟକ







# ସ୍ୱାଭିମାନୀ ରାଜୁବାବୁ

**ଡାକ୍ତର ବିକ୍ରମ ଦାସ**

ପ୍ରଥମ ଓ ଦ୍ୱିତୀୟ ବିଶ୍ୱ ମହାସମରର ମଧ୍ୟବର୍ତ୍ତୀ କାଳରେ ବିଶ୍ୱ ସାହିତ୍ୟରେ ଅଭିନବ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା । ସାମାଜିକ ପରିସ୍ଥିତି ପ୍ରତି ସାହିତ୍ୟ ସଚେତନ ହୋଇ ଉଠିଥିଲା । ଲେଖକ ପାରିପାର୍ଶ୍ୱିକ ଅବସ୍ଥା ପ୍ରତି ଦୃଷ୍ଟି ରଖି ସାହିତ୍ୟ ସୃଷ୍ଟି କରିବାକୁ ଲାଗିଲା ।

ସେହି ସମୟରେ ଓଡ଼ିଶାରେ ମଧ୍ୟ ସାମାଜିକ ଗଳ୍ପ, ଉପନ୍ୟାସ, ନାଟକ ପ୍ରଭୃତିର ଆଦର ବଢ଼ିଲା । ଠିକ୍ ଦ୍ୱିତୀୟ ବିଶ୍ୱ ମହାସମର ପୂର୍ବରୁ କଥାକାର ସୁରେନ୍ଦ୍ର ମହାନ୍ତି, ରାଜକିଶୋର ପଟ୍ଟନାୟକ ଓ ଅଧ୍ୟାପକ ରାଜକିଶୋର ରାୟ ପ୍ରଭୃତି ସେମାନଙ୍କ ଲେଖନୀ ବଳରେ ଓଡ଼ିଶା ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ ହଲଚଲ ପକାଇବା ଆରମ୍ଭ କରି ଦେଇଥିଲେ ।

'ନବଭାରତ' 'ସହକାର' ପ୍ରଭୃତି ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାମାନଙ୍କରେ ସେମାନଙ୍କ ଲେଖା ପ୍ରକାଶିତ ହେଉଥିଲା । ନବଭାରତ ପ୍ରେସର ଚଟାଣ ଉପରେ ଯୋଗାସନରେ ବସି ରହିଥିବା ଉତ୍କଳ ଗୁରୁ ପଣ୍ଡିତ ନୀଳକଣ୍ଠ ସଙ୍ଗେ ସେମାନେ ସାହିତ୍ୟ ଆଲୋଚନାରେ ନିମଗ୍ନ ଥିବା ଅବସ୍ଥାରେ ହିଁ ମୋର ସେମାନଙ୍କ ସହିତ ପ୍ରଥମ ପରିଚୟ । ମୁଁ ଜଣେ ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ସେ ଆଲୋଚନାରୁ କିଛି କିଛି ଶୁଣି ଓ ସେମାନଙ୍କ ଲେଖା ପଢ଼ି ସାହିତ୍ୟ, ବିଶେଷତଃ ଗଳ୍ପ ଓ ଉପନ୍ୟାସ ପ୍ରତି ଆକୃଷ୍ଟ ହୋଇଥିଲି । ଶ୍ରୀ ରାଜକିଶୋର ପଟ୍ଟନାୟକ ଜଣେ ବିଶିଷ୍ଟ କଥାକର ହେଲେ ମଧ୍ୟ ତାଙ୍କର ପେଶା ଥିଲା ଓକିଲାତି । ସେ ଆଇନ୍ ବ୍ୟବସାୟ ଦ୍ୱାରା ନିଜର ଜୀବନ ପୋଷଣ କରୁଥିଲେ ମଧ୍ୟ ଓକିଲାତିର ପଙ୍କିଳ ଅର୍ଥକାରୀ ରଜ୍ଜୁରେ ନିଜକୁ ସଂପୂର୍ଣ୍ଣ ରୂପେ ବାନ୍ଧି ରଖିବା ପାଇଁ ପସନ୍ଦ କରୁ ନ ଥିଲେ । ତେଣୁ ଲୋକଙ୍କ ସମ୍ମୁଖରେ ଆଇନର ଭଲ ମନ୍ଦ ଦୁଇପଟ ଦେଖାଇବା ପାଇଁ । ସେ ଆଇନ ପତ୍ରିକାର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲେ । ତା ସଙ୍ଗେ ସଙ୍ଗେ ସାହିତ୍ୟ ସାଧନା ପଥରେ କର୍ମ କରି ଚାଲିଥିଲେ ।

ମୋର ମେଡ଼ିକାଲ ପାଠ ସରି ଆସିଲା ବେଳକୁ ନବଭାରତ ପତ୍ରିକା ବନ୍ଦ ହୋଇଗଲା । ମୁଁ ବାଧ୍ୟ ହୋଇ ସାହିତ୍ୟଠାରୁ ସମ୍ପୂର୍ଣ୍ଣ ଦୂରେଇ ଗଲି । ଚିକିତ୍ସା ବିଦ୍ୟାରେ ସଂପୂର୍ଣ୍ଣ ଭାବେ ମନୋନିବେଶ କରି, ବିଦେଶୀ ସ୍ନାତକୋତ୍ତର ଡିଗ୍ରୀ ହାସଲ କରି ମେଡ଼ିକାଲ କଲେଜରେ ଶିକ୍ଷକତା କଲି । ମେଡ଼ିକାଲ କଲେଜର ପ୍ରଫେସର ଓ ଘରୋଇ ଚିକିତ୍ସକ



ଜୀବନ ଦୁଇଟାଯାକ ମୋତେ ଏପରି ଯାବୋଡ଼ି ଧରିଲେ ଯେ ସାହିତ୍ୟ କ୍ଷେତ୍ର ସହିତ ସଂପର୍କ ରଖିବାକୁ ମୋର ବେଳ ନଥିଲା । ତେଣୁ ରାଜୁବାବୁଙ୍କ ପରି ସାହିତ୍ୟିକମାନଙ୍କ ସାନ୍ନିଧ୍ୟରେ ଆସିବା ମୋ ପକ୍ଷରେ ସମ୍ଭବ ନଥିଲା ମୁଁ ୧୯୭୯ରେ ପ୍ରାଧ୍ୟାପକ ପଦରୁ ଅବସର ନେବାପରେ ଘରୋଇ ଚିକିତ୍ସା ମଧ୍ୟ ବନ୍ଦ କରି, ମୋର ପୂର୍ବ ଅଭିଳାଷ ଚରିତାର୍ଥ କରିବା ପାଇଁ ସରସ୍ୱତୀ ଆରାଧନା ପାଇଁ ସଂକଳ୍ପ ନେଲି । ୧୯୮୫ ବେଳକୁ ମୋର କେତେକ ଗଳ୍ପ ଉପନ୍ୟାସ ପ୍ରଭୃତି ପ୍ରକାଶିତ ହୋଇ ସାରିଥିଲା ।

ସେ ପର୍ଯ୍ୟନ୍ତ ପୁଣି ରାଜୁବାବୁଙ୍କ ସଙ୍ଗେ ମୋର କୌଣସି ସାକ୍ଷାତ ସଂପର୍କ ସ୍ଥାପିତ ହୋଇ ନଥିଲା । ରାଜୁବାବୁ ମୋତେ ମନେ ରଖିଛନ୍ତି ଓ ମୋର ସାହିତ୍ୟ ସାଧନା ପ୍ରତି ଦୃଷ୍ଟି ରଖିଛନ୍ତି ବୋଲି ମୋର ଧାରଣା ନଥିଲା । ୧୯୮୫ ମସିହା ପ୍ରାରମ୍ଭରେ ରାଜୁବାବୁ ମୋ ନିକଟକୁ ତାଙ୍କ ଲିଖିତ 'ଜୀବନର ସନ୍ଧ୍ୟା' ପୁସ୍ତକଟି ପଠାଇ, ତାହା ଉପରେ ମୋର ମତାମତ ଦେବା ପାଇଁ ଅନୁରୋଧ କଲେ । ମୁଁ ତାଙ୍କ ଅନୁରୋଧ ରକ୍ଷା କରି ସେ ବହି ସମ୍ବନ୍ଧରେ ଅଭିମତଟିଏ ଲେଖି ତାଙ୍କ ନିକଟକୁ ପଠାଇ ଦେଲି । ତା ପରେ ମୁଁ ଏକ ମନିଅର୍ଡ଼ର ଦ୍ୱାରା କୋଡ଼ିଏଟି ଟଙ୍କା ଓ ସେ ଫର୍ମ ଉପରେ ଲେଖା ଏ ଚିଠିଟି ପାଇଲି ।

ମ୬୯-୧-୮୫/ N୨.୮୫ ଟ ୨୦

ମାନନୀୟ ମହାଶୟ,

'ଜୀବନର ସନ୍ଧ୍ୟା' ବହି ଉପରେ ମତାମତ ପାଇଁ ଦୟା କରି Interim କୋଡ଼ିଏ ଟଙ୍କା ଦୟା କରି ଗ୍ରହଣ କରିବେ ।

ବିନୀତ

ପଢ଼ିବା ଲୋକର ମତାମତ

ତରଫରୁ

ରାଜକିଶୋର ପଟ୍ଟନାୟକ

'ପଢ଼ିବା ଲୋକର ମତାମତ' ଏକ ସଂସ୍ଥା ଏକ ସଂସ୍ଥା ଓ ତା ତରଫରୁ ସାହିତ୍ୟ ସମାଲୋଚକମାନଙ୍କୁ ସେପରି ପୁରସ୍କାର ଦିଆ ଯାଉଥିବା ଜାଣିଲେ ମଧ୍ୟ ସେ ଅର୍ଥ ଯେ ରାଜୁବାବୁ ନିଜେ ଦେଉଛନ୍ତି ସେଥିରେ ମୋର ସନ୍ଦେହ କରିବାର କାରଣ ନଥିଲା । ଚିଠିରେ ବା Interim'ମଧ୍ୟକାଳୀନ' ଲେଖା ଯାଇଥିବାରୁ ରାଜୁବାବୁ ଆଉ ବେଶୀ ଅର୍ଥ ଦାନ ପାଇଁ ଇଚ୍ଛା ଥିଲେ ମଧ୍ୟ ଅଧିକ ସମ୍ବଳ ଅଭାବରୁ ଦେଇ ପାରି ନଥିବା ଅନୁମାନ କଲି ।

ତା'ର ପରେ ପରେ ବାଙ୍କା ବଜାର କେ.ଜେ. ପ୍ରକାଶନୀ ପୁସ୍ତକ ଦୋକାନରେ ମୋର ତାଙ୍କ ସହିତ ସାକ୍ଷାତ ହେଲା । ମୁଁ ତାଙ୍କୁ କହିଲି—"ଆଜ୍ଞା ମୁଁ ଜଣେ ଦୁସ୍ଥ ସାହିତ୍ୟିକ ନୁହେଁ, ଆପଣଙ୍କ ଆର୍ଥିକ ଅବସ୍ଥା ବି ମୋ ଠାରୁ ସ୍ୱଚ୍ଛଳ ନୁହେଁ ଆପଣ କାହିଁକି ଏ ଟଙ୍କା ମୋ ନିକଟକୁ ପଠାଇଲେ ?" ସେ କହିଲେ "ଆପଣ ଡାକ୍ତର ଭାବେ ସ୍ୱଚ୍ଛଳ ହୋଇ ପାରନ୍ତି କିନ୍ତୁ ଓଡ଼ିଶାରେ କୌଣସି ଲେଖକ ଓ ସାହିତ୍ୟିକ ସାହିତ୍ୟ ସେବା ଯୋଗୁ ସ୍ୱଚ୍ଛଳ ନୁହେଁ । ତାହାଛଡ଼ା ଏ କ୍ଷୁଦ୍ର ପୁରସ୍କାର ଏକ ମର୍ଯ୍ୟାଦାର ସନ୍ତକ ମାତ୍ର । ସାହିତ୍ୟିକମାନଙ୍କ ସ୍ପଷ୍ଟ ମତ ଦାନର ଏହା ଏକ ସ୍ୱୀକାରୋକ୍ତି ।"

ଓଡ଼ିଶାରେ ମତାମତ ପ୍ରକାଶ କରିବା ସାହିତ୍ୟିକଙ୍କ ସଂଖ୍ୟାରେ ଅବନତି ଘଟୁଥିବାରୁ ତାଙ୍କ ମନରେ ଯେ କିପରି ଧରଣର କ୍ଷୋଭ ଜାତ ହୋଇଥିଲା ତାହା ଏଥିରୁ ଅନୁମେୟ । ସେ କଥା ପ୍ରସଙ୍ଗରେ କହିଲେ "ସାହିତ୍ୟର ମୂଲ୍ୟାୟନରେ ଉପର ସ୍ତରରେ ଯେ ଜାଲିଆତି ଚାଲିଛି ସେଥିପାଇଁ ଜାତୀୟ ସାହିତ୍ୟ ପୁରସ୍କାର ଓ ସମ୍ମାନ ରାଜନୈତିକ ଓ ବ୍ୟବସାୟଗତ ହୋଇ ଯାଉଥିବାରୁ ନୀରବ କୃତି ସାହିତ୍ୟ ସାଧକମାନେ ପଛରେ ପଡ଼ି ଯାଉଛନ୍ତି ।" ହୁଏତ ସେହି ଦୃଷ୍ଟିରୁ ସେପରି ସାହିତ୍ୟିକମାନଙ୍କୁ ସେ ଉତ୍ସାହିତ କରିବାକୁ ଚାହୁଁ ଥିଲେ ।

ଏହାପରେ ତାଙ୍କ ସଙ୍ଗେ ବହୁବାର ଦେଖା ସାକ୍ଷାତ ହୋଇଛି । ସେ ଜଣେ ବନ୍ଧୁ ବତ୍ସଳ ଓ ମିଷ୍ଟଭାଷୀ ବ୍ୟକ୍ତି କିନ୍ତୁ କାହାକୁ ଖୋସାମତ କରି କଥା କହିବା ବା ନିଜର ସ୍ୱାର୍ଥ ପାଇଁ କାହା ପାଖରେ ମୁଣ୍ଡ ନୁଆଁଇବା ତାଙ୍କ ଜାତକରେ ନଥିଲା । ସେ ଜଣେ ସ୍ପଷ୍ଟବାଦୀ ବ୍ୟକ୍ତି ଥିଲେ । ସାହିତ୍ୟର ବିକାଶ ଓ କୃତି ସାହିତ୍ୟିକଙ୍କ କୃତୀର ପ୍ରଚାର ପାଇଁ ସେ ବହୁଭାବରେ ଚିନ୍ତା କରୁଥିଲେ । ବଡ଼ ଲେଖକମାନଙ୍କ ପୁସ୍ତକ ରଖି ଗୋଟିଏ ପୁସ୍ତକ ଭଣ୍ଡାର ଓ ପ୍ରକାଶନ ସଂସ୍ଥା ଖୋଲିବାର ଏକ ଯୋଜନା ମଧ୍ୟ କରିଥିଲେ । ତାଙ୍କ ଭଳି ଜଣେ ସାହିତ୍ୟିକଙ୍କ ଜୀବନର ଘଟଣାକୁ ପାଠକ ଓ ଭବିଷ୍ୟତ ଲେଖକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ପାଇଁ ସେ ତାଙ୍କ ଜୀବନୀଟି ଲେଖାଇବା ପାଇଁ ଉଦ୍ୟମ କରି ଏ ଚିଠିଟି ଲେଖିଥିଲେ—

ରାଜ କିଶୋର ପଟ୍ଟନାୟକ ଓଡ଼ିଆ ଲେଖକ ତେଲେଙ୍ଗା ବଜାର କଟକ-୯, ୩-୮-୯୩

ମାନନୀୟ ମହାଶୟ,

ବିଷୟ : ସାମାନ୍ୟ ନଗଦ ଅର୍ଥ ପାଇଁ ଅନୁଷ୍ଠାନମାନଙ୍କୁ ନିବେଦନ ।



ଅନାମ ୫ମ ପତ୍ର ଜୁନ ୧୯୯୩ ପ୍ରକାଶିତ 'ଦିହକର କଥା'ର କିୟଦଂଶ ଛାପିବାକୁ ଡିମାଇ ପୃଷ୍ଠା-ତିରିଶ ଟଙ୍କା ହିସାବରେ କିଛି ଆର୍ଥିକ ସାହାଯ୍ୟ ଦରକାର ଯେତିକି ମିଳିବ ତାହାର ଆନୁପାତିକ ଛାପା ବହି ଦେଇ ହେବ ।

ନଗଦ ଓ ଚଞ୍ଚଳ, କାରଣ-ବୟସ (ଜନ୍ମ) ୮-୪-୧୯୧୭

ରିପ୍ଲାଇ କାର୍ଡ଼ ଦେଲି

କଟକ ଓ ଭୁବନେଶ୍ୱର ସବୁ ଲେଖାଯାଇଛି

ରାଜକିଶୋର ବିନୀତ

ରାଜକିଶୋର ପଟ୍ଟନାୟକ

ମୁଁ ତାଙ୍କ ରିପ୍ଲାଇ କାର୍ଡରେ ଉତ୍ତର ଲେଖିଥିଲି ସେ ଚିଠିଟି ଅନୁଷ୍ଠାନମାନଙ୍କ ଉଦ୍ଦେଶ୍ୟରେ ଲେଖାଯାଇଥିଲେ ମଧ୍ୟ ସେ ବ୍ୟକ୍ତି ବିଶେଷଙ୍କଠାରୁ ସାହାଯ୍ୟ ଚାହାନ୍ତି କି ବୋଲି ପଚାରିଥିଲି । ବହିର ପ୍ରକାଶନ ପାଇଁ ଏତେ ବ୍ୟଗ୍ର ନହେବା ପାଇଁ ଅନୁରୋଧ କରିଥିଲି । ବିଦ୍ୟା ଚର୍ଚ୍ଚା ଅଜର ଅମର ଭାବେ କରିବା ଉଚିତ ବୋଲି ଋଷିମାନେ କହିଛନ୍ତି, ମୁଁ ଅବସର ନେବା ପରେ ଲେଖା ଲେଖି ଆରମ୍ଭ କରିଛି ଏବଂ ସେ ମୋ ଠାରୁ ମାତ୍ର ଅଳ୍ପ ବଡ଼ ବୋଲି ଜଣାଇଥିଲି । ସେ ମୋ ଚିଠିର ଉତ୍ତରରେ ଲେଖିଥିଲେ—

ରାଜକିଶୋର ପଟ୍ଟନାୟକ, ତେଲେଙ୍ଗା ବଜାର, କଟକ-୯

ମାନ୍ୟବର ମହାଶୟ,

ପ୍ରଣାମ । ଆପଣଙ୍କ ଚିଠି ପାଇ କୃତଜ୍ଞ ।

(୧) ବ୍ୟକ୍ତି ଦେବାର କାରଣ ନାହିଁ ।

(୨) ଅନୁଷ୍ଠାନ ଦେଇ ପାରନ୍ତି କିନ୍ତୁ କାରଣ ଖୋଜିବେ ।

(୩) ପ୍ରତ୍ୟେକ ବହୀର, ଦିହକର କଥା ଅଛି । 'ସବୁ ଗୁଡ଼ାକ କ'ଣ ପଢ଼ି ହେବ ?

(୪) 'ମୋ ଦିହକର କଥା' ଅବଶ୍ୟ ପଢ଼ି ହେବ କାରଣ ମୁଁ ମାଙ୍କଡ଼ଚିତ୍ ଅନେକ ବର୍ଷ ଠେଲା ମାରିଲେଣି ।

(୫) ଛପା ହେଲେ ସେମାନେ ଥୋଡ଼ାଏ ବୁଝନ୍ତେ କିନ୍ତୁ ମୋ ଛପା ବିଷୟରେ ମୁଁ ଆଶାବାଦୀ ନୁହେଁ ।

(୬) ୧୭ ରୁ ୨୧ ୪ ବର୍ଷ=୧୫୦୦ ଦିନ ବହୁତ Gap (ତାଙ୍କ ଜନ୍ମ ୧୯୧୭ ମୋ ଜନ୍ମ ୧୯୨୧)

ଶୁଭକାଂକ୍ଷୀ

Rajkishore Patnaik,
(Telenga Bazar, Cuttack-9)

ସେ ସେଥିପାଇଁ ଓଡ଼ିଶାର ବିଶିଷ୍ଟ ସାହିତ୍ୟ ଅନୁଷ୍ଠାନମାନଙ୍କ ସହିତ ସେ କିପରି ଯୋଗାଯୋଗ କରୁଥିଲେ ସେପରି ଚିଠିର ଏ କପିଟି ତଳେ ଦେଲି ।

ରାଜକିଶୋର ପଟ୍ଟନାୟକ, ତେଲେଙ୍ଗା ବଜାର, କଟକ-୯ ୧୦-୯-୯୩

ମାନନୀୟ ଉତ୍କଳ ସାହିତ୍ୟ ସମାଜ କଟକ N Copy to ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭୁବନେଶ୍ୱର ୧୮ ।

ଶୁଣା ଶୁଣିରେ ଜାଣୁଛି ଉ.ସା.ସ କିଛି ଟଙ୍କା 'ମୋର ଦିହକର କଥା' ପାଇଁ ମୋତେ ଦେବେ । ମୋର ପ୍ରସ୍ତାବ-ଯେତିକି ଦେବେ ସେତିକିରେ କିଛି ପୃଷ୍ଠା ଛପାଇ ନିଜେ ସମସ୍ତର ସ୍ୱତ୍ୱାଧିକାରୀ ହେବେ । ପ୍ରସ୍ତାବ ସୁବିଧାଜନକ ହେଲେ ମତେ ଟଙ୍କା ଦେବା ଆଗରୁ ଜଣାଇ ମୋର ମତାମତ ନେଲେ ଦାତା, ଗ୍ରହୀତା ଉଭୟଙ୍କୁ ସୁବିଧା ହେବ ।

କହିଲେ ମୁଁ Xeros Copy ରେ ଲେଖା ପାଣ୍ଡୁଲିପି ପଠାଇବି କେତେ ପୃଷ୍ଠା ?

ବିନୀତ
ରାଜକିଶୋର ପଟ୍ଟନାୟକ

ଏ ଚିଠିରୁ ସେ କେତେ ସ୍ୱାଭିମାନୀ ଥିଲେ ଓ ନୋଟିସ୍ ବହି ଛପାପାଇଁ ବିନା ସର୍ତ୍ତରେ ଦାନ ଗ୍ରହଣ କରିବାକୁ ମଧ୍ୟ କେତେ ଅନିଚ୍ଛୁକ ଥିଲେ ତାହା ସ୍ପଷ୍ଟ ପ୍ରମାଣିତ ହେଉଛି ।

ରାଜୁବାବୁ କେବଳ ନିଜ ଜୀବନୀ ପ୍ରକାଶ କରି ଲେଖକ ଜୀବନର ଅନୁଭୂତି ଅଗାମୀ ଲେଖକମାନଙ୍କ ସମ୍ମୁଖରେ ରଖି ସେମାନଙ୍କ ଆଖି ଖୋଲିବା ପାଇଁ ଚେଷ୍ଟା କରି ନଥିଲେ । ଓଡ଼ିଶାର ଆଧୁନିକ ସାହିତ୍ୟ, ଓ ସଂସ୍କୃତି ଉପରେ ପ୍ରଶ୍ନ ପ୍ରସ୍ତୁତ କରାଇବା ପାଇଁ ଆଗଭର ହୋଇଥିଲେ । ସେ ସମ୍ବନ୍ଧରେ ଚିଠିର ନକଲ—



କଟକ ୨୭-୯-୯୩

ମାନନୀୟ ମହାଶୟ,

ପ୍ରଣାମ, Oriya M. Phil ଓ Ph.D. ପାଇଁ କିଛି ପ୍ରଶ୍ନ ଦରକାର ।

୧୯୩୬-୯୩ର : ସାହିତ୍ୟ ସମକାଳୀନ ସାହିତ୍ୟିକ, ସାମ୍ବାଦିକତା, ସମାଜ ସେବା SPORTS ଇତ୍ୟାଦି । ଦୟା କରି ରିପ୍ଲାଇ କାର୍ଡ୍ ଯଥାଶୀଘ୍ର ଉପଯୋଗ କରି ବାଧିତ କରିବେ ।



ରାଜକିଶୋର

ଏ ଯୁଗରେ ଶତାୟୁଙ୍କ ସଂଖ୍ୟା ବଢ଼ି ଚାଲିଥିଲା ବେଳେ ନିଜର ଜୀବନ କାଳ ପୂରି ଆସୁଥିବା ବିଷୟରେ ସଚେତନ ହୋଇ ରାଜବାବୁ ନିଜକୁ ଦେଶ ପାଇଁ ଅତ୍ୟଧିକ କର୍ମ ମୁଖର କରିବାକୁ ଚାହୁଁଥିଲେ । ସତକୁ ସତ ସେ ଆ[illegible]ପୁରିରୁ ଡାକ ପାଇ ଆମକୁ ଛାଡ଼ି ଚାଲିଗଲେ । ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ପରି ଜଣେ ସ୍ୱାଭିମାନୀ, ଓଡ଼ିଆ ପ୍ରାଣ ଦରଦୀ ବ୍ୟକ୍ତିଙ୍କୁ ହରାଇବା ଓଡ଼ିଶା ପକ୍ଷରେ କ'ଣ ଦୁର୍ଭାଗ୍ୟ ଜନକ ବିଷୟ ନୁହେଁ ? ସେହି ଅମର ଲେଖକଙ୍କ ଆତ୍ମାର ସଦ୍‌ଗତି ହେଉ ।

ଜେଲ୍‌ରୋଡ୍ କଟକ-୧




# କାଳଜୟୀ କଥା ଶିଳ୍ପୀ ରାଜ କିଶୋର

ରମେଶ ଚନ୍ଦ୍ର ଧଳ

କାଳଜୟୀ କଥାକାର ରାଜକିଶୋର ପଟ୍ଟନାୟକ (୮-୪-୧୯୧୭-୧-୩-୧୯୯୭) ପରିଣତ ବୟସରେ ପରଲୋକ ଗମନ କରିଛନ୍ତି । ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ଲାଗି ତାଙ୍କର ସାଧନା ଓ ତ୍ୟାଗ ନିମନ୍ତେ ସେ ଏ ଜାତିର ଚିର ନମସ୍ୟ ହୋଇ ରହିବେ । କେବଳ ବୁଦ୍ଧିଜୀବୀ ନୁହେଁ ସାଧାରଣ ପାଠକ ମଧ ତାଙ୍କୁ ବହୁଳ ଭାବେ ଅଧୟନ କରୁ ନଥିଲେ । ସେ ଥିଲେ ଓଡ଼ିଆ ଜୀବନର ଜଣେ ଜନପ୍ରିୟ ଲେଖକ ।

ବ୍ୟକ୍ତିଗତ ଜୀବନରେ ସେ ଥିଲେ ସ୍ନେହୀ, ବନ୍ଧୁବତ୍ସଳ, ମିଷ୍ଟଭାଷୀ, ଓଡ଼ିଆ ସାହିତ୍ୟର ବିକାଶ, ପ୍ରସାର ଲେଖକମାନେ କିପରି ପ୍ରକାଶକମାନଙ୍କ ଶୋଷଣରୁ ମୁକ୍ତି ପାଇବେ ସେ ନେଇ ସେ କେବଳ ଚିନ୍ତା କରୁ ନଥିଲେ ସେ ଦିଗରେ ଅନେକ କାର୍ଯ୍ୟ କରିଯାଇଛନ୍ତି ।

ଲେଖକମାନଙ୍କ ପୁସ୍ତକ ପ୍ରକାଶନ ସେମାନଙ୍କ ବ୍ୟକ୍ତିଗତ ଉଦ୍ୟମରେ ଛାପିଥିବା ପୁସ୍ତକ ବିକ୍ରୀ କରିବାରେ ସାହାଯ୍ୟ କରିବା ଲାଗି ସେ "ଶାନ୍ତି ନିବାସ ବାଣୀ ମନ୍ଦିର" ପ୍ରତିଷ୍ଠା କରିଥିଲେ ।

ଏହି କିମ୍ବଦନ୍ତୀୟ ବ୍ୟକ୍ତିତ୍ୱଙ୍କ ବ୍ୟକ୍ତିଗତ ସଂପର୍କରେ ଆସିବା ପୂର୍ବରୁ ପ୍ରଥମେ ମୁଁ ତାଙ୍କୁ ଜାଣିବାର ସୁଯୋଗ ପାଇଥିଲି । ତାଙ୍କର ରଚିତ ପୁସ୍ତକ 'ତୁଠ ପଥର' ପୁସ୍ତକରୁ । ହାଇ ସ୍କୁଲରେ ଏହା ଥିଲା ଅବଶ୍ୟ ପାଠ୍ୟ ପୁସ୍ତକ। ଏଥିରେ ଥିବା ଗଳ୍ପଗୁଡ଼ିକ ମୋତେ ବେଶ ସ୍ପର୍ଶ କରିଥିଲା ।

ରାଜୁବାବୁ ଜୀବନରେ ଆଇନ୍ ବ୍ୟବସାୟ, ସାମ୍ବାଦିକତା, ପୁସ୍ତକ ରଚନା ଓ ପ୍ରକାଶନ ପ୍ରଭୃତି ବିଭିନ୍ନ କାମରେ ହାତ ଦେଇଛନ୍ତି । ସେ ସବୁକୁ ଲକ୍ଷ୍ୟ କଲେ ତାଙ୍କର ଅଧ୍ୟବସାୟ ସାହସ ଏବଂ ଉଦ୍ୟମର ପ୍ରଶଂସା ନକରି ରହି ହୁଏ ନାହିଁ ।

ବ୍ୟକ୍ତିଗତ ଜୀବନରେ ତାଙ୍କର ଉନ୍ନତ ରୁଚି ଓ ଅନ୍ୟମାନଙ୍କ ସହ ବ୍ୟକ୍ତିଗତ ସଂପର୍କ ରକ୍ଷା କରିବାରେ ସେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ଅନ୍ୟମାନଙ୍କୁ ଅନେକ ଚିଠି



ଲେଖୁଥିଲେ ବହୁ ପରିମାଣରେ ଧୂମ୍ରପାନ କରୁଥିଲେ । ଅନେକ ସମୟରେ ନିଜେ ବିଡ଼ି ପିଉ ଥିଲେ ମଧ ଅନ୍ୟମାନଙ୍କୁ ସିଗାରେଟ୍ ଯାଚୁଥିଲେ । ପ୍ରତାରଣାର ଅନେକ ଦୂରରେ ସେ ଥିଲେ । ସେ ଯେ ଓଡ଼ିଆ ଜାତିର ଅନ୍ୟତମ ସ୍ୱନାମଧନ୍ୟ ସ୍ରଷ୍ଟା ସେଥିଲାଗି ସାମାନ୍ୟ ଗର୍ବ କରିବାର ଦେଖାଯାଉ ନଥିଲା । ସମସ୍ତଙ୍କ ସହ ବେଶ୍ ମିଶୁ ଥିଲେ ।

ତାଙ୍କଠାରୁ ମୁଁ ବିଭିନ୍ନ ସମୟରେ ଅନେକ ଚିଠି ପାଇଛି । ସେସବୁ ପାଠ କଲେ ତାଙ୍କର ବ୍ୟକ୍ତିଗତ ଜୀବନ ଦର୍ଶନ, ସାହିତ୍ୟ ସାଧନା ଓ ବିଭିନ୍ନ ସାହିତ୍ୟ ଅନୁଷ୍ଠାନର କାର୍ଯ୍ୟ ପ୍ରତି କିପରି ତୀକ୍ଷ୍ଣ ଦୃଷ୍ଟିଥିଲା ତାହା ଜଣା ପଡ଼ିଥାଏ ।

ମୋ ନିକଟରେ ଥିବା ତାଙ୍କର ଚିଠିରୁ କେତେଗୋଟି ଏହି ଅବସରରେ ମୁଁ ସାଧାରଣ ପାଠକମାନଙ୍କ ନିମନ୍ତେ ଉପସ୍ଥାପନ କରୁଛି । ଏହି ଚିଠିଗୁଡ଼ିକରେ ଓଡ଼ିଆ ଜାତିର ଅନ୍ୟତମ ସ୍ରଷ୍ଟାଙ୍କର ଜୀବନ ଦର୍ଶନ ଓ ବ୍ୟକ୍ତିତ୍ୱର କିଛିଟା ଝଲକ ମିଳିପାରିବ । ଏହି ଚିଠି ବ୍ୟତୀତ ତାଙ୍କ 'ବିରହିଣୀ' ଉପନ୍ୟାସର ପୃଷ୍ଠାରେ ତାଙ୍କ 'ନିବେଦନ' ମଧ ଉଲ୍ଲେଖ କରୁଛି । ଏ ସବୁରୁ ସ୍ରଷ୍ଟାର ଜୀବନ ପଥ କିପରି କଣ୍ଟକମୟ ଏବଂ ବହୁ ବାଧା ବଂଧନ ଦେଇ ତାଙ୍କୁ ଅତିକ୍ରମ କରିବାକୁ ପଡ଼ିଥାଏ ତାହା ବେଶ୍ ଉପଲବ୍ଧି କରି ହେବ । ତାଙ୍କର ଅମର ସୃଷ୍ଟି ସିନ୍ଦୂରଗାର, ଅସରନ୍ତି, ହୃଦୟଗ ବନ୍ଧନ, ପ୍ରେମର ନିୟତି, ତୁଠପଥର, ସପନ କୁହୁଡ଼ି ପଞ୍ଜୁରୀ ପକ୍ଷୀ, ପଥିକି, ଭସାମେଘ, ସଙ୍କେତବୁଡ଼ା, ନିଶାଣ ଖୁଣ୍ଟ, ଅଷ୍ଟମୀର ଚାନ୍ଦ, ପ୍ରେମିକର ଡାଏରୀ ପ୍ରଭୃତି ଅନେକ ଗଳ୍ପ ଉପନ୍ୟାସର ସ୍ରଷ୍ଟାଙ୍କର କ'ଣ ମୃତ୍ୟୁ ହୋଇପାରେ ବୋଲି ମନରେ ପ୍ରଶ୍ନ ଉଠେ । ଏ ଲେଖା ଲେଖିଲା ବେଳେ ସୃଷ୍ଟି ସାମ୍ରାଜ୍ୟର ସ୍ୱପ୍ନର ବିନ୍ଧାଣୀଙ୍କୁ ମୋର ନମସ୍କାର ।

ଚିଠି (୧)

ପୁରୀଘାଟ ରୋଡ଼
ପୋଷ୍ଟ, କଟକ-୧
ତା ୬-୮-୬୯

ମହାଶୟ,

ପ୍ରଣାମ ନେବେ । ଆଶାକରେ ସପରିବାର ସର୍ବ କୁଶଳରେ ଥିବେ । ଆପଣଙ୍କର ୨-୭-୬୯ର ଚିଠିରେ ଜବାବ ଦେବାରେ ବିଳମ୍ବ ହେବାର କାରଣ ଲେଖୁଛି । କିଛି ତାହା ମଧ୍ୟରୁ ମୋର ବ୍ୟକ୍ତିଗତ ଜୀବନ । ପଢ଼ି ଅନୁକଂପା ହେଲେ କବିତା ବା ଗଳ୍ପଟିଏ ଲେଖି ବାଧିତ କରିବେ ।





ବାପା ବଞ୍ଚିଥିଲା ବଳେ ମୁଁ ହେଲି wise । ବାପା ହେଲେ Fool, ମୁଁ କିଛିଟା ପ୍ରଚାର ମଧ କରି ନିଜକୁ convince କଲି । ବାପା ମଲେ ୧୯୫୬ରେ ଅଦ୍ୟାବଧି ଏହି ଅଭାବ ଅପୂର୍ଣ୍ଣ ରହିଲା ।

ମୋର ମା ମରିଗଲେ ୧-୨-୬୯ । ଛମାସ ହେଲା । ବଞ୍ଚିଥିଲା ବେଳେ ସେ ଥିଲା ଅଦରକାରୀ । ଏବେ ବସି ବସି ଝୁରୁଛି । ନିରର୍ଥକ ପ୍ରହସନ ପରି । ମା ମଲାପରେ ଗୋଟିଏ ପରେ ଗୋଟିଏ ବିପଦ ଲାଗି ରହିଛି ।

(୧) ଶ୍ରୀମତୀ ବସନ୍ତ କୁମାରୀ ଦେବୀ ହଠାତ୍ ନୀରବରେ ଭଗବତ ଉପାସନା କରିବାକୁ କଟକ ଛାଡ଼ି ଦୁଇମାସ ପୁରୀରେ ରହି ଏବେ ଅଢ଼େଇ ମାସ ଆସନ୍‌ସୋଲ୍‌ରେ । ବହି ଦୋକାନରେ କ'ଣ କରିବାକୁ ହେବ ମୁଁ ଅଭ୍ୟାସ ହରାଇ ଭୁଲି ଯାଇଛି । ତଥାପି କାଳେ ଏହି ଛୋଟ ଦୋକାନଟି ଜୀବନର ଶେଷ ଓ ବହୁମୂଲ୍ୟ ଆଶ୍ରୟ ହୋଇଥିବ ଭାବି ରଖି ବସିଛି ।

(୨) ହାଇକୋର୍ଟ ଜଜ୍ ହେବା ଗୌରବ ବର୍ଷେ ଭୋଗ କଲାପରେ ଆମର ଦଶବର୍ଷ ଜୁନିୟର ସାହେବମାନେ ଜଜ୍ ହେଲେ । ତେଣେ ନିଜର So called ମାନସମ୍ମାନ ଅହଂକାରକୁ ଜୀଆଁଇ ରଖିବାକୁ ହାଇକୋର୍ଟର ସଂପୂର୍ଣ୍ଣ ମହକିଲଙ୍କୁ ମକଦ୍ଦମା ଫେରାଇ ଦେଲି । ଏବେ ତଳକୋର୍ଟରେ ରହିଛି । ପ୍ରତ୍ୟେକ ଦିନ ଗାଳି ଓ ଭର୍ତ୍ସନା ଶୁଣି ଗ୍ରହଣ କରି ମଧ ଦିନକର ଖର୍ଚ୍ଚ ପ୍ରତିଦିନ ଉଠୁନାହିଁ ।

(୩) କାନ୍ଦିବାକୁ ଜାଗା ନାହିଁ । ଏକୁଟିଆ ବସି କାନ୍ଦିଲେ ଚାରିବର୍ଷର ପୁଅ ଆସି ଆଖି ପରୀକ୍ଷା କରି ଦେଖୁଛି । ଶୈଳବାଳା ଦେବୀ ଆସି go on Husbandjee କହୁଛନ୍ତି ତେଣୁ ବଞ୍ଚିବାର କାର୍ଯ୍ୟ କରିବାର ବା ମରିବାର ଚିନ୍ତା ନାହିଁ । ଆତ୍ମହତ୍ୟା କଥା ବହୁତ ଦିନ ଚେଷ୍ଟା କରିଥିଲି । ୧୯୬୭ରେ ଗୋଟିଏ କାର Accident ରେ ହିନ୍ଦୋଳରୋଡ଼ ପାଖରେ ବଞ୍ଚାଅ ବଞ୍ଚାଅ ପାଟି କଲାବେଳେ Suicide mania ମରିଗଲା । ବରଂ ଜୀଇଁବାକୁ ଇଚ୍ଛା ସାମାନ୍ୟ ବଢ଼ିଲା ।

ହଁ, ବହି କଥା । 'ରଣଝଂକାର' (କବିଚନ୍ଦ୍ର) ତୂର୍ଯ୍ୟନାଦ (ରବି ମହାପାତ୍ର) ଓ ଆପଣଙ୍କ ଆଗ୍ନେୟ ଶପଥ ତିନଟି ଯାକ ଏବେ ଅଚଳନ୍ତି । ଯଦି ସେମାନେ ଫେରନ୍ତି ତେବେ ଏହି କବିତା କାହାକୁ ଉଦ୍‌ବୁଦ୍ଧ କରିବ ନାହିଁ । କାର୍‌ଣ ଚୀନା ବା ପାକିସ୍ଥାନ କେହି field ରେ ନାହାଁନ୍ତି । ସେମାନେ ନୂଆ ନୂଆ ହେବେ ।

ଏଣେ ଆମ ଘର ଏକାଠି ରହିବକି Partition ହେବ ଅନିଶ୍ଚିତ । ଏକାଠି ରହିଲେ



ମଧ୍ୟ Stock Space ଓ Store Self ନାହିଁ । ଯାହା 'ଆଗ୍ନେୟ ଶପଥ' ଅଛି ସେତକର ହିସାବ ଯାହା ପାଇଛନ୍ତି ତାପରେ ବିକ୍ରୀ ବନ୍ଦ । ତେଣୁ ଆଉ ବହି ରଖିବାର ସୁବିଧା ନାହିଁ ।

ତଥାପି କ'ଣ ଆମେ ଲେଖିବା ନାହିଁ ଲେଖି କ'ଣ ଛପାଇବା ନାହିଁ ? ଲେଖିବା ଓ ଛାପିବା । ଶେଷକୁ ଏମିତି ଦହଗଞ୍ଜ ହେଉଥିବା । ବିନୀତ

ରାଜକିଶୋର

ଚିଠି -୨

ଶାନ୍ତି ନିବାସ ବାଣୀମନ୍ଦିର
ପୁରୀଘାଟ ରୋଡ୍
ପୋଷ୍ଟ : କଟକ-୯
୮-୪-୭୪

ମହାଶୟ,

ଚିଠି ମିଳିଲା । ପ୍ରଣାମନ୍ତର ଜଣାଉଥିବେ । ଏହି ଦୋକାନ ଏବେ ଅଚଳ । ଘର ଚାକର ବହି ଚୋରି କରୁଛନ୍ତି । ପୁରୁଣା କାଗଜର ଉଈମାନେ ପାକ୍ଷିକ ଆକ୍ରମଣ କରି Lattory ଦ୍ୱାରା ଧ୍ୱଂସ କରୁଛନ୍ତି । ଜାତୀୟକରଣ ପରେ ଦୋକାନୀମାନେ ବହି ଦାମ୍ ବଢ଼ାଇ Cut throt ପ୍ରତିଦ୍ୱନ୍ଦ୍ୱିତା କରୁଛନ୍ତି । ଆମେମାନେ ବୁଢା ଓ ଖାନନଗର ମଶାଣିର ନିକଟର ହେଉଛୁ । 'ଆଗ୍ନେୟ ଶପଥ' ତିରିଶ ଖଣ୍ଡରୁ ଅଧିକ ଅଛି । ପାଞ୍ଚ ଖଣ୍ଡ ରଖି ଅବଶିଷ୍ଟ ପ୍ରାପ୍ୟ ଓ ବହି ଯଥାଶୀଘ୍ର ପଠାଇ ଦେବୁ ।

(୨) କୁଶଳ ଚିଠି ପ୍ରାପ୍ୟ ହିସାବ କରି ଦେଇ ଦେବୁ । ବହି କେତେ ରହିବ ସେତେବେଳକୁ ଜଣାଇବି ।

(୩) ପନ୍ଦର ପରେ ପ୍ରାପ୍ୟ ପାଇ ନଥିଲେ ଖଣ୍ଡେ ଚିଠି ଦେବେ । ନେପାକ ବାବୁଙ୍କ ଚିଠି ବହି ପଠାଇ ଦେବେ ।

ରାଜକଶୋର ପଟ୍ଟନାୟକ





# ନିଷ୍ପାପର ବିଦ୍ୱାନ

ରବିନାରାୟଣ ମହାପାତ୍ର

ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିଜକୁ ଯୁଗ-ପ୍ରବର୍ତ୍ତକ କଥାକାର ବୋଲି ୧୯୮୮ ଅପ୍ରେଲ୍ ୫ରେ ଲିଖିତ ନିଜର ସଂକ୍ଷିପ୍ତ ପରିଚୟ ପୁସ୍ତକ କଟକ ଡିଷ୍ଟ୍ରିକ୍ଟବାର୍‌ରେ ତା' ପରଦିନ ୬ରେ ବିଶିଷ୍ଟ ଓକିଲ ମାଧବାନନ୍ଦ ଦାସ ଉନ୍ମୋଚନ କରିଛନ୍ତି । କଥାକାର ରାଜକିଶୋର ପଟ୍ଟନାୟକଙ୍କର ଏହି ଘୋଷଣା ବଳିଷ୍ଠ ଆତ୍ମ-ବିଶ୍ୱାସ ନାଁ ଚରମ ଆସ୍ଫାଳନ ତାହା ହୁଏତ, ପ୍ରଥମେ କଳନା କରି ହେଉନଥିଲା । ମାତ୍ର ସମସାମୟିକ ସମାଜରେ 'ଜୀବନର ପ୍ରଧାନ ଶିକ୍ଷା' ଶିରୋନାମାରେ ସେ ଉଲ୍ଲେଖ କରିଛନ୍ତି ଯେ, '(କ) ଯୋଗ୍ୟତା ଗୋଟିଏ ଶବ୍ଦ, ଏହାର ବ୍ୟବହାର ହେଉଛି ଖୁସାମଦ ଦ୍ୱାରା (ଖ), ଯୋଗ୍ୟତା ସହିତ ଧନର ସମ୍ପର୍କ ନାହିଁ । ଆୟ ସହିତ ଯୋଗ୍ୟତାର ବନ୍ଧନ ନାହିଁ । (ଗ) ଯୋଗ୍ୟତା ସହିତ ଲୋକ-ସ୍ୱୀକୃତି, ରାଷ୍ଟ୍ର-ସ୍ୱୀକୃତି ଓ ପରିବାରର ସ୍ୱୀକୃତିର ସମ୍ବନ୍ଧ ନାହିଁ । ଯୋଗ୍ୟତା ଗୋଟିଏ ବହୁମୁଖୀ ଅର୍ଥର ଶବ୍ଦ ହୋଇଗଲାପରେ ଯୋଗ୍ୟତାକୁ ଆଣି ଲୋକେ ଥାପିଥାନ୍ତି । (ଘ) ବଞ୍ଚିବା ପାଇଁ ଯୋଗ୍ୟତା ନୁହେଁ ଅନ୍ୟର ଦୟା ବେଶି ଦରକାର ।

ଜୀବନରୁ ଏହି ଶିକ୍ଷା ପାଇଛନ୍ତି ବୋଲି ସ୍ପଷ୍ଟଭାବରେ ଉଲ୍ଲେଖ କରିଥିବା ରାଜକିଶୋରଙ୍କ ମାନସିକତାକୁ ବିଶ୍ଳେଷଣ କଲେ ମନେହୁଏ ଯେ ଗଭୀର ଆତ୍ମ-ବିଶ୍ୱାସ ଏବଂ ସାମର୍ଥ୍ୟର ପୃଷ୍ଠଭୂମିରେ ସେ ଏପରି ଭାବରେ ଦୃଢ଼ୋକ୍ତି କରି ପାରିଛନ୍ତି, ଅଭିଜାତ ପରିବାରରେ ମୂଲ୍ୟବୋଧକୁ ସମ୍ବଳ କରି ସେ ଜୀବନ ସାରା ନିଜର ମସ୍ତକ ଉନ୍ନତ ରଖିଛନ୍ତି । କୌଣସି ସ୍ୱାର୍ଥ ପାଇଁ ନିଜର ମସ୍ତକ ଅବନତ ହେବାକୁ ଦେଇ ନାହାନ୍ତି । କ୍ରମ ବର୍ଦ୍ଧିଷ୍ଣୁ ଆଜିର ବୈଶ୍ୟ-ସଭ୍ୟତାରେ ସେଥିପାଇଁ ତାଙ୍କୁ ବହୁତ ମୂଲ୍ୟ ଦେବାକୁ ପଡ଼ିଛି । ସ୍ୱାଭାବିକ ଭାବରେ ସେ ତାଙ୍କର ଉଚିତ ପ୍ରାପ୍ୟ ପାଇ ନାହାନ୍ତି । ସେଥିପାଇଁ ରକ୍ତମାଂସର ମଣିଷ ହିସାବରେ ତାଙ୍କର ହେଉଥିବା ଅବଶୋଷକୁ ସେ ସଂଯତ କରି ରଖିଛନ୍ତି । ବେଳେବେଳେ କେଉଁଠି କେମିତି ତୀର୍ଯ୍ୟକ ଭାବରେ କିଛିଟା ପ୍ରକାଶ ପାଇଯାଇଛି । ସେ ଯାହାହେଉ ନଶ୍ୱର ମଣିଷ ଏବଂ ସୃଷ୍ଟିଚକ୍ରର ରହସ୍ୟରେ ତଟସ୍ଥ ହୋଇ ସେ ଶୈଶବରେ ଏକାଧିକ ବାର ଆତ୍ମହତ୍ୟାପାଇଁ ଅସଫଳ ଉଦ୍ୟମ କରିଛନ୍ତି । ତାଙ୍କରି ସ୍ରଷ୍ଟା-ମାନସ ଉପନ୍ୟାସ 'ସିନ୍ଦୂରଗାର' ମାଧ୍ୟମରେ ମାତ୍ର ସତର ବର୍ଷ ବୟସରେ ଆତ୍ମପ୍ରକାଶ କରେ । ତା'ପରେ ସେ ତତ୍‌କାଳୀନ ପତ୍ରପତ୍ରିକାରେ ଧାରାବାହିକ ଭାବରେ ଗପ ଲେଖିଲେ ଏବଂ ତାଙ୍କର ଉପନ୍ୟାସ ସବୁ ପ୍ରକାଶ ପାଇବାକୁ ଲାଗିଲା ।

ସେ ପୂରାପୂରି ଭାବରେ ମୌଳିକ ସ୍ରଷ୍ଟା ଏବଂ ସମସାମୟିକ ସମାଜରୁ ତାଙ୍କର ଚରିତ୍ର ସବୁ ଚୟନ କରିଛନ୍ତି । ଏହିସବୁ ଚରିତ୍ରକୁ ସେ ଗଭୀର ଭାବରେ ବିଶ୍ଳେଷଣ ଏବଂ ଅଧ୍ୟୟନ ମଧ୍ୟ କରିଛନ୍ତି । କାହାପାଖରେ ଆପୋଷ ସମାଧାନ କରିବା କି ନିଜର ସ୍ୱାଧୀନମତକୁ ଆଚ୍ଛାଦିତ କରିବାର ଚେଷ୍ଟା ସେ କରିନାହାନ୍ତି । ଜୀବନର ସକଳ ପ୍ରଚେଷ୍ଟା ଏବଂ ଗୌରବକୁ ଟସ୍‌ରେ ହାରିଯାଇ, ପୁନର୍ବାର ଉଦ୍ୟମ ଆରମ୍ଭ କରିବାରେ ସେ ହତୋତ୍ସାହ ହୋଇ ନାହାନ୍ତି । ବେପରୁଆ ଭାବରେ ସେ ଆଗେଇ ଯାଇଛନ୍ତି ଜୀବନର ଚଲାବାଟରେ- ପରିସ୍ଥିତି ଓ ପରିବେଶକୁ ଭ୍ରୂକ୍ଷେପ ନକରି । ତେବେ ଏହିପରି ମାନସିକତା ଏବଂ ବ୍ୟକ୍ତିତ୍ୱର ଅଧିକାରୀ ସେ କିପରି ଭାବରେ ହେଲେ ?

ଏକେ ମେଧାବୀ ଛାତ୍ର ଏବଂ ପରିବାରର କଠୋର ଶୃଙ୍ଖଳାରେ ପରିଚାଳିତ । ପାଞ୍ଚଭାଇ, ଚାରିଭଉଣୀର ସଂସାରରେ ବଡ଼ପୁଅ ହେଲେ ମଧ୍ୟ ସେ ଥିଲେ ସ୍ୱପ୍ନ ବିଳାସୀ । ଏହି ପରିସ୍ଥିତିରେ ମୂଲ୍ୟବୋଧର ଅଭ୍ୟାସ ସହିତ ପରିବର୍ତ୍ତିତ ମୂଲ୍ୟମାନର ପ୍ରଭାବ ବୃଦ୍ଧି, ତେଣୁ ପରିସ୍ଥିତି ସହିତ ମାନସିକ ସଂଘର୍ଷ କ୍ରମେ ତାଙ୍କୁ ବାସ୍ତବତାରୁ ଦୂରେଇ ନେଇଛି, ସେଥିପାଇଁ ତାଙ୍କର ସ୍ୱପ୍ନବିଳାସୀ ପଳାୟନପନ୍ଥୀ ହେବାର କଥା, ମାତ୍ର ବିଜ୍ଞାନର ବସ୍ତୁନିଷ୍ଠ ଆଭିମୁଖ୍ୟରେ ସେ ଆଦର୍ଶବାଦୀ ମାର୍ଗରେ ବାସ୍ତବ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ସଂକଳ୍ପବଦ୍ଧ । ସବୁ ବିଷୟକୁ ଯୁକ୍ତିସିଦ୍ଧ ଭାବରେ ପ୍ରତିପାଦିତ କରିପାରିବାର ସାହସର ଉତ୍ସ ହେଉଛି ଏହି ମାନସିକତା । ତେବେ ତାଙ୍କ ବଂଶ ପରମ୍ପରାର କଳିଙ୍ଗୀ ସ୍ୱାଭିମାନ ପରିବର୍ତ୍ତିତ ପରିସ୍ଥିତିରେ ଓଡ଼ିଶୀ-ସ୍ୱାଭିମାନ ଭାବରେ ପରିବର୍ତ୍ତିତ ।

ତାଙ୍କ ଶୈଶବରେ ସେ ଉତ୍କଳ ଗୌରବ ମଧୁସୂଦନ ଦାସ ଏବଂ ତତ୍‌କାଳୀନ ଓଡ଼ିଆ ଆନ୍ଦୋଳନର ଅଗ୍ରଗାମୀ ନିରଞ୍ଜନ ପଟ୍ଟନାୟକଙ୍କର ଦେଶ ମିଶ୍ରଣ ଆନ୍ଦୋଳନ ପ୍ରତି ଆକୃଷ୍ଟ । ଏହି ଆନ୍ଦୋଳନକୁ ବିଦେଶୀ ସରକାର, ପ୍ରଶାସକ ଏବଂ ରାଜା ଜମିଦାରମାନେ ସମର୍ଥନ କରିଥାନ୍ତି । ଅପର ପକ୍ଷରେ ଉତ୍କଳ ସମ୍ମିଳନୀକୁ ଜାତୀୟ ମହାସ୍ରୋତରେ ବିଲୀନ କରିଦେଇ ଉତ୍କଳମଣି ଗୋପବନ୍ଧୁଙ୍କ ନେତୃତ୍ୱରେ ମହାଭାରତୀୟ ଆନ୍ଦୋଳନ ଠାରୁ ସାଧାରଣ ଅଭିଜାତ ପରିବାର ନିରାପଦ ଦୂରତ୍ୱରେ ରହୁଥାନ୍ତି । ସାଇମନ କମିଶନକୁ ସ୍ୱାଗତ କରି ବ୍ରିଟିଶ କୂଟନୀତିର ସମତୁଲ ନ୍ୟାୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ମାତ୍ର ଛଅଟି ଜିଲ୍ଲାକୁ ନେଇ ଗଠିତ ହେଲା । ଉତ୍କଳ ସମ୍ମିଳନୀ ଏବଂ ଓଡ଼ିଆ ଆନ୍ଦୋଳନର ଆବେଦନ ତେଣୁ ହ୍ରାସ ପାଇଲା । ମାତ୍ର ମହାଭାରତୀୟ ଆନ୍ଦୋଳନ ସ୍ୱାଧୀନତା ପରେ ଶାସକ ଦାୟିତ୍ୱ ହାତକୁ ନେଇ ବିନା ପ୍ରସ୍ତୁତିରେ କ୍ଷମତାଶାଳୀ ରାଜ-ନେତା ଏବଂ ସେମାନଙ୍କର ଅନୁଗାମୀ ଶ୍ରେଣୀ ସୃଷ୍ଟି କରିଦେଲା । ଫଳରେ ସମସାମୟିକ ସମାଜରେ ନିଖିଳ ଓଡ଼ିଶା ଦଳର ସାମାଜିକ



ପ୍ରଭାବ କିଛି ରହିଲା ନାହିଁ । ଯୋଜନାବଦ୍ଧ ଅର୍ଥନୀତି ଏବଂ ସାବାଳକ ଗଣତନ୍ତ୍ରର ମୁଣ୍ଡଗଣତି ଅବସ୍ଥାରେ ମଣିଷ ବୋଲି ଜ୍ଞାନ କରାଯାଉନଥିବା ସାନ ମଣିଷମାନେ ହଠାତ୍ ଇତିହାସର ନିର୍ମାତା ହୋଇ ବସିଗଲେ । ଇତିହାସର ଏ ନୂତନ ମୋଡ଼ରେ ରାଜକିଶୋରଙ୍କ ପରି ବହୁ ମେଧାବୀ ଛାତ୍ର ଲକ୍ଷ୍ୟହୀନ ହୋଇପଡ଼ିବା ସ୍ୱାଭାବିକ । ତଥାପି ସେଇ ପରିସ୍ଥିତିରେ ଉଚ୍ଚଶିକ୍ଷା ଲାଭ କରି ସ୍ୱାଧୀନଜୀବୀ ଅଧିବକ୍ତା ଭାବରେ ଜୀବିକା ଓ ଜୀବନର ସମନ୍ୱୟ କରିବାକୁ ସେ ଲାଗି ପଡ଼ିଲେ । କିନ୍ତୁ ମୁଣ୍ଡସୁମାରି ଗଣତନ୍ତ୍ରର କୁପ୍ରଭାବ ନ୍ୟାୟ-ପାଳିକା ଉପରେ ପରୋକ୍ଷରେ ପଡ଼ିଲା ଏବଂ ଏହାଦ୍ୱାରା ବହୁ ମେଧାବୀ ଅଧିବକ୍ତାଙ୍କର ନିର୍ଭିକ ସ୍ୱର ଏବଂ ଆଇନର ଶାସନାଦର୍ଶ ମ୍ଳାନ ହୋଇପଡ଼ିଲା । ତଥାପି ରାଜକିଶୋର ସାହସ ନହରାଇ ଜୀବିକାକୁ ସାହସର ସହିତ ଚଳାଇ ଚାଲିଲେ ଏବଂ ନିଜର ଉଦ୍‌ବେଗ ଓ ଚାପକୁ ସାହିତ୍ୟରେ ପ୍ରକାଶିତ କରିବାକୁ ଲାଗିଲେ । ସେଥିରେ ସେ ସୁନାମ ଅର୍ଜନ କଲେ ସତ; ମାତ୍ର ରୋଜଗାର ଦୃଷ୍ଟିରୁ ତାହା ସେପରି ଲାଭପ୍ରଦ ହୋଇପାରିଲା ନାହିଁ ।

ଅଭିଜାତ ଶ୍ରେଣୀର ତୁଙ୍ଗ ଆଦର୍ଶରେ ଅନୁପ୍ରାଣିତ ହୋଇ ମଧ୍ୟ ସେ ସାଧାରଣ ମଣିଷର ସୁଖ ଦୁଃଖ ପ୍ରତି ସହାନୁଭୂତିଶୀଳ ହେଲେ ଏବଂ ଧନ୍ଦାଗତ ଶ୍ରେଣୀର ସମତୁଲ ସ୍ୱାଧୀନତା ବଦଳରେ ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କ ବନ୍ଧନହୀନ ବ୍ୟକ୍ତିବାଦ ଦ୍ୱାରା ପ୍ରଭାବିତ ହେଲେ, ହେଲେ ପରିବାରର ନିର୍ମମ ଶୃଙ୍ଖଳା ଏବଂ ସଂହତି ଦ୍ୱାରା ଏହି ବନ୍ଧନହୀନ ବ୍ୟକ୍ତିବାଦ ପଦେ ପଦେ ଆକ୍ରାନ୍ତ ହେଲା । ସେ କରିବେ କ'ଣ ? ନିରାପଦ ମାସିକ ବେତନ ସର୍ବସ୍ୱ ବହୁ ନିଯୁକ୍ତି ସୁଯୋଗ ଆସିଲେ ମଧ୍ୟ ସେ ନିଜର ଅଦ୍ଭୁତ ଆତ୍ମ-ବିଶ୍ୱାସ ବଳରେ ଅନାୟାସରେ ସେ ସବୁ ପ୍ରତ୍ୟାଖ୍ୟାନ କରିଦେଲେ । ଅପରପକ୍ଷରେ ମାନ ଅପମାନକୁ ଭ୍ରୁକ୍ଷେପ ନକରି ବହୁ ସାନମଣିଷ ନିରାପଦ ଆୟ ଗୋଷ୍ଠୀରେ ସାମିଲ ହୋଇଯାଇ ସମାଜ ସୁନ୍ଦର 'କଖାରୁ ବଡ଼ି' ବ୍ୟକ୍ତିତ୍ୱର ଅଧିକାରୀ ହୋଇଗଲେ । ଆଡ଼ମ୍ବର ଏବଂ ଭୋଗଲିପ୍‌ସା ସର୍ବସ୍ୱ ସ୍ୱଚ୍ଛନ୍ଦ ଖାଉଟି ଜୀବନ ଏବଂ ତଦ୍‌ଜନିତ ସାମାଜିକ ମର୍ଯ୍ୟାଦାମାନ ସଂଗଠିତ ହୋଇ ସ୍ୱାଭିମାନୀ ସ୍ୱାଧୀନ ଜୀବୀ ଜୀବନର ପଥରୋଧ କରିଚାଲିଲା । ତଥାପି ଗ୍ଲାନି ପୀଡ଼ିତ ହେଲେ ମଧ୍ୟ ସ୍ୱାଧୀନଜୀବୀ ବ୍ୟକ୍ତିତ୍ୱ ନିଜର ମୂଲ୍ୟବୋଧକୁ ପରିତ୍ୟାଗ କରି ପାରିଲା ନାହିଁ ।

ରାଜକିଶୋର ଏହିପରି ଭାବରେ ପରିଣାମ ପ୍ରତି ଭ୍ରୁକ୍ଷେପ ନକରି ନିର୍ଭୀକ-ସ୍ୱରରେ ବାର୍ତ୍ତାବହ ହେଲେ ଏବଂ ଅତି ନିର୍ମମ ଭାବରେ ସଂଗ୍ରାମ କଲେ । ରାଜା ମହାରାଜାଙ୍କର ଦାନରେ ନିର୍ମିତ ଉତ୍କଳ ସାହିତ୍ୟ ସମାଜର ଭବନରେ ସାହିତ୍ୟ ନାମରେ ଅସାହିତ୍ୟିକମାନଙ୍କର ଖଟି ଚାଲିଲା । ଫଳରେ ସାହିତ୍ୟ ବଦଳରେ କୋଠା ନିର୍ମାଣ ଓ

ସଂରକ୍ଷଣ ହିଁ ସାହିତ୍ୟର ପ୍ରଧାନ ଉପଲକ୍ଷ୍ୟ ହୋଇ ରହିଲା । ସାହିତ୍ୟ ନାମରେ ଏହି ଆଭିମୁଖ୍ୟ ଏବଂ ଶସ୍ତା ସାହିତ୍ୟ ପ୍ରେମୀର ଭୂମିକା ତାଙ୍କୁ ମ୍ରିୟମାଣ କଲା । ଏହାଦ୍ୱାରା ଉତ୍କଳ ସାହିତ୍ୟ ସମାଜରୁ ବାହାରି ଯାଇ ଦଳେ ସମ୍ମିଳନୀ ସର୍ବସ୍ୱ 'ଓଡ଼ିଆ ସାହିତ୍ୟ ପରିଷଦ' ଗଠନ କରି ଜାକଜମକରେ ଭୋଜିଭାତ ଏବଂ ଉତ୍ସବ କଲେ । ତତ୍‌କାଳୀନ ରାଜନୀତି ବର୍ତ୍ତମାନର ସିଟି ହସ୍‌ପିଟାଲ୍ ପରିସରରେ ଓଡ଼ିଶା ସଚିବାଳୟ, ସୀମିତ ଭୋଟ ପ୍ରଥାରେ ଆଂଶିକ ସ୍ୱାୟତ୍ତ ଶାସନ ଭାବରେ କଟକ ପୌର ପାଳିକା ଏବଂ କଟକ ଶ୍ରୀରାମଚନ୍ଦ୍ର ଭବନ ମଧ୍ୟରେ ସୀମାବଦ୍ଧ ହୋଇ ରହିଲା । ଏହି ଦୃଷ୍ଟିରୁ ଏ ଦୁଇ ଅନୁଷ୍ଠାନକୁ ନିଜ ନେତୃତ୍ୱରେ ମିଶାଇ ଦେଇ ଏକ ବଳିଷ୍ଠ ସାରସ୍ୱତ ଅନୁଷ୍ଠାନର ପୂର୍ନଗଠନ ପାଇଁ ତତ୍‌କାଳୀନ ରାଜ-ନେତା ଏବଂ ସାହିତ୍ୟିକ ହରେକୃଷ୍ଣ ମହତାବ ପ୍ରବଳ ଉଦ୍ୟମ କଲେ । ମାତ୍ର ତାଙ୍କର ଏ ଉଦ୍ୟମକୁ ବଳିଷ୍ଠ ସାହିତ୍ୟିକ ରାଜକିଶୋର ୧୯୪୫ରେ ତୀବ୍ର ଭାବରେ ବିରୋଧ କରିଥିଲେ । ଫଳରେ ମହତାବଙ୍କ ଯୋଜନା ଫଳବତୀ ହେଲା ନାହିଁ । ମାଲି ମକଦ୍ଦମାରେ ଜର୍ଜରିତ ଉତ୍କଳ ସାହିତ୍ୟ ସମାଜରେ ତାଲା ଝୁଲିଲା । ଏସବୁ ବିଷୟ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ପ୍ରକାଶିତ 'ବିଷୁବର ଦଶବର୍ଷ'- ଦୁଇଟି ଦଶନ୍ଧିର ଦୁଇଖଣ୍ଡ ବହି ଦେଖିଲେ କିଛିଟା ଜାଣିହେବ ।

ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାବରେ ମହତାବ ତତ୍‌କାଳୀନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିନ୍ତାମଣି ଆଚାର୍ଯ୍ୟଙ୍କୁ ଉତ୍କଳ ସାହିତ୍ୟ ସମାଜର ସଭାପତି ନିଯୁକ୍ତ କରି ସେହି ଅନୁଷ୍ଠାନର ପୁନର୍ଗଠନ କରିଥିଲେ । ମାତ୍ର ସେଥିରେ ରାଜକିଶୋରଙ୍କର ସ୍ଥାନ ଆଉ ରହିଲା ନାହିଁ । ଓଡ଼ିଶାରେ ସ୍ୱତନ୍ତ୍ର ନ୍ୟାୟାଳୟ ହେଲେ ମଧ୍ୟ ସେଥିରେ ସମଧିକ ଗୁରୁତ୍ୱ ମିଳିଲା ନାହିଁ । ଏହାର ଏକମାତ୍ର କାରଣ ହେଉଛି ତାଙ୍କର ନିର୍ଭିକତା ପ୍ରତି ସମାଜର ସବୁ ସ୍ତରରେ ଅସମ୍ଭବ ଭୟ । ତେବେ ମହତାବ ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରନ୍ତି । ସେ ରାଜୁବାବୁଙ୍କୁ ଅନୁରୋଧ କରି ଲୋକ ପଠାଇ ତାଙ୍କଠାରୁ ଗଳ୍ପ ସଂଗ୍ରହ କରି 'ଝଙ୍କାର'ରେ ପ୍ରକାଶ କରାଇଲେ ଏବଂ ସେଥିପାଇ ନିର୍ଭୀକ ସାହିତ୍ୟିକ ଭାବରେ 'ବିଷୁବ ପୁରସ୍କାର' ପ୍ରଦାନ କଲେ । ଏହା ଥିଲା ଯୋଗ୍ୟ ଲୋକ ଯେତେ ବିରୋଧୀ ହେଲେ ମଧ୍ୟ ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଜ୍ଞାପନ କରିବାକୁ ହେବାର ମୂଲ୍ୟବୋଧ ।

କିନ୍ତୁ ଏହାଦ୍ୱାରା ରାଜୁବାବୁ ମହତାବ ବାବୁଙ୍କର ଅନୁଗତ ହୋଇ ଯାଇନଥିଲେ । ସେ ସରକାରୀ ପରିଚାଳନାରେ ପ୍ରତିଷ୍ଠିତ ସାହିତ୍ୟ ଆକାଡ଼େମୀ ଗଠନର ଦୃଢ଼ ପ୍ରତିବାଦ କରିଥିଲେ ଏବଂ ଏଥିପାଇଁ ମୋ ଉଦ୍ୟମରେ ଗଠିତ 'ସାହିତ୍ୟ ସଂସଦ'କୁ ସମର୍ଥନ କରି ଚିନ୍ତାନାୟକ ଚିନ୍ତାମଣି ମିଶ୍ର 'ଡଗର' ସମ୍ପାଦକ ନିତ୍ୟନନ୍ଦ ମହାପାତ୍ର ଏବଂ ଗାଳ୍ପିକ



ସୁରେନ୍ଦ୍ର ମହାନ୍ତିଙ୍କ ସହିତ ମିଶି ସାହିତ୍ୟ କ୍ଷେତ୍ରରେ ସରକାରୀ ଅନୁପ୍ରବେଶର ଦୃଢ଼ ବିରୋଧ କରିଥିଲେ । ପରବର୍ତ୍ତୀ ସମୟରେ ନିତ୍ୟାନନ୍ଦ ମହାପାତ୍ର ଏବଂ ସୁରେନ୍ଦ୍ର ମହାନ୍ତି ମହତାବଙ୍କ ଦ୍ୱାରା ପ୍ରଭାବିତ ହୋଇ ସାହିତ୍ୟ ସଂସଦ ଛାଡ଼ି ସାହିତ୍ୟ ଆକାଡେମୀରେ ଯୋଗ ଦେଲେ ଏବଂ ପରବର୍ତ୍ତୀ ସମୟରେ ସଭାପତି ମଧ୍ୟ ହେଲେ । ସ୍ୱତନ୍ତ୍ର ଜନ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ବେଳେ କିଛି ସମୟ ପାଇଁ ରାଜୁବାବୁ ସାହିତ୍ୟ ଆକାଡେମୀର ସଭ୍ୟ ହୋଇଥିଲେ ମଧ୍ୟ ନିଜର ନିର୍ଭୀକ ସ୍ୱର ଏବଂ ସାହିତ୍ୟ ସଂସଦକୁ ପରିତ୍ୟାଗ କରିନାହାନ୍ତି ।

ସେ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସାହିତ୍ୟ ସଂସଦର ବିଶିଷ୍ଟ ସଭ୍ୟଥିଲେ ଏବଂ ପ୍ରାୟ ସାହିତ୍ୟ ସଂସଦର ବାର୍ଷିକ ଅଧିବେଶନ ଶିଶିର ଉତ୍ସବ ଏବଂ ଓଡ଼ିଆ ଲେଖକ ସମ୍ମେଳନରେ ସକ୍ରୀୟ ଭାବରେ ଅଂଶ ଗ୍ରହଣ କରୁଥିଲେ । ସେ ତାଙ୍କର ନିର୍ଦ୍ଧାରିତ ମତ ଏବଂ ପଥରୁ କୌଣସି ପରିସ୍ଥିତିରେ ମଧ୍ୟ ବିଚ୍ୟୁତ ହୋଇ ନାହାନ୍ତି ।

ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସେ ସ୍ୱତନ୍ତ୍ର ଦଳର ସଂଗଠନ ସମ୍ପାଦକ ହେଲେ ଏବଂ ତାଙ୍କରି ପାଇଁ ଓଡ଼ିଶାରେ ସର୍ବପ୍ରଥମେ ମିଳିତ ମନ୍ତ୍ରିମଣ୍ଡଳ ଭାବରେ ସ୍ୱତନ୍ତ୍ର ଓ ଜନକଂଗ୍ରେସ ସରକାର ଗଠିତ ହେଲା । ଏହାଦ୍ୱାରା ୧୯୪୮ ଜାନୁଆରୀ ୧ରେ ମିଶିଥିବା ଗଡ଼ଜାତ ଅଞ୍ଚଳର ମୋଗଲବନ୍ଦୀ ଅଞ୍ଚଳ ସହିତ ସ୍ୱାଭାବିକ ସଂହତିର ପଥ ଉନ୍ମୁକ୍ତ ହେଲା । ମାତ୍ର ଦୁଇଟି ଭୋଟ କମ୍ ହେବାରୁ ସେ ହାରିଗଲେ ଏବଂ ଦଳୀୟ ବିଶ୍ୱାସଘାତକତା ପାଇଁ ସ୍ୱତନ୍ତ୍ରଦଳ ଛାଡ଼ି 'ସ୍ୱାଧୀନ-ଓଡ଼ିଶା ଦଳ' ଗଠନ କଲେ । ତାଙ୍କରି ପ୍ରରୋଚନାରେ ମୁଁ କଟକ ବିଧାନ ସଭା ଏବଂ ଶୈଳବାଳା ପଟ୍ଟନାୟକ କଟକ ଲୋକସଭା ପାଇଁ ୧୯୬୭ ନିର୍ବାଚନରେ ପ୍ରାର୍ଥୀ ହୋଇଥିଲୁ । ଆମେ ହାରି ଯାଇଥିଲେ ମଧ୍ୟ କେବଳ ଚିଠିଲେଖି ଭଲ ଭୋଟ ପାଇଥିଲୁ । ରାଜନୈତିକ ପୁଞ୍ଜି ଅଭାବରୁ ସେ ଦଳ ଚାଲିପାରିଲା ନାହିଁ । ମାତ୍ର ସେତେବେଳେ ଧର୍ମଶାଳାରେ ପ୍ରତିଦ୍ୱନ୍ଦ୍ୱିତା କରି ଅମାନତ ହରାଇଥିବା ବନ୍ଧୁ ଜାନକୀବଲ୍ଲଭ ଏବେ ଓଡ଼ିଶାରେ ଦୀର୍ଘକାଳ ଧରି ମୁଖ୍ୟମନ୍ତ୍ରୀ ହୋଇ ପାରିଛନ୍ତି ।

ଏଥି ସଙ୍ଗେ ସଙ୍ଗେ ପୁସ୍ତକ ପ୍ରକାଶନ ଓ ବିକ୍ରୟର ସୁବିଧା ପାଇଁ ସେ 'ଶାନ୍ତି ନିବାସ ବାଣୀ ମନ୍ଦିର ପ୍ରତିଷ୍ଠା କଲେ ଏବଂ ଔପନ୍ୟାସିକା ଓ କବି ତାଙ୍କ ଉଚ୍ଚ ଶିକ୍ଷିତା ଅନୁଜା ବସନ୍ତ କୁମାରୀ ପଟ୍ଟନାୟକ ଏହାର ପରିଚାଳନା କଲେ । ଏହା ସୁଚାରୁ ରୂପେ କିଛି କାଳ ଚାଲିଲା ଏବଂ ସେ ଓଡ଼ିଶା ପ୍ରକାଶକ ଓ ପୁସ୍ତକ ଶିଳ୍ପୀ ସଂଘର ସଭାପତି ମଧ୍ୟ ହେଲେ । ସେ ବହୁକାଳ ଧରି ଥିଓସୋଫିକାଲ୍ ସୋସାଇଟିର ବାରବାଟୀ ଲଜ୍ ସହିତ ସଂପୃକ୍ତ ଥିଲେ । ମନ୍‌ସୁର୍ ବାବାଙ୍କର ଭକ୍ତ ଏବଂ ପରେ କୃଷ୍ଣମୂର୍ତ୍ତିଙ୍କ ପ୍ରତି ଆକୃଷ୍ଟ ହେଲେ । ଜୀବନର ସନ୍ଧ୍ୟାରେ ସେ ଶିରିଡ଼ି ସାଇବାବାଙ୍କର ଅନ୍ତରଙ୍ଗ ଅନୁଗାମୀ ମଧ୍ୟ ହୋଇଗଲେ । ତାଙ୍କର

ପରିପୂକ୍ତ ନାସ୍ତିକତା ଏବଂ ଆତ୍ମ-ବିଶ୍ୱାସର ଧର୍ମ ବିଶ୍ୱାସ ଭାବରେ ରୂପାନ୍ତରିତ ହେଲା । ନିତ୍ୟ ନୂତନ ସମ୍ଭାବନାର ଆବିଷ୍କାର କରିବାକୁ ସାହସିକ ପଦକ୍ଷେପ ନେଉଥିଲେ ମଧ୍ୟ ସେ କଦାପି ନିଜର ମୌଳିକ ନୀତି ଏବଂ ମୂଲ୍ୟବୋଧକୁ ପରିହାର କରି ନାହାନ୍ତି ।

ଏହିପରି ଭାବରେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କର୍ମଠ ରହି ସେ ଆଜିର ଖାଉଟି-ସର୍ବସ୍ୱ ସ୍ୱାଧୀନତା-ଉତ୍ତର ଭାରତୀୟ ସମାଜରେ ନିଜକୁ ଅତି ଅସହାୟ ମଣିଲେ । ଅଭାବକୁ ସହିଯାଇଛନ୍ତି ମାତ୍ର ହାତ ପତେଇ ନାହାନ୍ତି କି ସରକାରୀ ଅନୁଗ୍ରହ ଭିକ୍ଷା କରି ନାହାନ୍ତି । ତଥାପି ଭିତରେ ଭିତରେ ସେ ବୋଧହୁଏ କ୍ଳାନ୍ତି ଓ ଅବସାଦ ଅନୁଭବ କରୁଥିଲେ ଏବଂ ଚାପ ଓ ଉଦ୍‌ବେଗ ତାଙ୍କୁ ଅସହାୟ କରିପକାଉଥିଲା । ଏହି ଅବସ୍ଥାରେ ମଧ୍ୟ ସେ ବିଭିନ୍ନ ସାହିତ୍ୟ ଅନୁଷ୍ଠାନର ଉପାୟନ ଗ୍ରହଣ କରିନାହାନ୍ତି । ଉତ୍କଳ ସାହିତ୍ୟ ସମାଜର ନବପ୍ରସ୍ଥରେ ସଭାପତି ଏବଂ ଉପସଭାପତି ପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ସେ ଶୋଚନୀୟ ଭାବରେ ପରାଜିତ ହୋଇଥିଲେ । ସେହି ଅନୁଷ୍ଠାନ ପକ୍ଷରୁ ତାଙ୍କୁ ପ୍ରଦାନ କରାଯିବା ପାଇଁ 'ଉପନ୍ୟାସ ସମ୍ମାନ'କୁ ସେ ଅକାତରରେ ପ୍ରତ୍ୟାଖ୍ୟାନ କରିଥିଲେ । ମାତ୍ର ସାହିତ୍ୟ ସଂସଦ ଆନୁକୂଲ୍ୟରେ ୧୯୮୦ରେ ଏକବିଂଶ ତମ ଶିଶିର ଉତ୍ସବ ଏବଂ ଓଡ଼ିଆ ଲେଖକ ସମ୍ମେଳନର ନିରାଡ଼ମ୍ବର ସମାବେଶରେ 'ଉତ୍କଳ ରତ୍ନ' ଉପାଧି ସେ ତୃପ୍ତିରେ ଗ୍ରହଣ କରିଛନ୍ତି । ଆଡ଼ମ୍ବର ଅପେକ୍ଷା ଆନ୍ତରିକତାକୁ ସେ ଗଭୀର ଶ୍ରଦ୍ଧା କରନ୍ତି ।

ଏହିପରି ଏକ ବିରଳ ପ୍ରତିଭାଧର ସାରସ୍ୱତ ସାଧକ ଜୀବନର ଦ୍ୱିତୀୟାର୍ଦ୍ଧରେ ସମାଜର ସମସ୍ୟାମୂଳକ ବିଷୟରେ ନିର୍ଭୀକ ଭାବରେ କଲମ ଚାଳନା କଲେ । ମାତ୍ର ତାଙ୍କ ବୌଦ୍ଧିକ ଚାପକୁ ସ୍ୱୀକାର କରିବା ପାଇଁ ଅନଭିଜ୍ଞ ରାଜନୈତିକ ନେତୃତ୍ୱ ଏବଂ ସାମାଜିକ ବ୍ୟବସ୍ଥା ସମକକ୍ଷ ହୋଇ ପାରିଲା ନାହିଁ । ଅର୍ଥବଳ ଏବଂ ବାହୁବଳର ମିଳିତ ସାମ୍ମୁଖ୍ୟ ଦ୍ୱାରା ବୁଦ୍ଧିବଳକୁ କାବୁ କରିଦବାର ପ୍ରୟାସରୁ ଆଜିର ଭାରତୀୟ ଗଣତନ୍ତ୍ର ପକ୍ଷାଘାତ ପୀଡ଼ିତ ହୋଇଗଲା । ମାତ୍ର ଏଭଳି ବିପର୍ଯ୍ୟସ୍ତ ପରିସ୍ଥିତିରେ ମଧ୍ୟ ସେ ତାଙ୍କର ଚିରାଚରିତ କର୍ତ୍ତବ୍ୟ ପଥରୁ ଓହରି ଯାଇନାହାନ୍ତି ।

ଅମାୟିକ, ବନ୍ଧୁବତ୍ସଳ ଏହି ଅଗ୍ରଜ ସାହିତ୍ୟିକ ତାଙ୍କର ଗୋଟିଏ ପୁସ୍ତକ ମତେ ଉତ୍ସର୍ଗ କରିଛନ୍ତି । ତାଙ୍କର ଏ ମହନୀୟତାରେ ମୁଁ ଆଚମ୍ବିତ ହୋଇଛି । କିନ୍ତୁ ବିସ୍ମିତ ହୋଇନାହିଁ । ଏହିପରି ଜ୍ଞାନ-ଯୋଗୀ ସତ୍‌ମଣିଷକୁ ଏତେ ଲୋକ କାହିଁକି ଭୟ କରିନ୍ତି, ମୁଁ ବୁଝିପାରେ ନାହିଁ । ତାଙ୍କ ସହିତ ମୋର ବହୁବାର ମତଭେଦ ହୁଏ- ମନଭେଦ କେବେ ହୋଇନାହିଁ । ୧୯୫୧ରୁ ୧୯୯୭ର ଦୀର୍ଘ ସମୟ ମଧ୍ୟରେ ଆମେ ପରସ୍ପରର ଅତି



ନିକଟବର୍ତ୍ତୀ ହୋଇଛୁ ଏବଂ ସମୂହ ସ୍ୱାର୍ଥ ପାଇଁ ଅକାତରରେ ତାଙ୍କର ବ୍ୟକ୍ତିଗତ ସ୍ୱାର୍ଥକୁ ସେ ବଳି ପକାଇବାର ଦେଖି ମୁଁ ତଟସ୍ଥ ହୋଇଯାଇଛି ।

ଏପରି ମଣିଷ ଆମ ସହିତ ଚଳପ୍ରଚଳ ହେଉଥିଲେ, ସେ ଚାଲିଯିବାର ସ୍ୱଳ୍ପ ବ୍ୟବଧାନରେ ମଧ୍ୟ ସେହି କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ମୁଁ ତାଙ୍କର ଶେଷକୃତ୍ୟ ଖାନ୍‌ନଗର ଶ୍ମଶାନରେ ଦେଖିଛି । ଚିତାଗ୍ନିରେ ଜଳି ଯାଉଥାଏ ଯୁଗ-ମନୀଷୀର ମର ଶରୀର । ଗଛମୂଳେ ଗାଲରେ ହାତଦେଇ ବସି ରହିଥାନ୍ତି ମାଧବାନନ୍ଦ ଦାସ, ଧ୍ରୁବଚରଣ ସାହୁ ଏବଂ ଶୈଳେନ୍ ଭଟ୍ଟାଚାର୍ଯ୍ୟ । ସେବେଳର ସେ କରୁଣ ଅନୁଭୂତି ଶେଷ ଯାଏ ଭୁଲି ହେବ ନାହିଁ । ମୃତ୍ୟୁର କିଛିକାଳ ପୂର୍ବରୁ ସେ ଶଯ୍ୟାଶାୟୀ ହୋଇଗଲେ । ଦେହ ନ ଚାଲିଲେ ମଧ୍ୟ ମୁଣ୍ଡ ଠିକ୍ ଚାଲୁଥାଏ । ଏତିକି ବେଳେ ତାଙ୍କୁ ଓଡ଼ିଶା ସାହିତ୍ୟ ଆକାଡେମୀର ସଭାପତି 'ଅତିବଡ଼ି ଜଗନ୍ନାଥ ଉପାୟନ' ସହିତ ନଗଦ ପଚିଶ ହଜାର ଟଙ୍କା ତାଙ୍କ ବାସଭବନରେ ଆସି ପ୍ରଦାନ କରିଥିଲେ । କେତେକ ବନ୍ଧୁ ପ୍ରଶ୍ନ ଉଠାଇଛନ୍ତି ଯେ ଜୀବନ ସାରା ଉପାୟନ ଏବଂ ସମ୍ମାନକୁ ପ୍ରତ୍ୟାଖ୍ୟାନ କରି କରି ଆସିଥିବା ପ୍ରତିଭାଧର ରାଜକିଶୋର ଜୀବନର ଶେଷ ଅଧ୍ୟାୟରେ ଏ ଉପାୟନ ଗ୍ରହଣ କଲେ କାହିଁକି ? ସେ ମୂଳରୁ ଏହି ଉପାୟନକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ ମଧ୍ୟ ଆମ ପରି କେତେକ ବନ୍ଧୁମାନଙ୍କ ଚାପରେ ପଡ଼ି ଶେଷରେ ଅଗତ୍ୟା ଗ୍ରହଣ କରିନେଇଥିଲେ । ଉପାୟନର ସମ୍ମାନ ଅପେକ୍ଷା ନଗଦ ଟଙ୍କା ଦରକାରରେ ଆସିବ ବୋଲି ଆମେ ତାଙ୍କୁ କହିଥିଲୁ । ତେଣୁ ଅନିଚ୍ଛାରେ ବନ୍ଧୁବତ୍ସଳ ରାଜକିଶୋର ସେଇ ଉପାୟନ ନିଜ ବାସଭବନରେ ବସି ଗ୍ରହଣ କରିଥିଲେ କୁଣ୍ଠିତ ଭାବରେ ।

ଆଜିର ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ତାଙ୍କପରି ବ୍ୟକ୍ତିତ୍ୱ ଘୋର ବିସ୍ମୟ ସୃଷ୍ଟିକରେ । ସେ କ'ଣ ଓଡ଼ିଆ ସାହିତ୍ୟର ଏକ ବ୍ୟତିରେକ ବ୍ୟକ୍ତିତ୍ୱ ? ମୋର ମନେହୁଏ ସେ ଏକ ଅତୁଳନୀୟ ବିସ୍ମୟ ଏବଂ ତାଙ୍କର ପ୍ରଶଂସକ ସମାଜର ସବୁ କ୍ଷେତ୍ରରେ ବିକ୍ଷିପ୍ତ ଭାବରେ ଥିଲେ ମଧ୍ୟ ସଂଗଠିତ ହୋଇ ନାହାନ୍ତି । କିଏ ବା କରିବ ସେମାନଙ୍କୁ ସଂଗଠିତ ? ତାଙ୍କର ଅନୁଜା ବସନ୍ତ କୁମାରୀଙ୍କ ଭାଷାରେ ସେ ମହାଭାରତର କର୍ଣ୍ଣ ଚରିତ୍ର, ସବୁ ସାମର୍ଥ୍ୟ ଥାଇ ମଧ୍ୟ ସେ ବିଜୟଶ୍ରୀ ହାସଲ କରି ପାରିଲେ ନାହିଁ । 'ସଫଳତାକୁ ଯେତେବେଳେ ଏ ଦୁନିଆରେ ଏବେ କେବଳ ମାତ୍ର ସାଫଲ୍ୟ' ବୋଲି ସମାଜ-ସୁନ୍ଦରମାନେ ଧରି ନେଉଛନ୍ତି, ସେତେବେଳେ ଧନବାଜ ଆଡ଼ମ୍ବର ନଥିବାରୁ ରାଜକିଶୋରଙ୍କୁ ନ୍ୟସ୍ତସ୍ୱାର୍ଥମାନେ ସମର୍ଥନ କରିବେ କିପରି ?

ଦେଶର ସମୂହ ଗୌରବ ବୃଦ୍ଧି ପାଇଁ ବ୍ୟକ୍ତିର ଗୌରବ ତହିଁରେ ନିମଜ୍ଜିତ ହୋଇଯିବା ହିଁ ସନାତନ ସଂସ୍କୃତିର ପ୍ରବହମାନ ଧାରା । ତେଣୁ ରାଜକିଶୋରଙ୍କ ସ୍ୱତନ୍ତ୍ର ସ୍ମୃତି-ଚାରଣ କିଛିକାଳ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିଲେ ମଧ୍ୟ ସଂକ୍ଷିପ୍ତିକରଣ ଧାରାରେ ତାହା ମଳିନ ପଡ଼ିଯାଇ ପାରେ । ମାତ୍ର ତାଙ୍କର ପ୍ରେରଣାର ପ୍ରଭାବ ବହୁକାଳ ଧରି ବହୁ ସ୍ୱାଭିମାନୀ ଓଡ଼ିଆଙ୍କୁ ପ୍ରଭାବିତ କରିବ । ତାଙ୍କପରି ବ୍ୟକ୍ତିତ୍ୱର ସୃଷ୍ଟି ଏବଂ ସ୍ଥିତି ପାଇଁ ସାରସ୍ୱତ ସାଧକମାନଙ୍କର ଶ୍ରଦ୍ଧା ଏବଂ ଦରଦ ରହିଲେ, ତାହା ବିଭିନ୍ନ ପ୍ରତିଭାଧର ରାଜକିଶୋରଙ୍କ ପ୍ରତି ଯଥାର୍ଥ ସମ୍ମାନ ହେବ । ତେଣୁ ତାଙ୍କପ୍ରତି ସୁଧୀ ସମାଜ କରିଥିବା ପାପର ପ୍ରାୟଶ୍ଚିତ କରିବା ପାଇଁ ସ୍ୱାଧୀନଜୀବୀ ସାରସ୍ୱତ-ସାଧକମାନଙ୍କ ପ୍ରତି ଶ୍ରଦ୍ଧା ଏବଂ ସର୍ତ୍ତହୀନ ସହାୟତାର ପରମ୍ପରା ପ୍ରଚଳନ କରିବାକୁ ହେବ । ସ୍ୱାଧୀନଜୀବୀ ସୁଧୀଜନମାନଙ୍କର ଆଦେଶ ନୁହେଁ, ଇଙ୍ଗିତରେ କେବଳ ସାମାଜିକ ନୈତିକତା ଏବଂ ଶ୍ରେଣୀ ସହଯୋଗର ରାମ-ରାଜ୍ୟ ପ୍ରଚଳନ ସମ୍ଭବ । ସେଥିପାଇଁ ପଲ୍ଲବଗ୍ରାହୀ ବୁଦ୍ଧିଜୀବୀ ବଦଳରେ ନିଷ୍ଠାପର ବିଦ୍ୱାନମାନଙ୍କୁ ଏ ଦେଶ ରକ୍ଷାକରୁ ।

ଅପର୍ଣ୍ଣା, ସୁତାହାଟ, କଟକ-୧





# 'ପ୍ରେମିକର ଡାଏରୀ'ରେ ଶବ୍ଦଖେଳ ଓ ପ୍ରେମଖେଳର ଚାତୁରୀ

ଡଃ ବିଜୟ କୁମାର ଶତପଥୀ

ପ୍ରଥମ ବିଶ୍ୱଯୁଦ୍ଧର ଅବ୍ୟବହିତ ପୂର୍ବରୁ ବିଶ୍ୱ ସାହିତ୍ୟରେ ତିନିଜଣ ପ୍ରମୁଖ ଔପନ୍ୟାସିକ ସେମାନଙ୍କର ରଚନା ଶୈଳୀରେ ଯେଉଁ ନୂତନ ଧାରାର ପ୍ରବର୍ତ୍ତନ କରିଥିଲେ ତାହା ଚଳନ୍ତି ଶତକର ଉପନ୍ୟାସ କଳାକୁ ବିପୁଳ ଭାବରେ ପ୍ରଭାବିତ କରିଥିଲା । ଅବଶ୍ୟ ସେହି ତିନିଜଣ ଔପନ୍ୟାସିକ ପରସ୍ପରର ଅଗୋଚରରେ ଥାଇ ଏହି ନବୀନ ଧାରାଟିକୁ ନେଇ ସେମାନଙ୍କର କୃତିରେ ପ୍ରୟୋଗ ଓ ପରୀକ୍ଷାମାନ କରିଥିଲେ । ଏହି ତିନିଜଣ ଔପନ୍ୟାସିକ ହେଲେ ମାର୍ସେଲ ପ୍ରାଉଷ୍ଟ, ଡରୋଦି ମିଲର୍ ରିଚାର୍ଡ଼ସନ୍ ଏବଂ ଜେମସ୍ ଜଏସ୍ । ଫରାସୀ କଥାକାର ପ୍ରାଉଷ୍ଟଙ୍କର ଆଠଗୋଟି ଭାଗରେ ବିଭକ୍ତ 'ରିମେମ୍ବ୍ରାନ୍ସ ଅଫ୍ ଥିଙ୍ଗ୍ସ ପାଷ୍ଟ'ର ପ୍ରଥମ ଦୁଇଟି ଭାଗ ୧୯୧୩ ମସିହାରେ ପ୍ରକାଶ ପାଇଲା ବେଳେ ଇଂରେଜ ସାହିତ୍ୟର ବିଶିଷ୍ଟ କଥାକାର ରିଚାର୍ଡ଼ସନ୍ ତାଙ୍କର ବାରଗୋଟି ପର୍ଯ୍ୟାୟ ବିଶିଷ୍ଟ ଉପନ୍ୟାସ 'ପିଲଗ୍ରିମେଜ୍' ପାଇଁ ସେତେବେଳେ ସାଧନାରତ ଥିଲେ । ଏହା ୧୯୧୫ରେ ପ୍ରଥମେ ପ୍ରକାଶ ପାଇଁ ୧୯୩୮ରେ ସମାପ୍ତ ହୋଇଥିଲା । ରିଚାର୍ଡ଼ସନ୍ ଏବଂ ପ୍ରାଉଷ୍ଟଙ୍କର ସମସାମୟିକ ଜେମ୍ସ ଜଏସ୍ ନାମକ ଆଉ ଜଣେ ଆଇରିସ୍ ଲେଖକ ୧୯୧୪ ମସିହାରେ ପ୍ରାକଶ କରିଥିଲେ ତାଙ୍କର ବିଶିଷ୍ଟ ଉପନ୍ୟାସ 'ପ୍ରୋଟ୍ରେଟ୍ ଅଫ୍ ଆନ୍ ଆର୍ଟିଷ୍ଟ ଆଜ୍ ଆନ୍ ୟଙ୍ଗ୍ ମ୍ୟାନ୍' । ଏହା ଉପର ଲିଖିତ ଦୁଇଗୋଟି ଉପନ୍ୟାସ (ରିମେମ୍ବ୍ରାନ୍ସ ଅଫ୍ ଥିଙ୍ଗ୍ସ ପାଷ୍ଟ ଓ ପିଲିଗ୍ରିମେଜ୍) ପରି କିୟଦଂଶ ଆକାରରେ ପ୍ରକାଶ ନପାଇ ସଂପୂର୍ଣ୍ଣ କଳେବର ନେଇ ପ୍ରକାଶିତ ହୋଇଥିଲା । ବିଶ୍ୱ କଥା ସାହିତ୍ୟର ବିବର୍ତ୍ତନ ପର୍ଯ୍ୟାୟରେ ଉପରୋକ୍ତ ଗ୍ରନ୍ଥଟି ଯେଉଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ନେଇଥିଲା ସେଥିପାଇଁ ଦାୟୀ ଥିଲା ତାର ଅନନ୍ୟ ଶିଳ୍ପବିଧି । ମୋଟ ଉପରେ ୧୯୧୩ ଠାରୁ ୧୯୧୫ ମସିହା ମଧ୍ୟରେ ଆଧୁନିକ ମନସ୍ତାତ୍ତ୍ୱିକ ଶୈଳୀର ଉପନ୍ୟାସ ଜନ୍ମ ନେଇଥିଲା । ଯାହାକୁ ଆମେ ଚେତନା ପ୍ରବାହ ଧର୍ମୀ ଉପନ୍ୟାସ ବା ଅନ୍ତର୍ନିହିତ ଆତ୍ମକଥନର ଉପନ୍ୟାସ ବୋଲି କହିଥାଉ । ଏହାକୁ ମଧ୍ୟ ଆଧୁନିକ କାଳର ବିଶ୍ଳେଷଣଧର୍ମୀ ଉପନ୍ୟାସ (Analytical novel) ବୋଲି କୁହାଯାଇପାରିବ ଯାହା ଗଢ଼ିଉଠେ

ସମ୍ପୂର୍ଣ୍ଣ ଭାବରେ ମଣିଷର ମନଗହୀରର କ୍ରିୟା ପ୍ରତିକ୍ରିୟାକୁ ନେଇ । ଏହି ଧରଣର ଉପନ୍ୟାସ ସମତଳ ବାସ୍ତବତା (Surface reality) କୁ ପ୍ରାଧାନ୍ୟ ନ ଦେଇ ଦିଏ ଅନ୍ତରୀଣ ବାସ୍ତବତାକୁ (inmn reality) ଏବଂ ଅନ୍ତର୍ମନର ନିରବଚ୍ଛିନ୍ନ ଘଟଣା ପ୍ରବାହକୁ । ତେଣୁ ସମୀକ୍ଷକମାନଙ୍କ ମତରେ ଏହି ଧରଣର ଉପନ୍ୟାସ ଆତ୍ମପ୍ରକ୍ଷେପ ଧର୍ମୀ ବା ଆତ୍ମଚରିତ ଧର୍ମୀ ହୋଇଥାଏ ଏବଂ ଏହାର ଭାଷାରେ ରହିଥାଏ କାବ୍ୟିକ ଭାଷା ପ୍ରବାହର ଛଟା (They seemed to be essentially artobiographical. They contained an unusual infusion of the language of poetry) ପୁଣି ଭାବଜଗତର ନାନାଦି ଉଦ୍‌ବେଳନ ବା ତରଙ୍ଗକୁ ଏହା ମର୍ମଛୁଆଁ ଶବ୍ଦଚିତ୍ର ସାହାଯ୍ୟରେ ପ୍ରାକଶ କରିବାରେ ସକ୍ଷମ ହୋଇଥାଏ । ଉଦାହରଣ ସ୍ୱରୂପ ଜେମସ୍ ଜଏସ୍‌ଙ୍କର 'ୟୁଲିସେସ୍' ଉପନ୍ୟାସକୁ ନିଆଯାଉ । ଏଥିରେ ଜଳଯାତ୍ରା ସହିତ ଆତ୍ମ ଅନ୍ୱେଷଣର କାହାଣୀ ବର୍ଣ୍ଣିତ । ୟୁଲିସେସ୍ ଯେମିତି ତା ଚେତନାର ଯାତ୍ରାକୁ ପାଠକମାନଙ୍କ ନିକଟରେ ଉପସ୍ଥାପନ କରୁଛି । ଏହା ଏଠାରେ ଉଲ୍ଲେଖଯୋଗ୍ୟ ଯେ ପୂର୍ବରୁ ଉପନ୍ୟାସରେ ମନରାଜ୍ୟର ବିଶ୍ଳେଷଣ ଥିଲା କିନ୍ତୁ ସଂପୂର୍ଣ୍ଣ ଭାବରେ ମନସ୍ତାତ୍ତ୍ୱିକ ଶୈଳୀକୁ ଗ୍ରହଣ କରି ଉପନ୍ୟାସ ଲେଖିବାର ପରମ୍ପରା ବିଂଶଶତାବ୍ଦୀର ପ୍ରଥମ ଦଶକ ପରେ ଯେପରି ଆରମ୍ଭ ହେଲା ତା'ର ଦିଗ୍‌ଦର୍ଶକ ଥିଲେ ପୂର୍ବକଥିତ ତିନିଜଣ ପ୍ରଖ୍ୟାତ ଔପନ୍ୟାସିକ ।

ସେହିପରି ଫକୀର ମୋହନ ଓ ତାଙ୍କ ପରବର୍ତ୍ତୀକାଳର ଔପନ୍ୟାସକଗଣ ସ୍ଥଳ ବିଶେଷରେ ଚରିତ୍ରମାନଙ୍କର ମନ ରାଜ୍ୟର ବିଶ୍ଳେଷଣ କରିଛନ୍ତି ଓ ବୈଷ୍ଣବ ଚରଣ ଦାସଙ୍କ ପରି ଔପନ୍ୟାସିକ 'ମନେମନେ' ପରି ଉପନ୍ୟାସ ରଚନା କରିଛନ୍ତି ସତ କିନ୍ତୁ ପୂର୍ବରୁ କୁହାଯାଇଥିବା ଏହି ନୂତନ ଶୈଳୀଟିର ପ୍ରୟୋଗ ଏବଂ ପରୀକ୍ଷା ପ୍ରାୟ ସେମାନେ କରି ନାହାନ୍ତି । ବାହ୍ୟ ବାସ୍ତବତାଠାରୁ ବା ସମତଳ ବାସ୍ତବତା ଠାରୁ ଓଡ଼ିଆ କଥା ସାହିତ୍ୟ ମୁକ୍ତି ନେଇ ଯେପରି ସଂପୂର୍ଣ୍ଣ ଭାବରେ ଅନ୍ତରୀଣ ବାସ୍ତବତା ମଧ୍ୟରେ ନିମଜ୍ଜିତ ହୋଇ ପଡ଼ିଲା । ସେଥି ନିମିତ୍ତ ଯେଉଁ ସୂତ୍ରଧାର ତ୍ରୟୀ ଆମ ନଜରକୁ ଆସନ୍ତି ସେମାନେ ହେଲେ ଗୋପୀନାଥ, ରାଜକିଶୋର ଓ ନିତ୍ୟାନନ୍ଦ । ଅନ୍ତର୍ମନର ଚିତ୍ର ଆଙ୍କିଲାବେଳେ ଗୋପୀନାଥ କବି ପାଲଟି ଯାଆନ୍ତି, ନିତ୍ୟାନନ୍ଦ ପ୍ରଥମେ କବି ହୋଇ ପରେ ଅନ୍ତର୍ମନର ବିଶ୍ଳେଷଣ କରନ୍ତି । ରାଜକିଶୋର ପଟ୍ଟନାୟକ କିନ୍ତୁ ଦାର୍ଶନିକ ଦୃଷ୍ଟିରେ ଦେଖନ୍ତି ଜଗତକୁ ଓ ତାଙ୍କ ଉପନ୍ୟାସର ଚରିତ୍ରମାନଙ୍କୁ । କବି ସତ୍ତାଟିକୁ ପ୍ରଚ୍ଛନ୍ନ ଭାବରେ କୌଶଳର ସହିତ ସାଇତି ରଖିଥାନ୍ତି ନିଜ ଭିତରେ । ବେଶ୍ ଯୁକ୍ତିନିଷ୍ଠ ଓ ଦାର୍ଶନିକ ଅବବୋଧରେ ବିଜଡ଼ିତ ବକ୍ତବ୍ୟମାନ ଫିଙ୍ଗି ଚାଲିଥାନ୍ତି ମଣିଷ ସଂପର୍କରେ ଦୁନିଆ ସଂପର୍କରେ । ଯେପରିକି ସେ ଶରସଂଧାନ କରୁଛନ୍ତି ନଚେତ୍ ଆକ୍ରମଣ କରି ଚାଲିଛନ୍ତି ବିଚିତ୍ର ସଂସାରକୁ ତାର ରୀତି ନୀତିକୁ ଓ ତାର ଯାବତୀୟ ପ୍ରଥାବଦ୍ଧତାକୁ, ହିପୋକ୍ରାସିକୁ । ତେଣୁ ରାଜକିଶୋର ବାବୁଙ୍କୁ ସହଜରେ ଆମେ ଆବିଷ୍କାର



କରି ନେଇ ପାରୁ ବା ତାଙ୍କ ବ୍ୟକ୍ତିସତ୍ତାର ସୁରାକ୍ ଆମେ ବିନାବିଧାରେ ପାଇଯାଉ ତାଙ୍କ ଉପନ୍ୟାସମାନଙ୍କରେ । ଆପଣାର ପର୍ସୋନାକୁ ହଠାତ୍ ଚିହ୍ନା ପକେଇବାର ରୀତି ରାଜକିଶୋରଙ୍କର ଚେଷ୍ଟାକୃତ ଓ ଅନନ୍ୟ ଏବଂ ଏହା ତାଙ୍କର ବାହାଦୁରୀ ବୋଲି କୁହାଯାଇପାରେ । ଆପଣାର ବିଚିତ୍ର ଅନୁଭୂତିମୟ ଜଗତକୁ ପାଠକମାନଙ୍କ ସମ୍ମୁଖରେ ଉନ୍ମୋଚିତ କରିବା ପାଇଁ ଓ ଯାବତୀୟ ଦାର୍ଶନିକ ଅବବୋଧ ଏବଂ ଜିଜ୍ଞାସା ପାଇଁ ଏହାଯେ ସର୍ବୋତ୍କୃଷ୍ଟ ମାଧ୍ୟମ ତାହା ଠିକ୍ କଥାକାର ଜାଣିଥିଲେ । ତେଣୁ ନିଜର କଥା ସାହିତ୍ୟରେ ତାଙ୍କ ଶବ୍ଦ ଚିତ୍ରର କୌଶଳମାନ ଏ ଦୃଷ୍ଟିରୁ ଗୋପୀନାଥ ଓ ନିତ୍ୟାନନ୍ଦଙ୍କଠାରୁ ଭିନ୍ନ । ଏହା ସ୍ୱତନ୍ତ୍ର ଶୈଳୀତାତ୍ତ୍ୱିକ ଆଲୋଚନାର ଅପେକ୍ଷା ରଖେ ।

ରାଜକିଶୋରଙ୍କ ପ୍ରତ୍ୟେକ ଉପନ୍ୟାସ ଆବିଷ୍କାରର ଏକ ଏକ କାହାଣୀକୁ ଆମ ଆଗରେ ଆଣି ଥୋଇଛି—ନିଜକୁ ଆବିଷ୍କାର କରିବାର କାହାଣୀ । 'ବିରହିଣୀ' 'ଚଲାବାଟ' 'ପ୍ରେମିକର ଡାଏରୀ' 'ପ୍ରେମର ନିୟତି' ଆଦି ପଢ଼ିଲା ବେଳେ ମନେହୁଏ ଯେମିତି ଉପନ୍ୟାସର ପ୍ରତିଟି ଅଧ୍ୟାୟ ମଧ୍ୟରେ ରାଜକିଶୋର ଯେମିତି ନିଜକୁ ନୂଆ ଭାବରେ ଆବିଷ୍କାର କରିଚାଲିଛନ୍ତି ନିଜର ଆତ୍ମ କଥନିକା ମଧ୍ୟରେ । ତାଙ୍କର ଚାଲାବାଟ କୋଉଠୁ ଆରମ୍ଭ ହୋଇଛି ପୁଣି କୋଉଠି ଶେଷ ହେବ ତାହା କହିବା ମଧ୍ୟ କଠିନ । କାରଣ ତାଙ୍କ ଚଲାବାଟର ଅସ୍ତିତ୍ୱ ମଣିଷର ମନ ରାଜ୍ୟରେ । ଏହି ପ୍ରସଙ୍ଗରେ ସମାଲୋଚକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କର ବକ୍ତବ୍ୟକୁ ଏଠାରେ ଉଦ୍ଧାର କରାଯାଇ ପାରିବ ।

''ରାଜୁ ବାବୁଙ୍କର ଜାତୀୟ ରାଜପଥ ନିର୍ମିତ ହୋଇଛି ତରୁଣର ମନରେ । ହୃଦୟ ଭିତରେ—ତରୁଣର ମନରେ ନ କହି 'ତରୁଣ ମନରେ' କହିଲେ ହିଁ ଅଧିକ ସମୀଚୀନ ହେବ । ତାଙ୍କ ଉପନ୍ୟାସର କଳେବର ତେଣୁ ମନଃ ସମୀକ୍ଷାର ଇତିହାସ ଓ ଫଳାଫଳ ବର୍ଣ୍ଣନା । ନାୟକ ଓ ନାୟିକା ରୂପରେ ସେ ଯେଉଁମାନଙ୍କୁ ସୃଷ୍ଟି କରିଛନ୍ତି ସମସ୍ତେ ତାଙ୍କ ମାନସିକ ପରୀକ୍ଷାଗାରର ଗୋଟାଏ ବସ୍ତୁ ବା Specimen କେବଳ ପ୍ରେମର ପରିପ୍ରେକ୍ଷିତରେ ।'

(ଔପନ୍ୟାସିକ ରାଜକିଶୋର ପଟ୍ଟନାୟକଙ୍କ ଉପନ୍ୟାସ ସାହିତ୍ୟର ପରିଚୟ ପୃ- ୩୦୧)

ସାହିତ୍ୟ ହେଉଛି ଶବ୍ଦର ଖେଳ ବା a game of words । ତେବେ ଏହି ଖେଳର କଳା ଓ କାରିଗରୀ ସାହିତ୍ୟର ରୂପଭେଦରେତ (କବିତା, ଗଳ୍ପ, ଉପନ୍ୟାସ, ନାଟକ ଭ୍ରମଣ କାହାଣୀ ଆଦି) ଭିନ୍ନ ପୁଣି ଲେଖକ ଭେଦରେ ଏହାର ବୈଚିତ୍ର୍ୟ ମଧ୍ୟ ଅଲଗା,





ଅଲଗା । ସାହିତ୍ୟର ବକ୍ତବ୍ୟ ବିଷୟକୁ ନେଇ ଶବ୍ଦ ଖେଳ ଚାଲେ । ପୁଣି ଏହି ଖେଳ ପାଇଁ ଶବ୍ଦମାନେ ଆପେ ଆପେ ଆସି ପହଁଚିବେ କିମ୍ବା ଲେଖକ ସେମାନଙ୍କୁ ଖୋଜିଲୋଡ଼ି ଆଣିବ କିମ୍ବା ଲେଖକ ସେମାନଙ୍କ ପିଛା କରୁଥିବ ସେମାନେ କେବେ ଧରା ଦେଇ ଥିବେତ ପୁଣି ଆତ୍ମଗୋପନ କରୁଥିବେ—ଏ ହେଉଛି ଅଲଗା ପ୍ରଶ୍ନ । ତେବେ ଏକଥା ସତ ଯେ ଶବ୍ଦକ୍ରୀଡ଼ାର ନୈପୁଣ୍ୟ ମଧ୍ୟରେ ନିହିତ ଲେଖକର ପ୍ରତିଭା ।

ରାଜକିଶୋରଙ୍କର 'ପ୍ରେମିକର ଡାଏରୀ' ଉପନ୍ୟାସକୁ ଏକ 'ଖେଳ' ବୋଲି ଗ୍ରହଣ କରିବାରେ ବୋଧହୁଏ କାହାର ଆପତ୍ତି ରହିବ ନାହିଁ । ଏହି ଖେଳ ହେଉଛି ପ୍ରେମର ଖେଳ । ଉପନ୍ୟାସରେ ମଧ୍ୟ ସେ ଏ ସଂପର୍କରେ ସୂଚନା ଦେଇଛନ୍ତି । ''ଗୋଟିଏ କବିକୁ ଭଲ ପାଇବା ଯେତେ ସୁନ୍ଦର, କବି ପାଖରେ ଏମିତି ଯାଇ ଯାଚି ଗୁଞ୍ଜି ହୋଇ ଗଳି ପଶିବା ସେତିକି ଅଡୁଆ । ଖେଳରେ ଖେଳରେ ଆମେ କେତେ ଦୂରକୁ ଯାଉଛୁ, ଜାଣୁଛୁତ !'' (ପ୍ରେମିକର ଡାଏରୀ ପୃ—୧୭୬) । ଉପନ୍ୟାସର ଆରମ୍ଭରେ ପ୍ରେମଖେଳ ପାଇଁ ଆଗେଇ ପାଇଥିବା ତିନୋଟି ତରୁଣୀ କବିତା, ଗୀତା ଓ ରାଣୀ ମଧ୍ୟରୁ ଉପରୋକ୍ତ ସଂଳାପଟି ଗୀତା କହିଛି । ଏହି ପ୍ରେମ ଖେଳର କେନ୍ଦ୍ରବିନ୍ଦୁ ଲେଖକ ଗୋବର୍ଦ୍ଧନ ବାବୁ । ପରେ ଏଥିରେ ସାମିଲ ହୋଇଛନ୍ତି ପ୍ରଭାକର, ଦୀନବନ୍ଧୁ ଓ ଦୀନବନ୍ଧୁର ପତ୍ନୀ ସରଳା । ମୋଟେ ସାତଗୋଟି ଚରିତ୍ର ଏହି ଉପନ୍ୟାସରେ । ତରୁଣୀ ତିନି ଜଣ ଅବିବାହିତ, କଲେଜ ଛାତ୍ରୀ । ଶିକ୍ଷା, ସଂସ୍କୃତି ଓ ସଭ୍ୟତା ସେମାନଙ୍କୁ ଘଷି ମାଜି ଉଜ୍ଜ୍ୱଳ କରିଛି । ଗୋବର୍ଦ୍ଧନ ବାବୁ ଭାବୁକ କବି ପୁଣି ଅବିବାହିତ । ଅନୁଭୂତିକୁ ପାଥେୟ କରିବାକୁ ଚାହାଁନ୍ତି । ହୋଟେଲ୍‌ବାଲା ପ୍ରଭାକର ଓ ହକର ଦୀନବନ୍ଧୁ ଚରିତ୍ର ଦୁଇଟି ସାଧାରଣ ସ୍ତରର ହେଲେବି ପ୍ରେମ ଅନୁଭୂତି ଓ ବୈଚିତ୍ର୍ୟ ସଂପାଦନ ପାଇଁ ଉଦ୍ଦିଷ୍ଟ । ସେହିପରି ଦୀନବନ୍ଧୁର ପତ୍ନୀ ସରଳା ସାଧାରଣ ଗୃହିଣୀ ହେଲେ ମଧ୍ୟ ସୂକ୍ଷ୍ମ ଓ ଶାଣିତ ଅନୁଭୂତି ମଣ୍ଡିତ ଚରିତ୍ରଟିଏ ହୋଇ ଉପନ୍ୟାସରେ ଆତ୍ମପ୍ରକାଶ କରିଛି । ଉଲ୍ଲେଖଯୋଗ୍ୟ ଯେ ଉପରୋକ୍ତ ସମସ୍ତ ଚରିତ୍ରଗଣ ପ୍ରେମ ଖେଳର ଖେଳାଳୀ । ଖେଳର ଉପାଦନ ହେଉଛି ଏହି ଶବ୍ଦ । ସେମାନେ ଯାହା କରିଛନ୍ତି ପରସ୍ପରକୁ ତାହା ନିଜକୁ ପରିପ୍ରକାଶ ପାଇଁ ଯେତିକି ନୁହେଁ ସେତିକି ଗୋପନ ରଖିବା ପାଇଁ । ତେଣୁ ପ୍ରତିଟି ଚରିତ୍ର ସଁବାଳୁଆ ପରି ଶବ୍ଦର ଖୋସାଟିଏ କରି ନିଜକୁ ଲୁଚାଇ ରଖିଛନ୍ତି ତା ମଧ୍ୟରେ । ଶବ୍ଦର ବ୍ୟୂହ ରଚନା କରି ଆତ୍ମ ଗୋପନ କରିବାକୁ ଚାହୁଁଥିବା ଏହି ସବୁ ମଣିଷମାନଙ୍କର ପ୍ରେମ ବ୍ୟାପାର ଉପନ୍ୟାସରେ ଚିତ୍ତାକର୍ଷକ ଭାବରେ ବର୍ଣ୍ଣିତ ହୋଇଛି । ସେମାନଙ୍କ ବ୍ୟକ୍ତିସତ୍ତା ବହୁଧାବିଭକ୍ତ ଏବଂ ସେମାନଙ୍କର ଚୂର୍ଣ୍ଣୀଭୂତ ଅସ୍ତିତ୍ୱ ଓ ସତ୍ତା ପାଇଁ ସେମାନେ ଯୁଝି କରନ୍ତି ନାନା ପ୍ରକାରେ ଏବଂ ବଞ୍ଚନ୍ତି ।



ଉପନ୍ୟାସ ପ୍ରାରମ୍ଭରେ ବର୍ଣ୍ଣିତ ଯେ ଗୀତା, ରାଣୀ ଓ କବିତା ନାମରେ ତିନିଜଣ ତରୁଣୀ ସାହିତ୍ୟିକ ଗୋବର୍ଦ୍ଧନ ବାବୁଙ୍କର ପ୍ରତିଷ୍ଠା ଓ ଲେଖା ସଂପର୍କରେ ଅବଗତ ହୋଇ ତାଙ୍କ ସହିତ ପରିଚିତ ହେବାପାଇଁ ଇଚ୍ଛା ପୋଷଣ କରନ୍ତି । ସେମାନଙ୍କ ମନ ମଧ୍ୟରେ ଧାରଣା ଆସିଛି ଯେ—"ସଂସାରରେ ପ୍ରେମିକ ହେଉଛନ୍ତି କବି ଓ ଲେଖକ, ସେମାନେ ପରସ୍ପରର ମନ ଜାଣି ପାରନ୍ତି । ମନ ବୁଝି କଥା ଓ କାମ କରି ପାରନ୍ତି । ତାଙ୍କର ରୁକ୍ଷତା କମ୍ ଓ କୋମଳତା ବେଶି—ପୁରୁଷ ଭିତରେ ଫୁଲ ପରି ସ୍ତ୍ରୀ ଭିତରେ ସେମାନେ ଅପ୍‌ସରା । ଯେଉଁଠି ଥିଲେବି ତାଙ୍କ ମନର ଡ଼ାକ ବଇଁଶିଆର୍ ବଇଁଶୀ ପରି ଦୂରରୁ ଅନ୍ଧାର ଆଉ ବାଟ ଠେଲି ଗଳି ଆସେ କାନ ପାଖକୁ—ମନ ଭିତରେ ଶିହରଣ ଖେଳାଇ ଦିଏ । ଅନ୍ଧାର ରାତିରେ, ଚାନ୍ଦିନୀ ରାତିରେ ସେହି କେତୋଟି ସାହିତ୍ୟିକ କେତେ ପ୍ରାଣ ଉଚ୍ଛନ୍ନ କରି କେତେ ବେସୁରୀ ଗୀତର ଝଂକାର ଉଠାନ୍ତି । ସେମାନଙ୍କ କଥା ମନେ ପଡ଼ିଲେ ମନ ଆପଣା ଛାଏଁ କଅଁଳି ଯାଏ । ପ୍ରେମ କରିବାକୁ ଲୋକ ନଥିଲେ ଯେଉଁ ମନ ସମୟ ଓ ସ୍ଥାନ ଦ୍ୱାରା ବାନ୍ଧି ହୋଇ ରହେ ନାହିଁ । ସେହି ମନ ଯାଇ ସାହିତ୍ୟିକ ଲେଖକ ଓ କବିର ପାଦତଳ ଲୋଟିଯାଏ । ଲୋଟି ଯିବୁନ୍ତ ।"

ଏପରି ଅବସ୍ଥାରେ ରାଣୀ, କବିତା ଓ ଗୀତା ଆପଣା, ଆପଣାର ମନକୁ ସାହିତ୍ୟିକ ଗୋବର୍ଦ୍ଧନ ବାବୁଙ୍କ ପାଦ ତଳେ ଲେଟାଇ ଦେବାପାଇଁ ମନସ୍ଥ କରିଛନ୍ତି । ଏଥିପାଇଁ ଅନୁକୂଳ ପରିବେଶଟିଏ ମଧ୍ୟ ସୃଷ୍ଟି ହୋଇଛି ଉପନ୍ୟାସରେ ଗୋବିର୍ଦ୍ଧନଙ୍କ ନିକଟକୁ ମଧ୍ୟ ବେନାମୀ ଚିଠି ଗୋଟିଏ ସେମାନେ ଲେଖିଛନ୍ତି । କେବଳ ଚିଠିରେ ଲେଖା ରହିଛି—"ସାହିତ୍ୟ ସଭାକୁ ତିନିଜଣ ସାହିତ୍ୟ ପ୍ରେମିକା ଯାଉଛନ୍ତି ରେଳଗାଡ଼ିରେ ।" ସାହିତ୍ୟ ସଭାରେ ତିନି ଜଣ ଯାକ ଯଥା ସମୟରେ ପହଞ୍ଚି ଗୋବର୍ଦ୍ଧନ ବାବୁଙ୍କ ଠିକଣା ସଂଗ୍ରହ କରି ନେଇଛନ୍ତି ଓ ଜାଣିବାକୁ ପାଇଛନ୍ତିରେ ସେ ରହୁଛନ୍ତି ସମୁଦ୍ର କୂଳର ଗୋଟିଏ ହୋଟେଲରେ । ସନ୍ଧ୍ୟା ପରେ ଗୀତା, ରାଣୀ ଓ କବିତା ସେଠିକି ଅଭିଯାନ ଆରମ୍ଭ କରିଦେଇଛନ୍ତି । ମନରେ ସେମାନଙ୍କର ଉଚ୍ଛ୍ୱାସ ସାହିତ୍ୟ ସଭାରେ ଯେଉଁ ପରିଚୟ ଗୋବର୍ଦ୍ଧନ ବାବୁଙ୍କ ସହ ହେଲା ତାହା ଯେପରି ଆହୁରି ନିବିଡ଼ ହୋଇଉଠୁ । ନିବିଡ଼ ମଧ୍ୟ ହୋଇଛି ସମୁଦ୍ର କୂଳରେ । ଗୋବର୍ଦ୍ଧନ ସହ ସାକ୍ଷାତ ଜନ୍ମ ଦେଇଛି ନିବିଡ଼ ଆନ୍ତରିକତାକୁ । ସେମାନେ ତାଙ୍କଠାରୁ ବିଦାୟ ନେଇ ଆସିଲା ପରେ ମଧ୍ୟ ତିନିଜଣଯାକ ସହି ନିଛାଟିଆ ସମୁଦ୍ର କୂଳରେ କଟେଇଥିବା ମୁହୂର୍ତ୍ତମାନଙ୍କର ବାସ୍ନାରେ ବିଭୋର ହୋଇ ପଡ଼ିଛନ୍ତି । ଗୋବର୍ଦ୍ଧନ ବାବୁ ମଧ୍ୟ ଏହି ତିନୋଟି ତରୁଣୀର ପ୍ରେମରେ ପଡ଼ିଯାଇଛନ୍ତି । ଅନୁଭବରେ ସାନ୍ନିଧ ଖୋଜିଛନ୍ତି ସେଦିନ ରାତିରେ । ଗୀତା, ରାଣୀ ଓ କବିତାଙ୍କୁ ସେ ନିଜ ମନରେ ତରାଜୁରେ ତଉଲିଛନ୍ତି । ନିର୍ଜନ ଭାବନାରେ ବୁଡ଼ି ରହିଛନ୍ତି । ଔପନ୍ୟାସିକଙ୍କ ଭାଷାରେ— 'ପ୍ରେମିକର ନିର୍ଜନ ଭାବନା ଗୋଟାଏ ଅତି

ବିଷମ ସମସ୍ୟା ସେଥିରେ କେତେ ଦୁର୍ଗତୋଳି ହୋଇଯାଏ । କେତେ ଭାଙ୍ଗି ପଡ଼େ, ମନର ରାଣୀ ଆସି ଦେହ ପାଖରେ ଆଉଜି ପଡ଼େ । ଅନୁଭବ କଲାପରି ସ୍ୱରରେ କେତେ କୁଶଳ କଥା ବୁଝିଯାଏ । ଗୋବର୍ଦ୍ଧନ ବାବୁ ଯେତେ ଅନୁଭବୀ ହେଲେବି ତାଙ୍କୁ ହଠାତ୍ ଯେତେବେଳେ ଚିନ୍ତା ଘାରି ଆସିଲା ସେ ରୋଗୀପରି ଝରକା ଦୁଆର ବାଟେ ଆଶାୟୀ ହୋଇ ଚାହିଁ ରହୁଥିଲେ ବନ୍ଧୁ, ସାଥି ଓ ସେବାକାରୀ କିଏ ଆସିବେ ସ୍ନେହ,ପ୍ରେମର ଭଣ୍ଡାର ନେଇ ଦେଖିବା ପାଇଁ ।'' (ପ୍ରେମିକର ଡାଏରୀ—୬୦)

ତା'ପରଦିନର ଅନୁଭବ ଓ ଆନ୍ତରିକତା କିନ୍ତୁ ପର୍ଯ୍ୟବସିତ ହୋଇଛି ଈର୍ଷା ଓ ଘୃଣାରେ । ଏଠାରେ ମିଳନର ପ୍ରତିବନ୍ଧକ ହୋଇଛି ହୋଟେଲବାଲା ପ୍ରଭାକର । ସେ ପ୍ରଭାକର ଓ ତା ବନ୍ଧୁ ହକର ଦୀନବନ୍ଧୁକୁ ଏଡ଼େଇ ନିରୋଳାରେ ତିନିଜଣ ତରୁଣୀଙ୍କ ସହ ନିଛାଟିଆ ସମୁଦ୍ର କୂଳରେ ମିଳିତ ହୋଇ ପାରି ନାହାନ୍ତି । ଅଗତ୍ୟା ପରସ୍ପର ସହ ଗୁନ୍ଥି ହୋଇଯାଇଛନ୍ତି ଛଅଗୋଟି ଚରିତ୍ର । ରାଣୀ, କବିତା, ଗୀତା, ହୋଟେଲବାଲା ପ୍ରଭାକର ସହ ପରିଚିତ କେବଳ ହୋଇ ନାହାନ୍ତି ଆଚରଣରେ ତା ପ୍ରତି ଆନ୍ତିରିକତା ପ୍ରକାଶ କରିଛନ୍ତି । ଗୋବର୍ଦ୍ଧନ ବାବୁ ଏଥିପାଇଁ ନିଜର ସାହିତ୍ୟ ସେବାକୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ପ୍ରଭାକର ପ୍ରତି ଈର୍ଷାପରାୟଣ ହୋଇଉଠିଛନ୍ତି । ଗୋବର୍ଦ୍ଧନଙ୍କ ବ୍ୟକ୍ତିସତ୍ତା ଯେତେ ଯେତେ ପାଖୁଡ଼ା ମେଲିଛି ଗୀତା, ରାଣୀ ଓ କବିତାଙ୍କ ନିକଟରେ । ସେମାନେ ଗୋବର୍ଦ୍ଧନଠାରୁ ସେତିକି ଦୂରେଇ ଯିବାର ଆକାଂକ୍ଷା ପୋଷଣ କରିଛନ୍ତି । ଆହତ ଅଭିମାନରେ ଭାଙ୍ଗି ପଡ଼ିଛନ୍ତି ଗୋବର୍ଦ୍ଧନ । ନିଜ ଉପରେ ପ୍ରଚଣ୍ଡ ଅଭିମାନ ମଧ୍ୟ ସେ କରିଛନ୍ତି ।

ଦ୍ୱିତୀୟ ଦିନର ଅନୁଭୂତି ଗଢ଼ି ଉଠିଛି ହକର ଦୀନବନ୍ଧୁ ଗୃହର ପୃଷ୍ଠଭୂମିରେ । ଦୀନବନ୍ଧୁର ପତ୍ନୀ ସରଳା ସହିତ ପାଠକ ଏଠାରେ ପରିଚିତ ହୁଏ । କେବଳ ସେତିକି ନୁହେଁ । ଗୀତା, ରାଣୀ, କବିତା ଏମାନଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ ମଧ୍ୟ ଏଠାରେ ଉନ୍ମୋଚିତ ହୁଏ ।

ବୈଚିତ୍ର୍ୟମୟୀ ନାରୀର ଅନ୍ତର୍ମନକୁ ଖୋଲି ଦେବାରେ ରାଜକିଶୋରଙ୍କର ନୈପୁଣ୍ୟ ଏଠାରେ ଲକ୍ଷଣୀୟ । କଥା କହିବାର ଚାତୁରୀ କେବଳ ଗୀତା, ରାଣୀ ଓ କବିତାକୁ ଜଣା ନାହିଁ । ସାଧାରଣ ହକରର ପତ୍ନୀ ସରଳାକୁ ମଧ୍ୟ ବେଶ୍ ଜଣା । ଇଂଗିତ ଓ ଚାତୁର୍ଯ୍ୟର ଅଭିବ୍ୟକ୍ତି ମାଧମରେ ସେ ତା ଦେହର କ୍ଷୁଧାକୁ ପ୍ରକଟ କରିପାରେ କିନ୍ତୁ ଅନ୍ୟଦିଗରେ ନିଜ ସ୍ୱାମୀର ବଶମ୍ବଦ ଭାବରେ ମଧ୍ୟ ସେ ନିଜକୁ ପ୍ରତିପାଦନ କରିପାରେ । ଗୋବର୍ଦ୍ଧନଙ୍କୁ ସେ ଆପଣାର କରି ନେଇଛି । ଚତୁରତାର ସହ ପ୍ରଭାକରକୁ ବିଦା କରି ଦେଇଛି ଘରୁ । ସ୍ୱାମୀ ଦୀନବନ୍ଧୁକୁ ରୋଷେଇ କାମରେ ଲଗେଇଛି କେବଳ ଗୋବର୍ଦ୍ଧନ ସହିତ ଆଳାପ





ଜମେଇବା ପାଇଁ । ଗୋବର୍ଦ୍ଧନ ଏହି ସୁଯୋଗର ସଦ୍‌ବ୍ୟବହାର ପାଇଁ ନିକଟବର୍ତ୍ତୀ ହେଲା ବେଳେ ସେ ଦୂରଛଡ଼ା ହୋଇଯାଇଛି । ତାଙ୍କୁ ଭାଇ ବୋଲି ସମ୍ବୋଧନ କରିଛି । ସେ ଲକ୍ଷ୍ୟ କରିଛି ଗୋବର୍ଦ୍ଧନଙ୍କ ସ୍ନେହ କାଙ୍ଗାଳ ମନ ଯାହା ଚାହିଁଛି ତିନିଜଣ ତରୁଣୀଙ୍କଠାରୁ ବିଶେଷ ଭାବରେ କବିତାଠାରୁ (କାରଣ କବିତା ପ୍ରଥମରୁ ଗୋବର୍ଦ୍ଧନ ପ୍ରତି ଆକୃଷ୍ଟ ବୋଲି ଓ ତାଙ୍କ ଗୁଣର ପୂଜାରୀ ବୋଲି ଗୋବର୍ଦ୍ଧନ ବାବୁଙ୍କର ମନେ ହୋଇଥିଲା ।) ତାହା ସେ ପାଇ ନାହିଁ । ଶେଷ ଅବଲମ୍ବନ କବିତା ମଧ୍ୟ ଗୋବର୍ଦ୍ଧନଙ୍କୁ ପ୍ରତ୍ୟାଖ୍ୟାନ କରି ଚାଲିଯାଇଛି । ସେତେବେଳେ ନିର୍ଜନ ଘରେ ଶୂନ୍ୟଥାଳ ଧରି ବସିଥିବା ଗୋବର୍ଦ୍ଧନ ଓ ଜଣେ ବିବାହିତା ନାରୀ ପୁଣି ଗୋବର୍ଦ୍ଧନଙ୍କ ସାହିତ୍ୟର ମୁଗ୍ଧ ପାଠିକା ସରଳାର ଅବଚେତନର ଭାଷାକୁ ଔପନ୍ୟାସିକ ନିମ୍ନଲିଖିତ ଭାବରେ ପ୍ରକାଶ କରିଛନ୍ତି ଉପନ୍ୟାସ ପରିସମାପ୍ତରେ ''ଭିକାରୀର ଭିକ୍ଷାଥାଳ କ'ଣ ଏମିତି ସବୁବେଳେ ଶୂନ୍ୟତାରେ ଭରିଥିବ ? ସବୁ ଦୁଆରୁ ସେ କ'ଣ ଏମିତି ଫେରି ଫେରି ଯାଉଥିବ ? ତେବେ ସେ ବଞ୍ଚିବ କେମିତି ? ଶୂନ୍ୟ ଜୀବନ ଭାରି ଦୁର୍ବହ ସରଳା ବି ସେହି ଏକା କଥା ଭାବୁଥିଲା—ତାହାର କ'ଣ ଅଛି ? କ'ଣ ନେଇ ନିଜକୁ ସେ ପରିପୂର୍ଣ୍ଣ ବୋଲି ବଡ଼େଇ କରି ପାରିବ ? ପ୍ରେମିକର ଡାକ ପ୍ରେମିକାକୁ ଶୁଭୁ ନାହିଁ । ଭିତରେ ରକ୍ତର ସୁଅ ଚାଲୁଛି ବେଳକୁ ବେଳ ପ୍ରଖର ହୋଇ ।''

ପ୍ରବନ୍ଧର ଉପସଂହାରରେ ଏତିକି କୁହାଯାଇ ପାରିବ ଯେ—ପ୍ରେମ ସବୁବେଳେ ଚାହେଁ ପରିପୂର୍ଣ୍ଣତା କିନ୍ତୁ ଘଟଣାର ଘନଘଟାରେ କିମ୍ବା ପୁଣି କେଉଁ ଅପଦେବତାର ଅଭିସଂପାତରେ ପ୍ରେମ ପରିପୂର୍ଣ୍ଣତାର ସଂଧାନ କରୁ କରୁ ବରାବର ଅପରିପୂର୍ଣ୍ଣ ହୋଇଯାଏ । ଏହାହିଁ ଆଣେ ବ୍ୟଥା, ବେଦନା ଓ ନିଃସଂଗତାର ଅନୁଭବ । ପରିପୂର୍ଣ୍ଣତାର ପଥ ସଂଧାନୀ ଅପରିପୂର୍ଣ୍ଣ ପ୍ରେମର ଅସଫଳ କାହାଣୀକୁ ଶବ୍ଦର ଖେଳ ଖେଳି ରାଜକିଶୋରଙ୍କର ଚରିତ୍ରମାନେ ଆମକୁ ଶୁଣାଇଛନ୍ତି । ତେଣୁ 'ପ୍ରେମିକର ଡାଏରୀ' ଏକାଧାରରେ ହୋଇପାରିଛି ଶବ୍ଦଖେଳ ଓ ପ୍ରେମଖେଳର ଚାତୁର୍ଯ୍ୟମୟ ଗ୍ରନ୍ଥ ।

ସ୍ନାତକୋତ୍ତର ଓଡ଼ିଆ ବିଭାଗ
ରେଭେନ୍ସା କଲେଜ, କଟକ-୩







# କଜ୍ଜଳଗାରର ସାର୍ଥକତା

**ଡକ୍ଟର ମନୋରଞ୍ଜନ ମହାନ୍ତି**

ସ୍ରଷ୍ଟା ଅମର । ସେ ବଞ୍ଚିରହେ ସୃଷ୍ଟିର ସାର୍ଥକତା ଭିତରେ । ସ୍ରଷ୍ଟାର ଜୀବନ ବ୍ୟାପୀ ସାଧନା ଓ ସିଦ୍ଧି, ଯନ୍ତ୍ରଣା ଓ ଆନନ୍ଦ, ଅନୁଭବ ଓ ଆବେଗ ତା'ର ରସଚେତନାରେ ଶିହରଣ ଖେଳାଇଦିଏ । ତା'ର ମାନସ ପଟରେ କଳ୍ପନାର ଫୁଲଟିଏ ଫୁଟାଇ ଦିଏ । ଚଳଚଞ୍ଚଳ-ହୋଇଉଠେ ତା'ର ଲେଖନୀ । ତା'ର ତୂଳୀ ତାର ନିହାଣ । ଏ ସଂସାରରେ ସାଧାରଣ ମଣିଷଟିଏ ପରି ଆତଯାତ ହେଉଥିବା ସୃଷ୍ଟି-କ୍ଷମ ଜୀବନଟିଏ ରୂପାନ୍ତରିତ ହୋଇଯାଏ ଅନ୍ୟ ଏକ ମଣିଷକୁ । ସାଧାରଣରୁ ସେ ହୋଇଯାଏ ଅସାଧାରଣ । ବ୍ୟକ୍ତିରୁ ସେ ଅନୁଷ୍ଠାନରେ ପରିଣତ ହୁଏ ।

ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ରାଜକିଶୋର ଜଣେ ଅସାଧାରଣ ଲେଖକ । ପ୍ରାୟ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ସମୟ ପର୍ଯ୍ୟନ୍ତ ରାଜକିଶୋରଙ୍କର ଅନାହତ ସାହିତ୍ୟ ସାଧନାରେ ଏ ଦେଶର ଗଳ୍ପ-ଉପନ୍ୟାସ ଋଦ୍ଧିମନ୍ତ । ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନତା ପରର କୌଣସି ଲେଖକଙ୍କ ସହିତ ରାଜକିଶୋରଙ୍କର ତୁଳନା ସମ୍ଭବ ନୁହେଁ । ଉଭୟ କ୍ଷେତ୍ରରେ ତାଙ୍କର ସଫଳତା ଓ ସ୍ୱାତନ୍ତ୍ର୍ୟ ସ୍ୱୀକୃତ । କାହ୍ନୁ ଚରଣଙ୍କର ଉପନ୍ୟାସ ପରି ତାଙ୍କ ଉପନ୍ୟାସଗୁଡ଼ିକ ବଳିଷ୍ଠ କାହାଣୀ ଓ ଅନେକ ହୃଦୟସ୍ପର୍ଶୀ ଚରିତ୍ରର ଲୀଳାଖେଳା ମାଧ୍ୟମରେ ଆତ୍ମପ୍ରକାଶ ଲାଭ କରିନାହିଁ । ମେଘଘେରା ନୀଳାକାଶରେ ଭାସିମାନ ବଉଦଗୁଡ଼ିକର ଅବିଚ୍ଛିନ୍ନ ଧାରା ପରି ମଣିଷମନରେ ପ୍ରେମର ଆକର୍ଷଣରେ ଯେଉଁ ଉତ୍ତାଳ ଆବେଗ ବାରମ୍ବାର ତାକୁ ବିଚଳିତ କରୁଛି, ଚଳଚଞ୍ଚଳ କରୁଛି ସେଇ ଅନୁଭବର ସହଜ-ସରଳ ଓ ଜୀବନ୍ତ ଅଭିବ୍ୟକ୍ତି ହେଉଛି ତାଙ୍କ ଉପନ୍ୟାସର ପ୍ରାଣବିନ୍ଦୁ ।

୧୯୫୯ ମସିହାରେ ପ୍ରକାଶିତ 'କଜ୍ଜଳଗାର' ଉପନ୍ୟାସ ରାଜକିଶୋରଙ୍କ ଲେଖନୀର ସମସ୍ତ ସାର୍ଥକତା ବହନ କରି ଆତ୍ମପ୍ରକାଶ ଲାଭ କରିଛି । ଅନ୍ୟାନ୍ୟ ଓଡ଼ିଆ ଉପନ୍ୟାସଠାରୁ ଏହା ସ୍ୱତନ୍ତ୍ର । ଅଳ୍ପ ସଂଖ୍ୟକ ଚରିତ୍ର ଓ ପୁରୁଣା ବିଷୟବସ୍ତୁକୁ ଅବଲମ୍ବନ କରି ବର୍ଣ୍ଣନାର ଯାଦୁକରୀ ସ୍ପର୍ଶରେ ଲେଖକ ଦୁଇଟି ପ୍ରାଣର କୌତୂହଳ ଓ ଆବେଗ ସ୍ପନ୍ଦିତ ହୃଦୟର ଗୋପନ ରହସ୍ୟକୁ ପ୍ରକାଶ କରିଛନ୍ତି । ଦୁଇଟି ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ-ଜୀବନକୁ ଖୋଜି ପାଇବାର ଅର୍ଥ ଓ ଭଲପାଇବା ଭିତରେ ନିଜକୁ ଉତ୍ସର୍ଗ କରିଦେବାର ଦୁର୍ବାର କାମନା ଏ ଉପନ୍ୟାସର ପୃଷ୍ଠଭୂମି ।



''ଓଡ଼ିଶା ସରକାରଙ୍କର ସବ୍‌ଡେପୁଟି ଚାକିରୀ ପାଇ ସୁଭାଷବାବୁ ଶେଷକୁ ସହରର ଗୋଟିଏ କମ୍ ଜଣାଶୁଣା ରାସ୍ତା ପାଖରେ ପ୍ରତିଷ୍ଠା ହୋଇନଥିବା ଘରଟିଏ ପାଇଲେ ।'' ସେଇ ଘର ପାଖରେ ଆଉ କେତୋଟି ଘର । କାହାର ଅଗଣାରେ ଗଛ ନହେଲେ ବଗିଚା । ଘରେ ପରଦା ଝୁଲୁଛି । ଅତି ପାଖ ଘରଟି ଶ୍ୟାମାଦେବୀଙ୍କର । ତାଙ୍କ ଘରେ ଇନ୍ଦ୍ରଧନୁ ରଙ୍ଗର ପରଦା । ଆଗରେ ଫୁଲ ଓ ଫଳ ବଗିଚା । ଘର ଭିତରୁ ସିଏ ବି ଲକ୍ଷ୍ୟ କରୁଥିଲେ ନୂଆ ଘରର ପହିଲି ଘରବାଲା କିଏ... କିଏ... କି, ସେ ? ''ପଡ଼ୋଶୀର ସାମାନ୍ୟ କୌତୁହଳ - ଖାଲି ତାଙ୍କରି ପାଇଁ ନୁହେଁ, ସମସ୍ତଙ୍କ ପାଇଁ- ଅଜଣା ଲୋକକୁ ଜାଣିବା ପାଇଁ, ଦେଖା ଲୋକକୁ ଦେଖିବା ପାଇଁ ।'' ଏଇ କୌତୁହଳ ଓ ଉଦ୍ଦୀପ୍ତ ଉତ୍କଣ୍ଠା ଭିତରେ ପରସ୍ପରର ସ୍ୱର ଶୁଣିବା ମାଧ୍ୟମରେ ଆହୁରି ଉଚ୍ଚକିତ ହୋଇ ଉଠିବାର ବାସ୍ତବ ଓ ଜୀବନ୍ତ ବର୍ଣ୍ଣନା ଭିତରେ ଜଣେ ନୂଆ ଚାକିରୀ କରିଥିବା ଅବିବାହିତ ପୁରୁଷ ଓ ଚଉଦବର୍ଷ ତଳୁ ବଧୂର ଗୌରବରେ ବିମଣ୍ଡିତା ହୋଇ ମଧ୍ୟ - ମାଆର ମମତା ପାଖରେ ଆବଦ୍ଧ ହୋଇ ମଧ୍ୟ ତଥାପି କିପରି ଅସମ୍ପୂର୍ଣ୍ଣ ନାରୀଟିଏ ପରିପୂର୍ଣ୍ଣ ହେବାର କାମନା କରୁଛି ସେଇ ଚିତ୍ର ବେଶ୍ ହୃଦୟସ୍ପର୍ଶୀ ହୋଇପାରିଛି ।

ସୁଭାଷ ବାବୁଙ୍କ ଜୀବନରେ ଇଏ ଏକ ବିଡ଼ମ୍ବିତ ସମୟ । ନୂଆ ଚାକିରୀ - ଅଚିହ୍ନା ସ୍ଥାନରେ ଭଡ଼ାଘର । ଚପରାଶି ଓ ସେ ମାତ୍ର ଦୁଇଜଣ । ରୋଷେଇ ହେଲା ବେଳେ ଝରକା ଫାଙ୍କ ଭିତରୁ କବାଟ ସନ୍ଧିରୁ ନିଜକୁ ଲୁଚାଇ ରଖି ସେଇ ବାହାରଟାକୁ ଦେଖୁଥିଲେ । ରାସ୍ତାରେ ଲୋକେ ନିର୍ଲିପ୍ତ ଭାବେ ଯା'ଆସ କରୁଛନ୍ତି । ପାଖ ଗଛଲଟା ଫଳରେ ଦୋହଲୁଛି । ଚଢ଼େଇ ପ୍ରଜାପତି ନିର୍ଭୟରେ ଚଳପ୍ରଚଳ ହେଉଛନ୍ତି । ଖାଲି ତାଙ୍କରି ଘରଟି ନିଛାଟିଆ । ସେଠି ଉଇ, ପିମ୍ପୁଡ଼ି, ବୁଢ଼ିଆଣୀ, ଝିଟିପିଟିଠାରୁ ଆରମ୍ଭ କରି ମଣିଷର ଚିରସାଥୀ ଘରଚଟିଆବି ଆସିନାହିଁ । ଛାତ ପାଖରେ କଳା କାଉଟିଏ ବି ଦେଖା ଯାଉନାହିଁ । ସୁଭାଷ ବାବୁଙ୍କୁ ସେଦିନ ବିରକ୍ତ ଲାଗୁଥିଲା ନିଶ୍ଚୟ । ଆଉ ବି ମନରେ ବୈରାଗ୍ୟ ଆସିଥିଲା ସଂସାର ବିଷୟରେ । ଏଇପରି ଏକ ନିଃସଙ୍ଗ ପରିବେଶ ଭିତରେ ନୂଆ ଜୀବନର ପ୍ରଥମ ଅଧ୍ୟାୟ ଆରମ୍ଭ ହୋଇଛି । ନୂଆ ଘରେ ରହିବାର ପ୍ରଥମ ଦିନରୁ ମନରେ ସୃଷ୍ଟି ହୋଇଛି କୌତୁହଳ । କିଏ ଅଛି ଆରପାଖ ଘରେ ? ଘର ଛାତ ଉପରକୁ ବାଟ ଅଛି । ସେଠି ଠିଆ ହେଲେ ଅବଶ୍ୟ ଦିଶନ୍ତା ଆଖପାଖ ଖଣ୍ଡେଦୂର । ସଫା ଲୁଗା ପିନ୍ଧି ସେ ସିଡ଼ି ଧାପ ଉପରେ ଠିଆ ହୋଇ ବହୁତ ବେଳ ଭାବିଲେ । ଚିକ୍ ଚିକ୍ ଖରା । ସେ ଦେଖିବା ପୂର୍ବରୁ ତାଙ୍କୁ ସମସ୍ତେ ଦେଖି ପକାଇଲେ । ନାଁ ନୁହେଁ । ସେ ଯାଇ ପାରିବେ ନାହିଁ । ''ଲାଜ ସବୁବେଳେ ଦୂରେଇ ଦିଏ ମଣିଷକୁ । ସେ ଉପରକୁ ଉଠି ପାରିଲେ ନାହିଁ । ସେଇ ପାଚେରୀ ଘେରା ଦୁଆର ଭିତରେ ଠିଆ ହୋଇ ଚାରିଆଡ଼ର ଛବି ସେ ମନରେ ଆଙ୍କୁଥିଲେ । ସେ ନିଜର

ଲାଜରେ ବନ୍ଦୀ । ତାଙ୍କୁ ନିରେଖି ଦେଖିବାକୁ ଲୋକ ନଥିଲେ ବି ସେ ଦେଖୁଥିଲେ ନିଜକୁ । ସେତେବେଳେ ସେ ଅସହାୟ ଆଉ ଏକୁଟିଆ । ଏଇ ପରିବେଶ ଓ ପରିସ୍ଥିତିରେ ଛଟପଟ ହେଉଥିବା ନାୟକ ମନରେ ଟିକିଏ ସ୍ନେହ ଅନ୍ତରଙ୍ଗ ଆତ୍ମୀୟତା ଓ ସହାନୁଭୂତି ଆଶା କରିବା ଆଦୌ ଅସଙ୍ଗତ ନୁହେଁ ବରଂ ଏକ ସୁସ୍ଥ ମନର ସ୍ୱାଭାବିକ ପ୍ରତିକ୍ରିୟା । ''ତାଙ୍କୁ ଶୁଭୁଥାଏ ପାଖ ପଡ଼ିଶା ଘରୁ - ମା' କିଏ ଆସିଛନ୍ତି, ସେ ନୂଆ ଘରକୁ... କେଜାଣି... ଅନେକ ଜିନିଷ ଆଣିଥିଲା... ତାଙ୍କ ଘରେ ମା' ନାହିଁ, ଦି'ଜଣ ଲୋକ । ସୁଭାଷବାବୁ ଶୁଣୁଥିଲେ ଏ କଥୋପକଥନ । ଭାବୁଥିଲେ, 'ପଡ଼ିଶା ଘରର ପିଲାଟିଏ ବି ସେଇ କଥା କହୁଛି - ତାଙ୍କର କେହି ନାହିଁ । ସେ ପର୍ଯ୍ୟନ୍ତ ସୁଭାଷ ବାବୁ ଜାଣି ନାହାନ୍ତି ସେ ପାଖ ଘରେ କିଏ ଅଛି । ପଡ଼ୋଶୀ ଘରର କଥାବାର୍ତ୍ତାକୁ କାନ ପାତିବା ସୁଭାଷ ବାବୁଙ୍କର ଯେମିତି ଗୋଟେ ଅଭ୍ୟାସରେ ପରିଣତ ହେଲାଣି । ସେହିପରି ପାଖ ଘରକୁ ଶୁଣାଇ କହିବା ଅନୁଭୂତି ଶ୍ୟାମାଦେବୀ ମଧ୍ୟ କ୍ରମଶଃ ଆଦରି ନେଲେଣି ।

ମା' ଆଉ ପୁଅର କଥାବାର୍ତ୍ତା ଭିତରେ ସେଇ କଅଁଳ ଅଳସ କଣ୍ଠସ୍ୱର, କହିବାର ପ୍ରତ୍ୟେକଟି ଶବ୍ଦ, ସତେ ଯେପରି ପହଞ୍ଚାଇ ଦିଆଯାଇଛି ବାବୁଙ୍କ ପାଖରେ । ସତେ ଯେପରି ଶ୍ୟାମାଦେବୀ ନିଜର ପରିଚୟ ନଦେଇ ସବୁକଥା ସୁଭାଷ ବାବୁଙ୍କୁ କହୁଥିଲେ । ସୁଭାଷବାବୁ ଅତି ତନ୍ମୟ ହୋଇ ସବୁକଥା ଶୁଣୁଥିଲେ । ସେଇଠି ସେଦିନ ସିଏ ବୁଝିଥିଲେ ପାଖଘରେ ବାବୁ ନାହାନ୍ତି । ବାବୁଆଣୀ ଅଛନ୍ତି । ତାଙ୍କର ଯୋଡ଼ିଏ ପିଲା ଥିବାର ଜଣାପଡୁଛି ।

ଲେଖକ ଦୁଇଟି ଆବେଗଭରା ହୃଦୟର ମିଳନ ପାଇଁ ଅନୁକୂଳ ପରିବେଶ ଓ ପରିସ୍ଥିତି ସୃଷ୍ଟି କରିଛନ୍ତି । ନିଜ ଘରେ ଶ୍ୟାମାଦେବୀ କଥାବାର୍ତ୍ତା ହେଲାବେଳେ ବେଶ୍ ସଚେତନ ହେଲେଣି - କାଳେ ପାଖ ଘରେ ଶୁଭିଯିବା ଭୟରେ । ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା, ଆଶା ଆଉ ଆବେଗ, ଭୟ ଆଉ ଲାଜ, ଏଇ ଦ୍ୱନ୍ଦ୍ୱାତ୍ମକ ସ୍ଥିତିରେ ଆଜି ଶ୍ୟାମାଦେବୀ ଆଉ ସୁଭାଷବାବୁ ।

ସୁଭାଷ ବାବୁ ବି ଯେମିତି ଶ୍ୟାମାଦେବୀ ବି ସେମିତି - ନିଜର କଳ୍ପନାମୟ ପ୍ରୀତିଘରର ନକ୍ସା କରିଦେଇଥିଲେ । ଘରଟିଏ ହୁଏ ମନର ବିଚାରରୁ ଆଉ ପ୍ରୀତିର ଘର ଗଢ଼ିଉଠେ ନିଜର କଳ୍ପନାରୁ । ସେ କଳ୍ପନାକୁ ରୂପ ଦିଏ ପଦେ କଥା, ଥରକର ଚାହାଣୀ, କ୍ଷଣିକର ବ୍ୟବହାର ଆଉ ଏଇ ସଂସାରର କାରବାରୀ ଚାଲିଚଳଣ ଓ ଭାଷା, ଧର୍ମ, ଜାତି ଓ ବୟସର କାଣିଚାଏ - ଅତି ମାମୁଲି କଥା ।

କିନ୍ତୁ ସେଦିନ ଶ୍ୟାମାଦେବୀ ମନରେ ଏଇ ପାସୋରି ଯିବା କଥାଟି ନଥିଲା । ସୁଭାଷ ବାବୁଙ୍କ ମନରେ ଏଇ ଛୋଟିଆ ଘଟଣାଟି ଗୁରୁତର ଜଣାଯାଉଥିଲା । ଉଭୟେ ସେ ବାଧାବିଘ୍ନ



ଭୁଲି ଜାଣିବାକୁ ଚାହୁଁଥିଲେ - ଆରଜଣକ କିଏ ? ସେ ଦୁଃଖୀ ବା ସୁଖୀ ? ଆପଣା ନା ପର ? ବନ୍ଧୁ ନା ଶତ୍ରୁ ?

ପହଲା ମା' ଘଷିରେ ଶ୍ୟାମାଦେବୀଙ୍କ ପୋଷାକୁକୁର ବାଘା ମୁତିଦେବା ଓ ପହଲା ମା'ର ପାଟିତୁଣ୍ଡ ଘଟଣା ଭିତରେ ଉତ୍କଣ୍ଠିତ ରମାଦେବୀଙ୍କ ଅଚିହ୍ନା ବାବୁଙ୍କର ପରିଚୟ ପାଇବା ପାଇଁ ବ୍ୟାପୃତତା ପରିଲକ୍ଷିତ ହୋଇଛି । .

ପହଲା ମା ଓ ଶ୍ୟାମାଦେବୀଙ୍କର କଥାବାର୍ତ୍ତା -

ସୁଭାଷବାବୁ ଓ ବେଣୁଧରଙ୍କ ମଧ୍ୟରେ ପହଲା ମା'କୁ କାମ କରିବାକୁ ରଖିବା ଆଲୋଚନା -

ପହଲା ମା ଆସିଛି ସୁଭାଷ ବାବୁଙ୍କ ଘରକୁ । ବାବୁ ଓ ପହଲା ମା କଥାବାର୍ତ୍ତା ହେଲାବେଳେ ବେଣୁଧର ଯାଇଛି ରମାଦେବୀଙ୍କ ଘରକୁ ଖବର ବୁଝିବାକୁ । ଏହି ସମୟରେ ଦେବ ଆସିଛି । ଦେବ ଓ ଶ୍ୟାମାଦେବୀଙ୍କ କଥାବାର୍ତ୍ତାରେ ଶ୍ୟାମାଦେବୀଙ୍କ ନିଃସଙ୍ଗତା ଜୀବନର ଚିତ୍ର ପ୍ରକାଶ ପାଇଛି । ପହଲା ମା' ବାବୁଙ୍କ ସାଙ୍ଗରେ କାମ କରିବାର ପ୍ରତିଶ୍ରୁତି ପାଇ ଫେରିଗଲା ।

ସନ୍ଧ୍ୟା ଆଗତପ୍ରାୟ । ବାବୁ କୋଠା ଉପରକୁ ଗଲେ । ସେଇ ମଉଳା ଖରାରେ ବହୁ ବାଞ୍ଛିତ ରୂପ ଦେଖିଲେ ସୁଭାଷ ବାବୁ । 'ଦେଖିବାକୁ ଶ୍ୟାମଳୀ । ସୂର୍ଯ୍ୟଙ୍କର ନାଲିରଙ୍ଗ ତା'ର ଶ୍ୟାମଳ ଦେହ ଉପରେ ବୁଣି ହୋଇପଡ଼ିଥିଲା - ଦୂରରୁ ଦିଶୁଥିଲା ସୁନ୍ଦର । ଯେତିକି ଭାବିଥିଲେ ତା'ର କଣ୍ଠସ୍ୱର ବିଷୟରେ, ସେତିକି ତାକୁ ସୁନ୍ଦର ବୋଲି ଭାବିଲେ ।' ସେ ରତନା ଆଡ଼କୁ ଚାହିଁ ଭଲ କି ଧୋଇବା ପାଇଁ ବରାଦ କରୁଥିଲେ ।

'ମୁଣ୍ଡର ଜୁଡ଼ାରେ ଫୁଲହାର ଥିଲା - ଓଢ଼ଣା ନାହିଁ । ପରିପାଟୀ କରି ଲୁଗାପିନ୍ଧା ନାହିଁ । ଦୂରରୁ ଦିଶୁଥିଲେ ଭାରି ମନଲୋଭା - ଆକାଶର ଇନ୍ଦ୍ରଧନୁ ପରି —

ବାହାରେ ପ୍ରକୃତିର ଆକର୍ଷିତ ବର୍ଣ୍ଣବିଭା ।

'ଟିକକ ପରେ ସେ ସାମ୍ନା କୋଠାକୁ ଚାହିଁ ଚମକି ପଡ଼ିଲେ । ସୁଭାଷବାବୁ ଠିଆ ହୋଇଛନ୍ତି ।'

ପରସ୍ପରକୁ ଦେଖିବାର ସୁଯୋଗ ଓ ସୌଭାଗ୍ୟ ବର୍ତ୍ତମାନ ଦୁହେଁ ପାଇପାରିଲେ । ଏ ପର୍ଯ୍ୟନ୍ତ ମାତ୍ର ଗୋଟିଏ ଦିନର ସମୟ ବ୍ୟବଧାନ । ୨୩ ପୃଷ୍ଠା ବର୍ଣ୍ଣନା କରାଯାଇଛି । ପ୍ରଥମ ଦେଖାର ମାଦକତା ପରେ ସୁଭାଷ ବାବୁଙ୍କ ମନରେ ଅସ୍ଥିରତା ସୃଷ୍ଟି କଲାଣି ।

ଶ୍ୟାମାଦେବୀଙ୍କୁ କେନ୍ଦ୍ରକରି ଅନେକ ପ୍ରଶ୍ନ ତାଙ୍କ ମନକୁ ଆନ୍ଦୋଳିତ କଲାଣି । ବେଣୁଧର ସହିତ କଥାବାର୍ତ୍ତା କଲାବେଳେ ବାବୁଙ୍କ ମାନସିକ ଅବସ୍ଥା ତାଙ୍କ ମନର ଅନ୍ତର୍ଦ୍ୱନ୍ଦ୍ୱ ବିଷୟରେ ପାଠକ ହୃଦୟଙ୍ଗମ କରି ପାରେ ।

ସୁଭାଷବାବୁ ତାଙ୍କ ତରଫରୁ ଅଚିହ୍ନା ନାରୀଟିର ନାଁ ଦେଲେ କୃଷ୍ଣପ୍ରିୟା । ବାବୁ ସ୍ୱୀକାର କଲେଣି ଯେ ସେ ତାଙ୍କ ମନ ଭିତରେ ଆସି ରହିଗଲେଣି । ବେଣୁଧର ଆଲୁଅ ଆଣିବାରୁ ଚିନ୍ତିତ ସୁଭାଷ ବାବୁ ଅନ୍ଧାର କରିବାକୁ କହିଛନ୍ତି । ଅନ୍ଧାରରେ କୃଷ୍ଣପ୍ରିୟାଙ୍କ କଥା ଭାବିବାକୁ । ପହଲା ମା’ ଓ ସୁଭାଷବାବୁ କଥାବାର୍ତ୍ତା ହେଉଥିଲା ବେଳେ ଶ୍ୟାମାଦେବୀ ସିତାର ବଜାଇଲେ । ପହଲା ମା’ଠାରୁ ବାବୁ ଜାଣିଲେ ଯେ ଶ୍ୟାମାଦେବୀ ଭଲ ଗାଆନ୍ତି ଓ ସିତାର ବଜାନ୍ତି । ଏକୁଟିଆ ଥିଲା ବେଳେ ।

ସିତାର ବଜାଇଲା ବେଳେ ଶ୍ୟାମାଦେବୀ ଭାବୁଥିଲେ, ‘‘ଆପଣାର ଲୋକେ କିଛି ନୁହନ୍ତି । ସେମାନେ ନିରେଖି ଚାହାନ୍ତି ନାହିଁ । କିଛି ଖୋଜନ୍ତି ନାହିଁ । ମନରେ ଦର୍ପଣ ଆଗରେ ସେଇ ପର ମଣିଷ ଆପଣାର । ସେଇମାନେ ବାରମ୍ବାର ଭିତରକୁ ଆସିବାକୁ, ଭିତରେ ଆସି ରହିବାକୁ ଯତ୍ନ କରୁଥାଆନ୍ତି । ନାରୀ ବଂଚିଛି ବୋଲି - ଲୋକମାନେ କେବଳ ବାରମ୍ବାର ବୁଝେଇ ଦିଅନ୍ତି ।’’ ତିନିଦିନ ହେଲାଣି ତାଙ୍କ ନାଁ ଗାଁ ପଡ଼ିଲା ନାହିଁ । ବାବୁ ଗସ୍ତରୁ ଫେରିଲେ ବୁଝାଯିବ ଏଇ ଆଶାରେ ଶ୍ୟାମାଦେବୀ ଅପେକ୍ଷା କରିଥାଆନ୍ତି । ହଠାତ୍ ସେଦିନ ସୁଭାଷବାବୁ କୋଠା ଉପରେ ଆଉ ଶ୍ୟାମାଦେବୀ ଦୁଆରେ । ଦୁହେଁ ଏକାପରି ଶଙ୍କୁଚିତ ହୋଇଗଲେ । ଦୁହେଁ ଦୁହିଁଙ୍କୁ ଦେଖୁଥିଲେ ଆଉ ଭାବୁଥିଲେ - ଏଇ ମୋର ମନର ମଣିଷ । ଏଇ ମୋର ଆଖିର ପିତୁଳା ।

ତାଙ୍କୁ ଉପହାସ କରିବାକୁ ସ୍ୱାମୀ କେଶବ ବାବୁ ଗସ୍ତରୁ ଫେରିଲେ । ଜାଣିଲେ ପାଖ ଘରେ କେହି ଜଣେ ଅଫିସର ରହୁଛନ୍ତି । ତା’ ଆରଦିନ ସୁଭାଷ ବାବୁଙ୍କ ଘରକୁ ସେ ଗଲେ । ସୁଭାଷବାବୁଙ୍କୁ ନିମନ୍ତ୍ରଣ କଲେ ନିଜ ଘରକୁ ଆସିବା ପାଇଁ । ଶ୍ୟାମାଦେବୀ ସ୍ୱାମୀଙ୍କ ଠାରୁ ଏ ଖବର ପାଇଲେ । ଓଠରେ ହସ ଖେଳାଇ ଶ୍ୟାମାଦେବୀ କଳ୍ପନା କରିଥିଲେ ସେ ଲୋକଟିକୁ । ଲାଜରଙ୍ଗା ମୁହଁ । ଆଖିରେ ପ୍ରୀତିର କଜଳ । ପାଖ ପଡ଼ୋଶୀ - ସେ ଆଜି ଆସିବେ ଘରକୁ । ଅପେକ୍ଷାର ଯନ୍ତ୍ରଣା ଭିତରେ ଦୁହେଁ ଅପେକ୍ଷା କରିଥିଲେ ସେଇ ଇପ୍‌ସିତ ମୁହୂର୍ତ୍ତକୁ । ସୁଭାଷ ବାବୁ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଲେ ଶ୍ୟାମାଦେବୀଙ୍କ ଘରେ । ତାଙ୍କର ଚଞ୍ଚଳ ଚକିତ ଆଖି ଖୋଜି ବୁଲୁଥିଲା କୃଷ୍ଣପ୍ରିୟାକୁ । କେଶବ ବାବୁ ତାଙ୍କର ସ୍ତ୍ରୀର ନାଁ ଶ୍ୟାମାଦେବୀ ବୋଲି ଜଣାଇଲେ ସୁଦ୍ଧା ସୁଭାଷ ବାବୁ ଭାବୁଥିଲେ ମୁଁ ତ ମୋ ମନରୁ ତା’ର ନାଁ ଦେଇଛି । ସେ କେଶବ ବାବୁଙ୍କ ପାଖରେ ଶ୍ୟାମା ହେଲେ ବି ମୋ ପାଖରେ



ସେ କୃଷ୍ଣପ୍ରିୟା । ସେଦିନ ସୁଭାଷ ବାବୁଙ୍କ ସହିତ କୃଷ୍ଣପ୍ରିୟାଙ୍କର ପ୍ରଥମ କଥାବାର୍ତ୍ତା । ସିଗାରଟେ୍ ନ ଖାଇବା ପାଇଁ କୃଷ୍ଣପ୍ରିୟାଙ୍କର ତାଗିଦ୍ ଏ ସମସ୍ତ ଘଟଣା ସୁଭାଷ ବାବୁଙ୍କ ଛାତିରେ ଗୋଟିଏ ପରେ ଗୋଟିଏ ତରଙ୍ଗ ସୃଷ୍ଟି କରିଥିଲେ । ଅଳ୍ପ କେଇଦିନ ପରେ ପୁଣି କେଶବ ବାବୁ ପୁଣି ଗସ୍ତରେ ଚାଲି ଯାଇଛନ୍ତି । ଆଉ କୃଷ୍ଣପ୍ରିୟାଙ୍କର ସାକ୍ଷାତ ହୋଇପାରି ନାହିଁ ସୁଭାଷ ବାବୁଙ୍କ ସହିତ । ଶ୍ୟାମାଦେବୀ ହଠାତ୍ କିଛିଦିନ ପାଇଁ ଗୋଟେ ବିବାହ ଉତ୍ସବରେ ଯୋଗ ଦେବାକୁ ଚାଲିଯାଇଛନ୍ତି ସୁଭାଷ ବାବୁଙ୍କ ଘରେ ଚାବି ରଖିଦେଇ । ଶ୍ୟାମାଦେବୀଙ୍କର ଏଇ ଅନୁପସ୍ଥିତି ବ୍ୟସ୍ତ ବିବ୍ରତ କରି ଦେଇଛି ସୁଭାଷ ବାବୁଙ୍କୁ । ଶ୍ୟାମାଦେବୀ ଫେରିଛନ୍ତି । ଡକେଇଛନ୍ତି ସୁଭାଷବାବୁଙ୍କୁ ନିଜ ଘରକୁ । ଶ୍ୟାମାଦେବୀଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଆଚ୍ଛନ୍ନ କରି ରଖିଛି ସୁଭାଷ ବାବୁଙ୍କୁ । ଅନେକ ସମୟରେ କୃଷ୍ଣପ୍ରିୟାଙ୍କୁ ଠିକ୍ ଭାବେ କଳ୍ପନା ନ କରିପାରିବାର ଦୁଃଖ ସୁଭାଷ ବାବୁଙ୍କୁ ବିବ୍ରତ କରିଛି । ସୁଭାଷବାବୁ ଭାବିଛନ୍ତି - ବିନା କାରଣରେ ଆଶାର ଇନ୍ଦ୍ରଧନୁ ଦେଖାଇ ପୁଣି ତାକୁ ହରିନେବା ଶ୍ୟାମାଦେବୀଙ୍କ ପକ୍ଷରେ ଅତି ସହଜ କାମ । ସୁଭାଷ ବାବୁ ଟିକିଏ ପରକୀୟା ପ୍ରୀତି ଖୋଜି ଆସିଥିଲେ ବୋଲି ତାଙ୍କୁ ଶ୍ୟାମାଦେବୀ କଥା, କାମ ଓ ବ୍ୟବହାରରେ ଉଠାଇ ନେଉଛନ୍ତି । ପୁଣି ସେମିତି ଠେଲି ଦେଉଛନ୍ତି । କୃଷ୍ଣପ୍ରିୟାଙ୍କର ରହସ୍ୟମୟୀ ବ୍ୟକ୍ତିତ୍ୱ ପାଖରେ ସୁଭାଷ ବାବୁ ସଙ୍କୁଚିତ ହୋଇଯାଉଥାଆନ୍ତି ବାରମ୍ବାର ।

ସୁଭାଷ ବାବୁଙ୍କ ପାଖରୁ ଥର୍ମୋମିଟର, ପେନ୍ ଓ ଗପବହି ମଗାଇବା ମାଧ୍ୟମରେ କୃଷ୍ଣପ୍ରିୟା ବେଶ୍ ଦୃଢ଼ କରିପାରିଛନ୍ତି ଉଭୟଙ୍କ ସମ୍ପର୍କକୁ । ସୁଭାଷବାବୁ ଭାବିଛନ୍ତି – 'ଶ୍ୟାମାଦେବୀଙ୍କୁ ସେ ଭୁଲ୍ ବୁଝିଛନ୍ତି । ତାଙ୍କର ମନରେ ଗୋଟିଏ ସହଜ ପିପାସା ତାଙ୍କର ଘର ସଂସାରର ସମସ୍ତ ବାଧା ବନ୍ଧନକୁ ଏଡ଼ିଦେଇ ଏକ ମନରେ ଏକ ଆଶାରେ ତାଙ୍କ ଆଡ଼କୁ ଚାହିଁ ରହିଛି । ସେ କ'ଣ ସେତିକି ପୂରଣ କରିପାରିବେ ନାହିଁ ? ଆଶାୟୀ ମନର ଅପୂର୍ଣ୍ଣ ଆଶା ପୂରଣ କରିବାକୁ ଶ୍ୟାମାଦେବୀ ଯେଉଁ କାତର ପ୍ରାର୍ଥନା ଜଣାଇଛନ୍ତି ତାହାରି ଡାକ ହୃଦୟରେ ଆସି ବାଜୁଛି । ଏପରି ଲୋକ ପାଖରେ ଦେଇ ନପାରିବାର କୌଣସି କୌଣସି ପ୍ରଶ୍ନ ଉଠିପାରେନା । ସବୁ ଦେଇ ହେବ, ଧନ, ମନ, ଜୀବନ, ବର୍ତ୍ତମାନ ଓ ଭବିଷ୍ୟତ ।' ଶ୍ୟାମାଦେବୀ ମଧ୍ୟ ପ୍ରସ୍ତୁତ କରି ସାରିଲେଣି ନିଜକୁ ଉତ୍ସର୍ଗ କରି ଦେବା ପାଇଁ । ତାଙ୍କର ଯୁକ୍ତି ହେଉଛି, 'ବାହା ହୋଇଛ ବୋଲି ମନ ଯଦି କାହାରିକୁ ଦେଖି ଆକୁଳ ହୁଏ, ସେହି ଆକୁଳତାକୁ ତଣ୍ଟିଚିପି ମାରି ଦେବାକୁ କ'ଣ ବାହାଘର ଆମକୁ କହିଛି କି ?

ସେଥିପାଇଁ ସେ ସୁଭାଷ ବାବୁଙ୍କୁ ତାଙ୍କର ଏ ଦୋଷ ପାଇଁ କ୍ଷମା ମାଗି କହିଛନ୍ତି, 'ଗାଳି ଦିଅନା । ଗୋଟିଏ ଦିନର ସାର୍ଥକତା ବଞ୍ଚିରହୁ ଚିରଦିନ ।' ସୁଭାଷବାବୁ ଓ କୃଷ୍ଣପ୍ରିୟା

ଘରେ ବସି କଥାବାର୍ତ୍ତା କରୁଥିଲା ବେଳେ କୃଷ୍ଣପ୍ରିୟା କହିଛନ୍ତି, ଆଜି ତୁମେ ଅତି ପବିତ୍ର । ଶୁଖିଲା ହସ ଖେଳାଇ ବିରସ କଣ୍ଠରେ ସୁଭାଷବାବୁ କହିଲେ, 'କ'ଣ ପବିତ୍ର ହେଲି ଆଜି ? ଆଜି ନୁହେଁ, ''କାଲିଠାରୁ କୃଷ୍ଣପ୍ରିୟା ତୁମକୁ ତା'ର ସମସ୍ତ ଉତ୍ସର୍ଗ କରିଦେଲା । ତୁମେ ତାକୁ ରଖ କି ଫୋପାଡ଼ି ଦିଅ - ସେ ତୁମର । ତୁମର ଦୟା ମୋର ଦରକାର । ଅଳି କରୁଛି - ଭିକ ମାଗୁଛି । କାଲି ଠିକ୍ କଲି ଯେ ସେ ଶ୍ୟାମାଦେବୀଙ୍କୁ ପାଇବେ । ତୁମେ କୃଷ୍ଣପ୍ରିୟାକୁ । ଏଇ ଦେହଟା ତାଙ୍କର । ଏଇ ମନଟା ତମର । ବାହାଘର ଯେଉଁ ପାଚେରୀ ପକାଇ ଦେଇଛି ସେତିକି ହେଉଛି ବ୍ୟବଧାନ । ଏଇ ଦେହକୁ କାମନା କରିବ ନାହିଁ ଏତିକି ହେଉଛି ତୁମପ୍ରତି ନିଷେଧ ।' ସୁଭାଷ ବାବୁଙ୍କ ଆଖିରୁ ଦୁଇଧାର ଲୁହ ଝରିପଡ଼ିଲା ଶ୍ୟାମାଦେବୀଙ୍କ ପାପ ଉପରେ । ଶ୍ୟାମାଦେବୀଙ୍କ ଆଖିରେ ଝର ଖୋଲିଯାଇଥିଲା ।''

ସେଦିନ ନିସ୍ତବ୍ଧ ରାତିରେ, ଛାପି ଛାପିକିଆ ଜହ୍ନ ଆଲୁଅରେ ଶ୍ୟାମାଦେବୀ ଦେଖୁଥିଲେ ନିଜକୁ । ସେ ପୁଣି ଥରେ ବିଭା ହୋଇଛନ୍ତି – ମନର ବିବାହ ହୋଇନଥିଲା ।

ଏଇ ହେଉଛି କଜ୍ଜଳଗାର ଉପନ୍ୟାସର କଥାବସ୍ତୁ । ଉତ୍କଣ୍ଠାରୁ ପ୍ରେମ ଓ ପ୍ରେମ ପାଇଁ ନିଜକୁ ଉତ୍ସର୍ଗ କରିଦେବାର କାମନା ଭିତରେ ମଣିଷ ଅନ୍ତଃମନର ସଂଗୁପ୍ତ ଚେତନାକୁ ରାଜୁବାବୁ ତାଙ୍କ ନିଜସ୍ୱ ଶୈଳୀରେ ରୂପାୟିତ କରିଛନ୍ତି ।

ନାରୀ ଚରିତ୍ର ତାଙ୍କର ଅଧିକ ପ୍ରଭାବଶାଳୀ । ଛୋଟ ଛୋଟ ବାକ୍ୟ ମାଧ୍ୟମରେ ବର୍ଣ୍ଣନା ଶୈଳୀ ବେଶ୍ ହୃଦୟସ୍ପର୍ଶୀ ।

କଜ୍ଜଳଗାର ଉପନ୍ୟାସ ତାଙ୍କୁ ସାର୍ଥକ ସ୍ରଷ୍ଟାର ଆସନରେ ଅଧିଷ୍ଠିତ କରିଯାଇଛି । ଘଟଣାର ଘନଘଟା ନୁହେଁ, ଅନେକ ଚରିତ୍ରର ଚାରୁ ଚିତ୍ରଶାଳାର ଆକର୍ଷଣ ନୁହେଁ ବରଂ ବର୍ଣ୍ଣନାର୍ର ଚମତ୍କାରିତା ହିଁ ତାଙ୍କର ଶ୍ରେଷ୍ଠତ୍ୱ ଓ ସ୍ୱତନ୍ତ୍ରତା ଦାବୀ କରେ ।

ଗଢ଼ିବାର ଦ୍ୱାରଦେଶରେ ତଥାପି ଅପେକ୍ଷାରତ ଅନ୍ୟ ଜଣେ ନୂଆ ଜୀବନର ସ୍ୱାଦ ଚାଖି ଚାଖି ବିତସ୍ପୃହ – ଅସମ୍ପୂର୍ଣ୍ଣତାର ହାହାକାର ଭିତରେ ଯନ୍ତ୍ରଣାଦଗ୍ଧ । ଶ୍ୟାମାଦେବୀଙ୍କର ରୂପ ଅନେକ - ସେ ମାଆ, ସେ ପତ୍ନୀ – ସେ ପ୍ରେମିକା । ଏ ରୂପର କାହାର କାହା ସହିତ ସାମ୍ୟ ନାହିଁ । ମନ ଦର୍ପଣରେ ସବୁ ଭିନ୍ନ ଭିନ୍ନ । ସମସ୍ତଙ୍କର ସ୍ଥିତି ସ୍ୱତନ୍ତ୍ର ।

ଏ ଉପନ୍ୟାସଟି ରାଜକିଶୋରଙ୍କ ଲେଖନୀର ସମସ୍ତ ସାର୍ଥକତା ବହନ କରିଛି । ଏଥିରେ ସନ୍ଦେହ ନାହିଁ ।





# 'ପ୍ରୀତିର ବଣିଜ' : ଏକ ଅଧ୍ୟୟନ

**ଗିରିଜା କୁମାର ବଳୀୟାରସିଂହ**

'ପ୍ରୀତିର ବଣିଜ'ରେ ବହୁ ଚରିତ୍ରର କୋଳାହଳ ନାହିଁ । ପ୍ରୀତିର ବଣିଜ ପାଇଁ ଚରିତ୍ରମାନଙ୍କର କୌଣସି ହାଟ ମଧ୍ୟ ବସିନି ଏ ଉପନ୍ୟାସରେ । ଉପନ୍ୟାସଟି ଗଢ଼ି ଉଠିଛି ଚାରୋଟି ଚରିତ୍ରକୁ ନେଇ କେବଳ - କଲେଜ ପାଠ ଶେଷ କରି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ଦୁଇଜଣ ଦରିଦ୍ର ଛାତ୍ର - ରମାକାନ୍ତ ଓ ଭଜକୃଷ୍ଣ - ସେମାନଙ୍କର ଜଣେ ସହପାଠିନୀ ଅଳକା ଏବଂ ଜଣେ ବିବାହିତ ରମଣୀ - ମାନିନୀ ଦେବୀ । ରମାକାନ୍ତ ଓ ଅଳକାଙ୍କ ମଧ୍ୟରେ ଅନୁରାଗ ସଞ୍ଚରିଛି ମହାବିଦ୍ୟାଳୟର ମୁକ୍ତ ପରିବେଶରେ । ମାନିନୀ ଦେବୀ ବିବାହିତା ହେଲେ ମଧ୍ୟ ଭଜକୃଷ୍ଣ ସହିତ ତାଙ୍କର ଆକର୍ଷଣ ବଢ଼ି ଯାଇଚି ନିଭୃତ ନିଳୟରେ, ହାକିମ ସ୍ୱାମୀଙ୍କର ସେଇ ଅନୁପସ୍ଥିତିର ମୁହୂର୍ତ୍ତମାନଙ୍କରେ । ଭଜକୃଷ୍ଣ ସେଠି ହାକିମ-ପତ୍ନୀ ମାନିନୀ ଦେବୀଙ୍କର ଗୃହ-ଶିକ୍ଷକ । ରମାକାନ୍ତ ଅଳକାର ସହପାଠୀ ।

ରମାକାନ୍ତ ଅଳକାଠାରୁ ଦୂରେଇ ରହିବାର ଚେଷ୍ଟାକରି ଆସିଛି । କାରଣ ସେ ଦରିଦ୍ର । ଅଳକା ଧନୀ ପିତାର ଅଲିଅଳ କନ୍ୟା ତା'ର ଧନ ଅଛି, ଯୌବନ ଅଛି, ରୂପ-ଲାବଣ୍ୟର ଅହଂକାର ବି ଅଛି ହୁଏତ । ଅଳକାର ସ୍ଥିତି ରମାକାନ୍ତ ପାଇଁ ସ୍ୱପ୍ନ । ଦାରିଦ୍ର୍ୟ ଛଡ଼ା ଅଳକାର ଆଖି ଆଗେ ଛିଡ଼ା ହେବା ପାଇଁ ତା'ର ଆଉ ଅଛି କ'ଣ ? ଦାରିଦ୍ର୍ୟକୁ ବାଦ୍ ଦେଲେ କେବଳ ଅହଂକାର ହିଁ ତା'ର ନିଜସ୍ୱ । ସେଇ ଅହଂକାର ତାକୁ ଅଳକାର ସାନ୍ନିଧ୍ୟରୁ ଦୀର୍ଘଦିନ ବଂଚିତ କରିଛି । ଦରିଦ୍ର ରମାକାନ୍ତ ନିଜର ସେଇ ବଡ଼ ସମ୍ପତ୍ତିକୁ ନେଇ, ବେକ ସିଧାକରି ବାଟ ଚାଲିଛି । ପ୍ରମାଣ କରିବାକୁ ଚାହିଁଛି - ଅଳକା ଯେତେ ବିଭବଶାଳିନୀ ହେଉ, ଯେତେ ବିଳାସିନୀ ହେଉ, ରୂପରେ ଯେତେ ପଛେ ଗର୍ବିଣୀ ହେଉ; ତା'ର ଟିକିଏ ସାନ୍ନିଧ ପାଇଁ ରମାକାନ୍ତ କେବେ କିନ୍ତୁ ବ୍ୟାକୁଳ ହେବ ନାହିଁ, ନିଜର ନିଜତ୍ୱ ହରାଇ ବସିବ ନାହିଁ, ଦରିଦ୍ର ହେଲେ ମଧ୍ୟ ନିଜର ପରିଧି ସେ ନିଜେ କାଟି ପାରିବ । ଅଳକା କିନ୍ତୁ ଜାଣେ - ରମାକାନ୍ତର ଏଇ ଦୂରେଇ ରହିବାର ଚେଷ୍ଟା କେବଳ ବାହାରର କଥା । ତା'ର ଅଗଣିତ ପ୍ରଲୁବ୍ଧ ସ୍ତାବକଙ୍କ ଭିତରୁ ରମାକାନ୍ତ ମଧ ଜଣେ; କିନ୍ତୁ ଟିକିଏ ସତର୍କ ! ନିଜକୁ ସେ ଧରାପକାଇବାକୁ ଚାହେଁ ନାହିଁ । ସେଇଥି ସକାଶେ ଦୂରେଇ ରହେ, ଦୂରରେ ରହିବାର ଛଳନା ହିଁ କରେ, ନିଜର ଦୁର୍ବଳତାକୁ ଅଳକାର ପାଖ ଛୁଆଁଏନା । ଅଥଚ ଅଳକାର ପରିଚୟ କେବଳ ବିଭବଶାଳୀ

ପିତାର ଅଲିଅଳ କନ୍ୟା ଭିତରେ ସିମୀତ ନୁହେଁ- ଅଳକାର ବି ଜଣେ ନାରୀ - ତା'ର ବି ରମାକାନ୍ତ ପରି ଅହଂକାର ଅଛି - ସେ ଅହଂକାର କିନ୍ତୁ ତା'ର ନାରୀତ୍ୱର ଅହଂକାର । ଅଳକା ମଧ୍ୟ କେବେ ରମାକାନ୍ତ ପାଖେ ନିଜକୁ ଯାଚି ଦେଇ ପାରିନି, ଏଇଥିପାଇଁ କେବଳ । ଉଭୟେ ଉଭୟଙ୍କର ଅହଂକାରକୁ ନେଇ ଲୁଚକାଳି ଖେଳୁଛନ୍ତି, ପରସ୍ପରର ଦର କଷୁଛନ୍ତି !

ଦରିଦ୍ରର ଅହଂକାର ଅତି ଉଗ୍ର । ମାତ୍ର ଏ ଅହଂକାର ଏକ ଦୟନୀୟ ଅହଂକାର । ଏ ଅହଂକାର ପ୍ରାୟତଃ ତୁଳନାବୋଧରୁ ଜନ୍ମନିଏ । ରମାକାନ୍ତ ନିଜର ସ୍ଥିତି ସହିତ ଅଳକାର ସ୍ଥିତିକୁ ତୁଳନା କରି ସ୍ପଷ୍ଟ ବୁଝିଛି ଯେ - ଅଳକା ତା ପାଇଁ ହିମାଳୟ - ସେଇ ହିମାଳୟ ପାଖରେ ସିଏ କିନ୍ତୁ; ଦୂରର ମଣିଷଟିଏ, ମାମୁଲି ମଣିଷ - ହାତ ବଢ଼େଇଲେ ଛୁଇଁ ହୁଏନା, ଉଚ୍ଚତା ମାପିବାତ ଦୂରର କଥା ! ଆଖି ମେଲି ଚାହିଁଲେ ବି ସ୍ପଷ୍ଟ ଦେଖିହୁଏ ନା, ବ୍ୟାପ୍ତି, କଳିବା ତ ବହୁ ପରର ବିଷୟ ! - ସେଥିପାଇଁ ଅଳକା ସହିତ ଏତେ ସଅଳ ମିଶି ପାରିନି ସେ; ଦୂରରେ ଥାଇ କେବଳ ପାହାଡ଼-ଚଢ଼ାଳୀର ସ୍ୱପ୍ନ ଦେଖି ଆସିଛି । ଭାବିଛି - ଦିନେ କିନ୍ତୁ ସେହି ହିମାଳୟର ଶୁଭ୍ରତା ପରଖିବ ସେ- କଳିନେବ ତା'ର ଉଦ୍ଧତ ଉଚ୍ଚତାକୁ - ଅଙ୍ଗେ ନିଭେଇବ ତା'ର ସେଇ ଶୀତଳ ଶିକାରକୁ !!

ଏଇ ହେଲେ ଉପନ୍ୟାସର ଦୁଇ ଚରିତ୍ର - ରମାକାନ୍ତ ଆଉ ଅଳକା - କଲେଜ କକ୍ଷର ଛାତ୍ର ଓ ଛାତ୍ରୀ । ଉଭୟେ ଉଭୟଙ୍କର ମନର ଠିକଣା ଖୋଜୁଛନ୍ତି । ମାତ୍ର ନିଜ ନିଜର ଅହଂକାରକୁ ନେଇ ବାଟ ଚାଲୁଛନ୍ତି, ପରସ୍ପରକୁ ପରଖିବାର ନିଶାରେ ସମୟ କାଟୁଛନ୍ତି; ପ୍ରାଣ ଖୋଲି, କେହି କାହାକୁ ପଦଟିଏ କଥା ବି କହି ନାହାନ୍ତି ଦୀର୍ଘଦିନ ଧରି । ପରସ୍ପର ପରସ୍ପରର ସାନ୍ନିଧ ଖୋଜୁଥିଲେ ମଧ୍ୟ ନିଜର ଇଚ୍ଛା-ଅଭିଳାଷକୁ ନିଜ ଭିତରେ ଚାପି ଦେଇ, ଦିନାକେତେ ଆତ୍ମ ଦହନରେ ଜଳିଛନ୍ତି । ବେଶି ଜଳିଛି ରମାକାନ୍ତ । କାରଣ ସେ ଦରିଦ୍ର ପରିବାରରୁ ଆସିଛି, ସହରରେ ପାଠ ପଢ଼ିଛି । ନିଜର ଦାରିଦ୍ର୍ୟ ପାଇଁ ତା'ର ସଚେତନତା ଅଛି । ସେଥିପାଇଁ ବହୁ ପରିଚିତ ହୋଇ, ନିଜର ପରିଚୟକୁ ଅନ୍ୟ ଆଗେ ଟୋକି ଧରିବାକୁ ସେ ଆଗେଇ ଯାଇନି । ତା'ର ଏକୁଟିଆ ଜୀବନ ତା'ର ପ୍ରିୟ । ଭଜକୃଷ୍ଣ ତା'ର ବନ୍ଧୁ; କିନ୍ତୁ ସେ ରମାକାନ୍ତର ସ୍ଥିତି ସମ୍ପନ୍ନ - ସେ ବି ରମାକାନ୍ତ ପରି ଦରିଦ୍ର । ରମାକାନ୍ତର ଜୀବନରେ ଭଜକୃଷ୍ଣର ସ୍ୱରଶବ୍ଦ ହିଁ ବେଶି ଶୁଣାଯାଉଛି - ବହୁ ବନ୍ଧୁର କୋଳାହଳରେ ସେ ନିଜକୁ ହଜେଇ ପାରିନି । ସେଥିପାଇଁ ରମାକାନ୍ତ ବନ୍ଧୁ ବିରଳ ଜୀବନରେ ବହୁ ସମୟ ପାଉଚି ଭାବିବାକୁ, ସ୍ୱପ୍ନ ଦେଖିବାକୁ । ଅଳକାର କଥା ଭାବିବାକୁ ତା'ର ବେଳ ଅଛି ଖୁବ୍ ! ଅଳକାର ଟିକିଏ ସାନ୍ନିଧ ପାଇଁ ତା'ର ଅବଚେତନ ମନ କେତେ ଆକୁଳ । ଗୋଟିଏ ସ୍ଥାନରେ ଭଜକୃଷ୍ଣର କାନ ପାଖେ ନିଜର ମନ ଖୋଲି ଦେଇଚି ସେ—



'ମନ ଡାକୁଚି ଅଳକା ପାଖକୁ ଯିବା ପାଇଁ । ସତରେ ସେ ଭାରୀ ସ୍ୱଚ୍ଛ - ଭାରୀ ରୋକ୍‌ଠୋକ୍ । ଏତେ ଲୋଭ ହେଉଛି ଯେ ମନେ ହେଉଛି ଅଳକା ପାଖରେ ଦି'ଘଣ୍ଟା ବସି ଦି'ଦିନ ମନସ୍ତାପ କଲେ ବି ଲାଭ ଅଛି - କ୍ଷତି ନାହିଁ ।' (ପୃଷ୍ଠା:୭)

ଅଥଚ ଅଳକାର ଜୀବନ ନିଃସଙ୍ଗ ନୁହେଁ । ତା'ର ସମୟ ବିତୁଛି ବିଳାସରେ, ପ୍ରମତ୍ତ କୋଳାହଳ ଭିତରେ । ସେ ନିଜ କଥା ଭାବିବାକୁ ସେ ଏଣୁ ବେଳ ପାଉଥିବ ଖୁବ୍ କମ୍ । ରମାକାନ୍ତକୁ ନେଇ ଭାବି ବସିବାକୁ ମଧ୍ୟ ସମୟ ତା'ର ପ୍ରଚୁର ନଥିବ । ନିଜକୁ ହଜେଇ ଦେଇ ସାରି, ଫେରେଇ ଆଣିବାକୁ ହେଲେ ଯେଉଁ ନିର୍ଜନତା ତା' ପାଇଁ ଦୁର୍ଲଭ । ବିଳାସର କୋଳାହଳ ମଧ୍ୟରେ ନିଜର ଜ୍ୱଳନକୁ ଅନୁଭବ କରିବାର ମୂହୂର୍ତ୍ତ ମଧ୍ୟ କ୍ୱଚିତ୍ ସେ ପାଉଥିବ । ସେ ତେଣୁ ରମାକାନ୍ତ ପାଇଁ ସେତେଟା ଆକୁଳ ନୁହେଁ; ଯେପରି ରମାକାନ୍ତ ତା' ପାଇଁ ଆକୁଳ । ସେ ମଧ୍ୟ ଗୋଟାଏ ସ୍ଥାନରେ ନିଜର କୋଳହଳମୟ ଜୀବନର କିଛିଟା ଇଙ୍ଗିତ ଦେଇଛି - 'ଆମ ଘରଟା ଗୋଟାଏ କ୍ଲବ୍ - ଏଇ ବେହେଡ଼ା ଓ ବେହିଆଙ୍କର ।' (ପୃଷ୍ଠା:୩)

ସୁତରାଂ, ପ୍ରଥମେ ହିଁ ମୁହଁ ଖୋଲିଚି ରମାକାନ୍ତ । ତା'ର ବନ୍ଧୁବିରଳ ଜୀବନର ପ୍ରତିକ୍ରିୟା ଏବଂ ଅଳକାର ସାନ୍ନିଧ୍ୟ କାମନା ହିଁ ତାକୁ ଅନ୍ତର୍ଦାହର ଅସ୍ଥିର କରିଚି । ସେଇ ଅସ୍ଥିରତା ତା'ର ଅହଂକାରକୁ ସବୁଦିନ ପାଇଁ ଅଟଳ ରଖିପାରିନି, ଅକ୍ଷତ ରଖିପାରିନି । କଲେଜ ପାଠ ସରି ଆସିଚି । ସେ ଭାବୁଚି - 'ଆଉ ଦେଖା ହେବନାହିଁ । ଅଳକାର ସେହି ଧନଯୌବନ ଆସ୍ଫାଳନ ଦେଖା ଦେବ ନାହିଁ । ସମୟର ଦୂରତାରେ ବ୍ୟବଧାନର ଦୂରତା ବଢ଼ିବ । ଏଇ ବିଚିତ୍ର ଜୀବନର ଗୋଟିଏ ସ୍ମାରକ ରହିଲା ନାହିଁ ।'

ଆଉ ଦେଖା ହେବ ନାହିଁ... ବେଳ ସରିଆସିଲାଣି - ରମାକାନ୍ତର ଏଇ ପ୍ରତିକ୍ରିୟା ତା ମନରେ ଅସ୍ଥିରତା ଆଣିଚି । ସେଇ ଅସ୍ଥିରତାର ଇଙ୍ଗିତ ସେ ପାଇଚି, 'ଶେଷ ହୋଇ ଆସିଲା - ତେଣୁ ଆଉ ବିଚାରର ତାତ୍ପର୍ଯ୍ୟ ଦେଖାଇବା ନିଷ୍ଫଳ ।' (ପୃଷ୍ଠା:୨) ଅହଂକାରର ଏବେ କିଛି ଆବଶ୍ୟକତା ନାହିଁ । ଅହଂକାରକୁ ଜଗିଲେ, ବେଳ ଗଡ଼ିଯିବ । ଅଳକା ହଜିଯିବ ବିସ୍ମୃତିର ବହଳ ଅନ୍ଧକାର ଭିତରେ, ଜୀବନରେ ଆଉ କିଛି ସ୍ମୃତିଚିହ୍ନ ରହିବନି । ଏଇ ଲୁଚକାଳି ଭିତରେ ସବୁକିଛି ସଂଗୋପିତ ଆଶା, ଗୋପନରେ ଝରିଯିବ । ଅହଂକାରରେ ନିଜକୁ ଦୂରେଇ ରଖିଲେ, ବହୁଦିନର ସେଇ ସଂଚିତ କାମନା ଦୂରରେ ହିଁ ମଉଳିଯିବ । ଅସ୍ଥିରତା ରମାକାନ୍ତକୁ ଅଳକାର ସାନ୍ନିଧ୍ୟ ପାଇଁ ପ୍ରବୃତ୍ତ କରିଚି । ଗୋଟାଏ ଖିଆଲ୍ ଏଇଟା - ହୁଏତ ଗୋଟାଏ ଉନ୍ମାଦନା - ଗୋଟାଏ ମୁହୂର୍ତ୍ତର ସିଦ୍ଧାନ୍ତ — !!! ସେଇ ସିଦ୍ଧାନ୍ତର ସାହସରେ ରମାକାନ୍ତ ଏତେଦିନ ପରେ ହିଁ ପହଞ୍ଚିଛି ଅଳକାର ପାଖେ - ମୁହଁ ଖୋଲି

କହିଚି - 'ନମସ୍କାର । କଲେଜ ସରିଗଲା । ମନେ ରଖିବା ପାଇଁ...' (ପୃଷ୍ଠା:୩) ! ରମାକାନ୍ତ ପରି ମଣିଷ ଅଳକା ପାଇଁ ସାଧାରଣ ନିଶ୍ଚୟ । ସାଧାରଣ ମଣିଷର ପଦେ କଥା - ବ୍ୟସ୍ତ ହେବାର କି ବିସ୍ମିତ ହେବାର କିଛି ନାହିଁ । ଅଳକା ବି ଜାଣିଥିଲା ଯେ - ରମାକାନ୍ତ ମଧ୍ୟ ତା'ର ଜଣେ ସ୍ତାବକ । କେବଳ ନିଜର କିଛି ସ୍ୱାତନ୍ତ୍ର୍ୟ ରହିଛି ବୋଲି ଦର୍ଶାଇବାକୁ ଅଥବା ନିଜକୁ ସ୍ପଷ୍ଟଭାବରେ ପ୍ରକାଶ ନ କରିବାକୁ ହିଁ ଏତେଦିନ ହେଲା ଦୂରେଇ ରହିବାର ଅଭିନୟ କରି ଆସିଛି ସେ- ସେଇ ମାମୁଲି ମଣିଷଟି । ଅଳକା କିନ୍ତୁ ସତରେ ଭାରୀ ରୋକ୍‌ଠୋକ୍ । ତା'ର ବକ୍ତବ୍ୟ ସେ କହିଚି -

- 'ମୁଁ ଜାଣେ । ମୁଁ ବୁଝିଚି । ଅନେକ ଭାବିଚିନ୍ତି, ଆଜି ଶେଷ ଦିନର ଶେଷ ଆଡ଼କୁ କହିବେ ବୋଲି ମୁଁ ଜାଣିଥିଲି; କିନ୍ତୁ ଶେଷ ବେଳର କଥା ଶେଷ କଥା ହେଇ ନାଟକ ହେଇପାରେ ସିନା । ଜୀବନର ଏସବୁ ହେଉଛି ଅଦରକାରୀ ।'

ରମାକାନ୍ତ କହୁଚି - 'ଜୀବନଟା ପଡ଼ିଚି ଆଖି ଆଗରେ । ଏଇ ତ ଆରମ୍ଭ ।'

ଏବଂ ଅଳକାର କଥନିକା - 'ଓ, ଜୀବନର ଆରମ୍ଭ କଥା ? ହସି ଅଳକା କହିଲା, ଯେଉଁ ଜୀବନ ଯେତେ ଶୀଘ୍ର ପ୍ରଖର ଭାବରେ ଆରମ୍ଭ ହୁଏ, ତାହାର ଜୀବନକାଳ ସେତିକି ସଂକ୍ଷିପ୍ତ । ମୋର ବା ଆଉ କେତେଦିନ ?'

ଅଳକାର ଏଇ କଥନିକାରେ ତା'ର ନିଜର କିଛି ଦୀର୍ଘଶ୍ୱାସ ମିଶିରହିଛି ବୋଧେ । - ଜଡ଼ିରହିଚି ଜୀବନକୁ ବୁଝିବାକୁ ଚେଷ୍ଟା କରିଥିବା ଜଣେ ନାରୀ-ଆତ୍ମାର କେତୋଟି ମୁହୂର୍ତ୍ତର ନିରୋଳା ଅନୁଭବ । ବୋଧେ ଏଇଥିପାଇଁ - 'ରମାକାନ୍ତ ବିହ୍ୱଳ ହୋଇ ପଡ଼ିଲା । ସେଇ ଦରଦୀ କଥା କେଇ ପଦରେ ତାହାର ଆଖିଡୋଳା ଓଦା ହୋଇ ଆସିଲା x x x ରମାକାନ୍ତ ନିଜକୁ ଦୋଷୀ ମନେ କରିଥିଲା- ଅପେକ୍ଷା କରି କରି କହିବାର ସୁବର୍ଣ୍ଣ ସୁଯୋଗକୁ ଚାହିଁ ଚାହିଁ ସେ ଭୁଲ କରିଛି । କ୍ଷଣସ୍ଥାୟୀ ଜୀବନରେ ବେଗର ସ୍ଥାନ ଓ ଇଜ୍ଜତ୍ ମଧ୍ୟ ସେମିତି ଉଚ୍ଚରେ ! ଅଳକା ଚାଲିଯାଇଛି । ଗଲାବେଳେ ସତେ କି କହିଦେଇ ଯାଇଛି ଯେ, ଅପେକ୍ଷା କରି ବସିରହିଥିବା ଲୋକ ମନେ କରିଥାନ୍ତି ଯେ, ମଣିଷର ପରମାୟୁ ଷାଠିଏ ବର୍ଷ ନୁହେଁ - ପାଞ୍ଚଶହ, ଛଅଶହ ବର୍ଷ । ତେଣୁ ଅପେକ୍ଷା କରି ରହିଥାନ୍ତି । ...ରମାକାନ୍ତ ସେମିତି ରହି ଯାଇଥିଲା କେଇଟି ବର୍ଷ - ପଦେ କଥା କହିବା ପାଇଁ ।'(ପୃଷ୍ଠା:୩-୪)

ରମାକାନ୍ତ ଏକ ଆବେଗ ପ୍ରବଣ ଚରିତ୍ର । ଅଳକାଠାରୁ ବିଦାୟ ନେଇ ସେ ଫେରି ଆସୁଛି; ଭାବୁଛି - କଥାପଦେ କହିବାକୁ ସେ ଅକାରଣେ ଏତେଦିନ ଅପେକ୍ଷା କଲା ।



ତା'ର ଅବଶୋଷ ଆସୁଛି, ବହୁ ପୂର୍ବରୁ ମଧ୍ୟ ସେ ଅଳକାକୁ ପାଖରେ ପାଇ ପାରିଥାନ୍ତା । ଅଳକା ହିଁ ତାକୁ ଇଙ୍ଗିତ ଦେଇଛି - ଅପେକ୍ଷା ପରି ଜୀବନ ଏତେ ଦୀର୍ଘ ନୁହେଁ । ଜୀବନ ଖୁବ୍ ଛୋଟ, ଖୁବ୍ ସୀମିତ । ଏଇଠି ରମାକାନ୍ତ ଚରିତ୍ର ଏକ ସଚେତନ ଚରିତ୍ର । ଦୀର୍ଘ ଦିନ ସେ ଅଳକାର ଭାବନାରେ ବୁଡ଼ି ରହିଥିଲା । ଅଳକାକୁ ଖୁବ୍ ଗୁରୁତ୍ୱ ଦେଇ ଭାବୁଥିଲା । ସେଥିପାଇଁ କଥାପଦେ କହିବାକୁ ବର୍ଷାଧିକ ସମୟ ସେ ଅପେକ୍ଷା କଲା । ଅଥଚ ତାର ସେଇ କଥାପଦକ ପରେ ଅଳକା ବ୍ୟସ୍ତ ହୋଇନି, ବିସ୍ମିତ ହୋଇନି । କାରଣ ଅଳକା ଜାଣିଥିଲା, ଏସବୁ ଦିନେ ଘଟିବ ନିଶ୍ଚୟ, କିନ୍ତୁ ଅଳକା ପାଇଁ ଜୀବନ ଦ୍ରୁତ; ମତ୍ତ କୋଳାହଳ ଭିତରେ ସମୟ ହଜିଯିବାରେ ଲାଗିଛି । ଅଥଚ ରମାକାନ୍ତ ସମୟକୁ ଭୁଲି ଯାଇଛି । କେଇଟା ବର୍ଷ ଚାହୁଁ ଚାହୁଁ ବିତି ଯାଇଛି । କଲେଜ ସରିବା ପରେ ହିଁ ସେ ସମୟ ସଚେତନ ହୋଇ ଉଠିଛି । ଅଳକା ସହିତ ଆଉ ସମ୍ପର୍କ ରଖି ହେବ ନାହିଁ, ବେଳ ସରିଆସିଲା । ଅତୀତର ସେ କେବଳ ଭାବନା ଭିତରେ ବୁଡ଼ିରହି ସମୟକୁ ଭୁଲିଛି । ଏଇ କଥା ଏବେ ଅଳକା ଚେତାଇ ଦେଇଛି - 'ଅପେକ୍ଷା କରି ବସି ରହିଥିବା ଲୋକ ମନେ କରିଥାନ୍ତି ଯେ, ମଣିଷର ପରମାୟୁ ପଚାଶ ଷାଠିଏ ବର୍ଷ ନୁହେଁ - ପାଞ୍ଚଶହ, ଛଅଶହ ବର୍ଷ !' -ରମାକାନ୍ତର ସମୟ ବିସ୍ମୃତିର ସୂଚନା ଏ । ଜୀବନର କ୍ଷଣିକତାକୁ ସେ ଭୁଲି ଯାଇଛି, ଜୀବନରେ ଘଟିଥିବା ଘଟଣାର ପ୍ରତିକ୍ରିୟାରେ ।

ଏଇଠି କିନ୍ତୁ ଭଜକୃଷ୍ଣ ଏକ ଆତ୍ମସ୍ଥ ଚରିତ୍ର ଭାବରେ ଦେଖା ଦେଇଛି । ରମାକାନ୍ତ ସମ୍ପର୍କରେ ଯେତେ କଥା ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ କୁହାଯାଇ ପାରିବ, ଭଜକୃଷ୍ଣ ସମ୍ପର୍କରେ କୁହାଯାଇ ପାରିବନି । ଅଳକା ସହିତ୍ ଦେଖା ହେବା ପରେ ରମାକାନ୍ତ ନିଜ ଜୀବନରେ କିଛି ପରିବର୍ତ୍ତନ ଆସିଚି ବୋଲି ସୂଚନା ପାଉଛି । ରମାକାନ୍ତର ଏଇ 'ବର୍ତ୍ତମାନ' ଯେଉଁଠାରୁ ଆରମ୍ଭ ହେଲା, ଠିକ୍ ସେଇଠାରେ ହିଁ ଶୋଇପଡ଼ିଚି ଭଜକୃଷ୍ଣର ପରିତ୍ୟକ୍ତ ଅତୀତ ! ସେ 'ଅତୀତ' ଏକ କରୁଣ ସ୍ମୃତିର ଛକ ! ଜୀବନର ଚଲାବାଟରେ ଯାଉ ଯାଉ ଭଜକୃଷ୍ଣ ବି ଦିନେ ସେ ଛକରେ ପହଞ୍ଚିଥିଲା । ସେଇଠି ସେ ଭେଟିଥିଲା ମାନିନୀକୁ ! - ମାନିନୀ ତା ଜୀବନର ଏକ ଗୋପନ ଅଧ୍ୟାୟ ।

ବନ୍ଧୁ ହେଲେ ମଧ୍ୟ, ଭଜକୃଷ୍ଣ- ଜୀବନର ଏଇ ଗୋପନାଂଶର ଇତିହାସକୁ, ବହୁ ବିଳମ୍ବରେ ଜାଣିବାକୁ ପାଇଚି ରମାକାନ୍ତ । କାରଣ ଭଜକୃଷ୍ଣ ଏଇ ଆତ୍ମସ୍ଥ ଚରିତ୍ର । ନିଜ ଜୀବନର ଏଇ ଗୋପନ-ଅଧ୍ୟାୟକୁ ଏତେ ଶୀଘ୍ର ସେ ଖୋଲିବାକୁ ଦେଇନି । ଜୀବିକାଦାଉରେ ସେ ନିଜକୁ ପଥର କରି ଗଢ଼ିଛି, କେତେ ଧକ୍କା ସହିଛି, ଠୋକ୍କର ଖାଇଛି; କିନ୍ତୁ ନିଜର ସ୍ଥିତିରେ ଅଟଳ ରହିଛି । ଟିକକ ପ୍ରତିକ୍ରିୟାରେ ତରଳି ପାରିନି । ତା'ର ଭିତରର ମଣିଷ

ହୁଏତ ଅନ୍ତର୍ଦାହରେ ଛଟପଟ ହେଉଛି, ଦୁଃଖରେ ହନ୍ତସନ୍ତ ହେଉଛି; କିନ୍ତୁ ତାକୁ ବାହାରେ ପ୍ରକାଶ କରିବାକୁ ଯାଇ, ଭଜକୃଷ୍ଣ ରମାକାନ୍ତ ପରି ଅସ୍ଥିର ହୋଇନି । ଭଜକୃଷ୍ଣ ହେଲା ଟିକେ ଗମ୍ଭୀର ମଣିଷ, ମାପିଚୁପି କଥା କହେ । ରମାକାନ୍ତ ପରି ଟିକିଏ ଉତ୍ତେଜନାରେ ଭାବପ୍ରବଣ ହୋଇ ପାରେନା ସେ; ପ୍ରଗଲ୍‌ଭ ହୋଇ ଉଠେନା । ବିଶେଷତଃ, ନିଜର ଗୋପନାଂଶକୁ ନିଜ ଭିତରେ ସାଇତି ରଖି, ଦୀର୍ଘଦିନ୍ ଚଳି ଆସିଛି ସେ । ମାତ୍ର ଜୀବନରେ ବେଳେ ବେଳେ ଏମିତି ମୁହୂର୍ତ୍ତ ଆସେ, ଯେତେବେଳେ କି ଗମ୍ଭୀର ମଣିଷ ବି ନିଜର ପରିଚୟକୁ ଖୋଲିଦେବା ପାଇଁ ଇଚ୍ଛାକରେ; ନିଜର ଦହନର ଇତିହାସକୁ ଗାଇଯିବାକୁ ଇଚ୍ଛାକରେ । ଭଜକୃଷ୍ଣର ଜୀବନରେ ମଧ୍ୟ ସେ ମୁହୂର୍ତ୍ତ ଆସି ଯାଇଛି । ସେଇ ମୁହୂର୍ତ୍ତରେ ସେ ଆରମ୍ଭ କରିଛି - 'ଜୀବନଟା ଭାଇ ପ୍ରକୃତରେ ଥିଏଟର୍ । ଏଇ ଭଜକୃଷ୍ଣକୁ ଗୋଟାଏ ଅଂଶ ମିଳିଥିଲା ଘରୋଇ ମାଷ୍ଟ୍ରର ଭୂମିକାରେ । x x x ମୁଁ ତାକୁ ଡାକେ ମାନସୀ - ମାନମୟୀ ବୋଲି । ଏଇଟା ଆମ ଭିତରେ ଗୋପନ ଅଂଶ । x x x ଏଠି ଗୋଟାଏ ଥିଲା ଅନାହାରୀ ଦର ପାକଲା କଲେଜଛାତ୍ର । ଆରଟି ଥିଲା ବିଳାସ-ବିହାରିଣୀ ପୂରା ପାଚିଲା ବାବୁଆଣୀ । x x x ମନ କହୁଥାଏ ମାଷ୍ଟ୍ରର ଅର୍ଥ ଯାହାହେଉ, ମାଷ୍ଟ୍ର ହେଉଛି ଭଜକୃଷ୍ଣ । ଏଣେ ଭଜକୃଷ୍ଣ ବୁଝୁଥାଏ ଯେ ପ୍ରକୃତ ମାଷ୍ଟ୍ର ହେଉଛି ମାନମୟୀ । x x x ଗପସପ ହୋଇଗଲା ବେଶ୍ । ଦିହେଁ ଦିହିଁଙ୍କ ପାଖେ ଯେତିକି ସମ୍ଭବ-ସ୍ୱାଧୀନ ହୋଇଗଲେ । x x x ନା, ମାନମୟୀ କହିଥିଲା ଥରେ । ବାବୁଙ୍କୁ ସେ ତାଗିଦ୍ କରି ଦେଇଛି ଯେ ପଢ଼ିଲା ବେଳେ ସେ ଆସି ନହରପହର ହେଲେ ମାନମୟୀ ପଢ଼ା ବନ୍ଦ କରିଦେବେ । x x x ମାନମୟୀ ଦିନେ କହିଲା - ଭାରୀ ଭୁଲ୍ ହୋଇଗଲା ଭଜକୃଷ୍ଣ ।

ଆମେ ଆମ ଭିତରେ ଯେତିକି ନିକଟ ହେବା କଥା, ତହିଁରୁ ବହୁତ ନିକଟକୁ ଆମେ ଚାଲି ଆସିଲେ । ହେଲେ ଆମେ ଅଲଗା ହୋଇଯିବା ମଙ୍ଗଳର ବିଷୟ ହେବ । ... ତୁମକୁ ବିଦାୟ ଦେବାପାଇଁ ମୁଁ ବହୁତ ଅସୁଖୀ ହେବି । ହେଲେ ବି ଅନ୍ୟବାଟ କିଛି ନାହିଁ ।' - ଜଣେ ନାରୀର ପ୍ରୀତି ଓ ପ୍ରତ୍ୟାଖ୍ୟାନର ଇତିହାସ ଏ । (ପୃଷ୍ଠା:୯-୩୦)

ଭଜକୃଷ୍ଣ ତା' ଜୀବନର ଏଇ ଗୋପନାଂଶକୁ କହି ବସିଛି ଏବଂ - 'କହିଲା ବେଳେ ଭଜକୃଷ୍ଣର ଦୁଇ ଆଖିରୁ ଲୋତକଧାରା ବହି ଆସିଥିଲା । ସେ ଅଶ୍ରୁ ନୁହେଁ - ମର୍ମଭେଦୀ ଦୁଃଖର ସଚନା । ... ଅଳ୍ପ ସମୟ ପରେ ପ୍ରକୃତିସ୍ଥ ହୋଇ କହିଲା - କାହିଁକି ଭଲା ସେଇ ଅଭୁଲା କଥା ଆଉ ଥରେ ଆଣି ଖୋଇ ଦେଲି । ଭାବିଲେ ବଡ଼ ଆଘାତ ଲାଗେ । ସବୁ ପାଇ ମୁଁ ସବୁ ହରାଇଛି । ଆଉ କିଛି ପଚାର ନାହିଁ - ।' (ପୃଷ୍ଠା:୩୧)



ଏଇଠି ଭଜକୃଷ୍ଣ ପୁଣି ନିଜକୁ ଲୁଚେଇ ନେଇଛି । ତା'ର ଭିତରର ମଣିଷ ଆହୁରି ଭିତରକୁ ଯାଇ, ନିଜକୁ ସଂକୁଚିତ କରିନେଇଛି । ଖୁବ୍ କମ୍ ସମୟ ଭିତରେ ଭଜକୃଷ୍ଣ ନିଜର ପୂର୍ବ ଅବସ୍ଥାକୁ ଚାଲି ଆସିଛି, ପ୍ରକୃତିସ୍ଥ ହୋଇ, ନିଜର ଦୁଃଖ ଭୁଲିବାର ଚେଷ୍ଟା କରିଛି । ରମାକାନ୍ତ ଏତିକ କରି ପାରିନଥାନ୍ତା, ଭଜକୃଷ୍ଣର ଅନୁଭୂତି ଶୁଣି ସେ ଏବେ କହୁଛି, -'ମୁଁ ଏତେ କଥା ଶୁଣିବି ବୋଲି କଳ୍ପନା ମଧ୍ୟ କରି ନଥିଲି । ଏବେ ଜାଣୁଛି ଯେ, ପ୍ରତ୍ୟେକର ଜୀବନରେ ଅସରନ୍ତ ବୈଚିତ୍ର୍ୟ ଥାଏ । ପ୍ରତ୍ୟେକ ମଣିଷର ଜୀବନ ଭୋଗର ଇନ୍ଦ୍ରଜାଲ । ... ଅଳକା କଥା କହିବାକୁ ଭାବିଥିଲି, କହିପାରିଲି ନାହିଁ । ଓଲଟି ଯାହା ଜାଣିଲି, ସେତିକିରେ ବୁଝୁଚି ଯେ, ଏଇ ସଂସାର ପାଇଁ ଆମେ ହୀନ ଓ ଅସମର୍ଥ । ଏଇ କଲେଜର ପାଠ, କଲେଜର କୋଠା ଓ ଏହାର ଦିଗ୍‌ବିଜୟ ଆମକୁ ସଂସାର ପାଇଁ ଗଢ଼ି ପାରିଲା ନାହିଁ ।'(ପୃଷ୍ଠା:୩୧)

ରମାକାନ୍ତ ଅପେକ୍ଷା ଭଜକୃଷ୍ଣର ଜୀବନ ଆହୁରି ଅନୁଭୂତିମୟ । ରମାକାନ୍ତ ପ୍ରତି ଭଜକୃଷ୍ଣର ବନ୍ଧୁ ସୁଲଭ ଉପଦେଶ ଭିତରୁ, ଭଜକୃଷ୍ଣର ବ୍ୟକ୍ତିତ୍ୱର ଏକ ଉଜ୍ଜ୍ୱଳ ଦିଗ ଆବିଷ୍କାର କରାଯାଇପାରେ । କିନ୍ତୁ ସେଇ ଉଜ୍ଜ୍ୱଳତାର ଆରପଟେ ଏକ ଅସ୍ପଷ୍ଟ ଜଗତ ରହିଛି । ସେ ଜଗତ ଭଜକୃଷ୍ଣର ଏକାନ୍ତ ନିଜସ୍ୱ । ସେ ଜଗତରେ ମାନିନୀର ସ୍ମୃତି ଏକ ଦୁର୍ନିବାର ବହ୍ନିଶିଖା । ଭଜକୃଷ୍ଣ କିନ୍ତୁ ସହଜରେ ନିଜକୁ ପ୍ରକାଶ କରେନା । ସେଥିପାଇଁ ରମାକାନ୍ତ ଯେତେବେଳେ ତା'ର ସେଇ ନେପଥ୍ୟ ଜୀବନର ନାୟିକା କିଏ ବୋଲି ଜାଣିବାକୁ ଚାହିଁଚି, ସେତେବେଳେ ସେ ଉତ୍ତର ଦେଇଛି - 'ସେତିକି ଭାଇ ଗୋପନୀୟ । ସେହି ନାମରୁ କ'ଣ ମିଳିବ ? ଏମିତି ଅସଂଖ୍ୟ ପଥର ଓ ମାଟିର ମୂର୍ତ୍ତିକୁ ଆମେ ପୂଜା କରୁଛୁ । ନାମ ଜାଣିଲେ ସେହି ଠାକୁରଙ୍କର ମହିମା ପ୍ରକାଶ ପାଇବ । ଏଠି ନାମଟା ବିପଦର କାରଣ ହେବ । ଅନ୍ତତଃ ଆମେ କଥାଟି ଜାଣିବା । x x x ମୁଁ ତାକୁ ଡାକେ ମାନସୀ - ମାନମୟୀ ବୋଲି ।' (ପୃଷ୍ଠା:୧୧)

ଭଜକୃଷ୍ଣ ସମ୍ପର୍କରେ ଏତିକି ଜାଣିଲା ପରେ ରମାକାନ୍ତର ଧାରଣା ବଦଳିଛି । ସେଥିପାଇଁ ସେ ଭାବୁଛି, -"ହାଲକୁ ଶୁଣିଲା ଗୋଟାଏ ବିଚିତ୍ର କାହାଣୀ - ପୂରାଟା ବି ଜଣାଗଲା ନାହିଁ । ସେ ଭାବୁଥିଲା ଭଜକୃଷ୍ଣ ଗୋଟିଏ ସିଧାସାଧା ଲୋକ - ସେଠି କ'ଣ ବା ସେ ନ ଦେଖିଲା ? ... ଏମିତି ଅନ୍ୟକୁ ପଶୁଟାଏ ବୋଲି ଭାବି ଖୁସି ହେଉ ଥିଲା ବେଳେ ପୁଣି ଦେଖାଯାଏ ଯେ, ଅସଲରେ ସେଇଟା ପଶୁ ନୁହେଁ - ତାହାର ବହୁତ କିସମର ଅନୁଭବ ହେଲାଣି ।" (ପୃଷ୍ଠା:୩୩)

ମଣିଷ ଯାହା ଦିଶେ, ତାହା ନୁହେଁ । ବାହାର ସହିତ ଭିତରର କୌଣସି ମେଳ ନାହିଁ । ଭଜକୃଷ୍ଣ ଚରିତ୍ର ଦ୍ୱାରା ଔପନ୍ୟାସିକ ଏହା ହିଁ ସୂଚାଇଛନ୍ତି । ପ୍ରତିଟି ମଣିଷ-ଜୀବନର

ଆଉ ଏକ ଦିଗ ଥାଏ, ଯାହା ଆଚ୍ଛନ୍ନ, ଅନ୍ଧକାର Marktwain କହିଲା ପରି "Every man is a moon and has a dark side which he never shows to any body" ଏବଂ ପ୍ରଥମ ଶ୍ରେଣୀର ଔପନ୍ୟାସିକମାନେ ମଣିଷ ଜୀବନର ସେଇ ଅନ୍ଧକାର ଦିଗ ଉପରେ ଆଲୋକପାତ କରନ୍ତି । ଯେଉଁ ଜୀବନର ଗୋଟିଏ ପାଖ ଜହ୍ନ ପରି ଉଆଁସରେ ଢ଼ାଙ୍କି ହୋଇ ରହିଥାଏ, ଆଖି ଦେଖା ଦୁନିଆରେ ଅଜଣା ଅଶୁଣା ହୋଇ ପଡ଼ିଥାଏ; ତା'ରି ରହସ୍ୟ, ତା'ରି ପରିଚୟ ଜଣାଇବାକୁ ସେମାନେ ବେଶି ପ୍ରଲୁବ୍ଧ ହୁଅନ୍ତି । ସେଥିପାଇଁ ସେମାନଙ୍କ ଉପନ୍ୟାସରେ କାହାଣୀ (Story) ଥାଏ; କିନ୍ତୁ ତାହା ଗୌଣ-ଉପନ୍ୟାସର ପରିଧି କେବଳ । କେନ୍ଦ୍ରମାନ ହେଉଛି ମଣିଷ ଜୀବନର ରହସ୍ୟ ଆବିଷ୍କାର ! ଛୋଟ ବଡ଼ ବିଭିନ୍ନ ଚରିତ୍ର ମାଧ୍ୟମରେ ସେମାନେ ନିଜର ଜୀବନବୋଧକୁ ହିଁ ପ୍ରକାଶ କରିବାର ଦେଖାଯାଏ । 'ପ୍ରୀତିର ବଣିଜ'ରେ ମଧ୍ୟ ଏହାର ବ୍ୟତିକ୍ରମ ନାହିଁ ।

ଚାରୋଟି ଚରିତ୍ରକୁ ନେଇ ଗଢ଼ି ଉଠିଥିବା ଏହି ଉପନ୍ୟାସରେ ଘଟଣାଗୁଡ଼ିକୁ ପରୋକ୍ଷଭାବରେ ବର୍ଣ୍ଣନା କରାଯାଇଛି । ଘଟଣାଗୁଡ଼ିକ ଚରିତ୍ରମାନଙ୍କର ଆଳାପ ମଧ୍ୟରେ ସ୍ପଷ୍ଟ ହୋଇଉଠେ । ଉପନ୍ୟାସଟିର ଆମୂଳାନ୍ତ କେବଳ ଚରିତ୍ରମାନଙ୍କର ଆଳାପରେ ହିଁ ପୂରିଛି । ଉପନ୍ୟାସର ରଚନାରୀତି ତେଣୁ କଥିତ ଭାଷାର ନିକଟବର୍ତ୍ତୀ । ଦୁଇଟି ଚରିତ୍ର - ରମାକାନ୍ତ ଓ ଅଳକା - ସବୁଠୁ ବେଶି ସକ୍ରିୟ । ସେମାନଙ୍କ ଆଳାପରୁ ହିଁ ଉପନ୍ୟାସଟିର ଆରମ୍ଭ । ଭଜକୃଷ୍ଣ ଓ ରମାକାନ୍ତ - ଏମାନଙ୍କର ଆଳାପ ଭିତରେ ଅନ୍ୟ ଏକ ନାରୀଚରିତ୍ରର ଧାରଣା ମିଳିଛି । ସେ ହେଉଛି ମାନିନୀ - ଭଜକୃଷ୍ଣର ମାନସୀ - 'ମାନମୟୀ' ଉପନ୍ୟାସର ମଝିରେ ହିଁ ତା'ର ଆବିର୍ଭାବ - କିଛିଟା ନାଟକୀୟ ଉନ୍ମାଦନା ରହିଛି ତା'ର ଅନୁପ୍ରବେଶ ମଧ୍ୟରେ । ଅଳକାର ବାନ୍ଧବୀ ଭାବରେ ରମାକାନ୍ତ ସହିତ ତା'ର ପରିଚୟ ହୁଏ - ଅତି ଆକସ୍ମିକ ଓ ନାଟକୀୟ - ସେଇ ଅଳକାର ଘରେ, ଯେଉଁଠି ରମାକାନ୍ତ ପହଞ୍ଚିଛି ସନ୍ଧ୍ୟା ପୂର୍ବରୁ ଅଳକାର ଅନୁରୋଧରେ । ଏକ ବିଚିତ୍ର ପରିସ୍ଥିତିରେ ପଡ଼ି ରମାକାନ୍ତ ଟିକିଏ 'ନିଶାପାଣି' ଛୁଇଁଚି ସେଠି - ଅଳକାର ବାଧ୍ୟବାଧକତାରେ । - ଅଳକା ଦେଖିଲା - ଅବସ୍ଥା ଖରାପ । ଟେବୁଲ୍ ଉପରର ସରଞ୍ଜାମ ରମାକାନ୍ତର ଆଖିରେ ପଡ଼ିଲାଣି । ସମସ୍ତେ ସମସ୍ତଙ୍କୁ ଦେଖି ସାରିଲେଣି । ଦୁଃସାହସ ଦରକାର ।

"ହୁକୁମିଆ ସ୍ୱରରେ ଅଳକା କହିଲା ଆସ ରମାକାନ୍ତ । ଏଠି ବସ, ଆଉ ଆଜି ଆମର ଦୋଷ ନାହିଁ । ଆମେ ଏହି ଯେଉଁ ଜିନିଷ ପାଖରେ ରଖିଛୁ ଏହି ଜ୍ଞାନର ସମ୍ବାଦ ନେଇ ତମେ ଏ ଘର ଛାଡ଼ି ଯାଇ ପାରିବ ନାହିଁ । ତୁମକୁ ଆଜି ଯେତେ କମ୍ ହେଲେ ବି ଟିକିଏ ନିଶା ଖାଇବାକୁ ପଡ଼ିବ ।"



- ମୁଁ ମରିଯିବି ।

- ମର ବା ନ ମର, ଆମକୁ ଏଇ ଅବସ୍ଥାରେ ଦେଖି ତମେ ଚରିତ୍ରକୁ ନେଇ ଏହି ହତାର ବାହାରକୁ ଯାଇ ପାରିବ ନାହିଁ । ନିଶା ଖାଇ କେହି ମରନ୍ତି ନାହିଁ । ବେଶି ନିଶା ହେଲେ ମାତାଲ୍ ହୁଅନ୍ତି । ତୁମକୁ କେବଳ ବିଧି ରକ୍ଷା କରିବାକୁ ହେବ ।

ରମାକାନ୍ତର ଦୁଇ ଆଖିରୁ ପାଣି ଗଡ଼ି ଆସିଲା ।

ହସି ଅଳକା କହିଲା - ଆଜି ଯେଉଁ ଜିନିଷକୁ ଦେଖି ଭୟରେ କାନ୍ଦୁଛ, ପୁଣି ଦିନେ ସେଇ ଜିନିଷ ନ ମିଳିଲେ ତମେ କାନ୍ଦିବ... ଏସବୁ କାନ୍ଦଣା ମୂଲ୍ୟହୀନ । ଆମର ଚରିତ୍ର ତମେ ଦେଖିବ - ଆଉ ତମର ଚରିତ୍ର ଆମେ ଦେଖିବୁ ନାହିଁ ? - କ'ଣ କହୁଛ ମାନିନୀ ?

x x x

ଛୋଟ ତିନୋଟି ଗ୍ଲାସ୍‌ର ସାମାନ୍ୟ ଋଣଝଣ ଶୁଭୁଥିଲା ।

ରମାକାନ୍ତର କାନ୍ଧରେ ହାତ ଥୋଇ ନିଜର ଦେହକୁ ରମାକାନ୍ତ ଉପରେ ସାମାନ୍ୟ ଭରା ଦେଇ ମାନିନୀ କହିଥିଲା - ବନ୍ଧୁ, ମନେ ରଖିବ । ସବୁ ଦିନକୁ ହେଜିବ - ଆମେ ତୁମକୁ ଭଲପାଉ । ଆମେ ଏକ ପ୍ରକାରର ଲୋକ । କ'ଣ କହୁଛ ?

- ହଁ...

- କେହି ଜାଣିବେ ନାହିଁ । ଏମିତି ଅସଂଖ୍ୟ ଗୋପନ କଥା ବନ୍ଧୁତାର ସେତୁ । ... ହସି ହସି ଅଳକା କହିଲା ।

ରମାକାନ୍ତର ଉପସ୍ଥିତିରେ କଥାର ଲହର ଉଣା ହେଇ ଯାଉଥିଲା - ଦୁଇଟି ପୁରୁଷ ଗୋଟିଏ ସ୍ତ୍ରୀ ଯେତିକି ରସ ଏକାଠି ହେଲେ ସୃଷ୍ଟି କରିପାରନ୍ତି, ଦୁଇଟି ସ୍ତ୍ରୀ ଓ ଗୋଟିଏ ପୁରୁଷ ଏକାଠି ହେଲେ ସେତିକି ରସ ଭଙ୍ଗ ହୁଏ ।

ରମାକାନ୍ତର ମୁହଁ ଉପରେ ଚିନ୍ତାର ଝଡ଼ ବହିଚାଲିଥିଲା ।'' (ପୃଷ୍ଠା:୭୧-୭୩)

ସମୟ ସମୟରେ ଏମିତି ଘଟେ ।

ଏମିତି ମୁହୂର୍ତ୍ତ ଆସେ, ଯେତେବେଳେ କି ସମଗ୍ର ସମୟର ଗୁରୁତ୍ୱ ମଧ୍ୟ ସେଇ ଆଗନ୍ତୁକ ମୁହୂର୍ତ୍ତ ପାଖେ ଛୋଟ ହୋଇଯାଏ । ଜୀବନର ବହୁ ଗୋପନୀୟ ଅଂଶକୁ । ଏମିତି କେତୋଟି ବିଶେଷ ବିଶେଷ ମୁହୂର୍ତ୍ତ ହିଁ ବାନ୍ଧି ରଖିଥାଆନ୍ତି । ଏହି ଦୃଷ୍ଟିରୁ ଆମେ ମଣିଷ ଜୀବନକୁ ଦୁଇଟି ଦିଗରେ ବିଚାର କରିପାରିବା, ଗୋଟିଏ... ମଣିଷ-ଜୀବନର ବ୍ୟକ୍ତିଗତ

ଦିଗ ଏବଂ ଅନ୍ୟଟି ସାମାଜିକ ଦିଗ । ଜୀବନର ସାମାଜିକ ଦିଗ ସମ୍ପର୍କରେ କିଛି କୁହା ନଯାଉ, କାରଣ ଏହା ଆଦୌ ଗୋପନୀୟ ନୁହେଁ । W.H.Audenଙ୍କର 'The unknown citizen'ର , ଜୀବନ ପରି ଏହା ଜଣା, ନିତି ପରିଚିତ । ଜଣେ ମଣିଷର ସାମାଜିକ ଜୀବନକୁ ତା'ର ଗେଟ୍ ପାଖେ ଟଙ୍ଗା ଯାଇଥିବା କୌଣସି ସାଇନ୍‌ବୋର୍ଡ଼ ବା ତା'ର ନେମ୍‌ପ୍ଲେଟ୍‌ରୁ ମଧ୍ୟ କିଛି କିଛି ଜାଣିହୁଏ । କିନ୍ତୁ ମଣିଷ ଜୀବନର ବ୍ୟକ୍ତିଗତ ଦିଗଟି ହେଲା Marktwainଙ୍କ ଭାଷାରେ ସେଇ dark side, ଯାହା ମଣିଷ କାହାକୁ ଦେଖାଇବାକୁ ଚାହେଁନା । ଅନ୍ତୁଡ଼ିଶାଳରୁ ମଶାଣି ପର୍ଯ୍ୟନ୍ତ - ଦୀର୍ଘ ଜୀବନଯାତ୍ରା ଭିତରେ ବି ବହୁ ବ୍ୟକ୍ତିଗତ କଥା ଅକୁହା ହୋଇ ରହିଯାଏ ।

'ପ୍ରେମ' ହେଲା ମଣିଷ ଜୀବନର ଏହିପରି ଏକ ବ୍ୟକ୍ତିଗତ ଦିଗ । ଚାକିରି ଯେମିତି ସାମାଜିକ ଦିଗରେ ଗୋଟିଏ ନମୁନା ।

'ପ୍ରୀତିର ବଣିଜ' ବ୍ୟକ୍ତି-ଜୀବନର ଏହି ବିଶେଷ ଦିଗ ଉପରେ ଗୋଟିଏ ଉପନ୍ୟାସ । ଏହି ଉପନ୍ୟାସର ଚରିତ୍ରମାନେ ସେମାନଙ୍କ ବ୍ୟକ୍ତିଗତ ଜୀବନକୁ ବିଜ୍ଞାପିତ କରନ୍ତି । ସାମାଜିକ ମଣିଷ ଅପେକ୍ଷା ସେମାନେ ବ୍ୟକ୍ତିଗତ ମଣିଷ ଭାବରେ ବେଶି ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ସଂସାରର ସ୍ୱାଭାବିକ ପ୍ରକ୍ରିୟାରେ ମଣିଷ ନିଜକୁ ଗୋଠଛଡ଼ା କରି ସବୁଦିନେ ଠିକ୍ ବାଟରେ ଚଳେଇ ପାରେନା । ତା'ର ବ୍ୟକ୍ତିଗତ ଦୁନିଆର ଆରପଟେ ଆଉ ଗୋଟାଏ ବାହାର ଦୁନିଆ ଅଛି - ସମାଜ ! ସେଇ ସମାଜରେ ବଂଚି ରହିବାକୁ ହେଲେ ସହଜ ପନ୍ଥା ହେଉଛି ସାମାଜିକତାକୁ ମାନିନେବା, ସମାଜର ପଟୁଆରରେ ନିଜକୁ ସାମିଲ୍ କରେଇନେବା । ଉପନ୍ୟାସଟିର ଗୋଟିଏ ସ୍ଥାନରେ ଭଜକୃଷ୍ଣର ପ୍ରଶ୍ନ ଶୁଣି ରମାକାନ୍ତ କହୁଛି -

'ପାଞ୍ଚଜଣ ଯାହା କରୁଛନ୍ତି, ସେତକ ଭୁଲ୍ ହେଲେ ବି ଆମର ସେମିତି କରିବା ଉଚିତ ।' (ପୃଷ୍ଠା:୯୪)

... ଉଚିତ, କାରଣ ଏହା ହିଁ ସମାଜର ନୀତି, ଏହା ହିଁ ସାମାଜିକତାର ସଠିକ୍ ଦିଗ - ବ୍ୟକ୍ତି ପାଇଁ ସେ ଦିଗ ପଛେ ଭୁଲ୍ ହେଉ । ଏଇ 'ଭୁଲ୍'ଟିକୁ 'ଠିକ୍'ରୂପେ ମାନିନେବାହିଁ ସାମାଜିକ ଦାୟିତ୍ୱ !! କାନୁନ୍ ଏଠି ଖାଟେନା; ଓକିଲର ଜେରା ଏଠି ଚାଲିପାରେନା !

ଠିକ୍ ସେଥିପାଇଁ ରମାକାନ୍ତ ଓ ଭଜକୃଷ୍ଣ, ଯେଉଁମାନେ ନିଜ ନିଜର ବ୍ୟକ୍ତିଗତ ଜୀବନକୁ ନେଇ ବାଟ ଚାଲିଛନ୍ତି; ସେମାନେ ମଧ୍ୟ ହଠାତ୍ ଗୋଟିଏ ଜାଗାରେ କଲେଜ ବିଦ୍ୟାର୍ଥୀମାନଙ୍କର ପଟୁଆରରେ ଭାଗ ନେଇ ନିଜର 'ସାମାଜିକ ଦାୟିତ୍ୱ' ପାଳନ କରିବାର



ସମୟକୁ କଲେଜ ରୁଟିନ୍ ପିରିୟଡ୍ ପରି ବିତାଇଛନ୍ତି । ଯନ୍ତ୍ରଆରରେ ଭାଗ ନେଇ ଏହି ଧରଣର 'ସାମାଜିକ ଦାୟିତ୍ୱ' ପାଳନ କରୁଥିବା ବେଳେ ଅଳକା ଓ ମାନିନୀଙ୍କୁ, ମଧ୍ୟ ସେମାନେ ଦେଖିଛନ୍ତି - ମଟର ଭିତରେ ।

X X X X X

ପ୍ରାଚୁର୍ଯ୍ୟ ଭିତରେ ଫୁଲପରି ଫୁଟେ ସେ ସମାଜ ଅଳକା ଓ ମାନିନୀଙ୍କର ସମାଜ । ସେ ସମାଜ ପାଇଁ ସମୟର ବର୍ତ୍ତମାନିକତା ହିଁ ବଡ଼ କଥା । ଅଳକା ଓ ମାନିନୀ (ବଧୂ) - ଏ ଦୁହେଁ ଯେଉଁ ସମାଜର ମଣିଷ, ସେ ସମାଜ କିନ୍ତୁ ରମାକାନ୍ତର ନୁହେଁ, ଭଜକୃଷ୍ଣ ମଧ୍ୟ ନୁହେଁ । ରମାକାନ୍ତ ଓ ଭଜକୃଷ୍ଣ ଜୀବନର ଯୁଦ୍ଧ କ୍ଷେତ୍ରରେ ଦୁଇଟି ସାଧାରଣ ସୈନିକ । ସେମାନଙ୍କର ଯୁଦ୍ଧ ଦାରିଦ୍ର୍ୟ ସହିତ । ସେମାନଙ୍କର ଯୁଦ୍ଧ ବର୍ତ୍ତମାନ ସହିତ । ସେଥିପାଇଁ ଅତୀତ ଓ ଭବିଷ୍ୟତ ହିଁ ସେମାନଙ୍କ ପାଇଁ ସବୁକିଛି । ଭଜକୃଷ୍ଣ ମାନିନୀକୁ ନେଇ ସ୍ୱପ୍ନ ଦେଖେ । ସେ ମାନିନୀ ଅତୀତର ମାନିନୀ । ରମାକାନ୍ତ ଅଳକାକୁ ନେଇ ଭାବିଚାଲେ; ସେ ଅଳକା ତାର ଆଗାମୀ ଦିନ ପାଇଁ ସଞ୍ଚିତ ହେବାକୁ ଯାଉଥିବା ସ୍ମୃତିର ସମ୍ବଳ ! ଭଜକୃଷ୍ଣ ପାଇଁ ଅତୀତର ସ୍ମୃତିମଧୁର... ମଧୁର ବି ଅତୀତର ମାନିନୀ-

''ମନେ ପଡ଼ିଲା ଅତୀତର କେତେକ ମଧୁର ସ୍ମୃତି । - ଜାଣିଛ ଭଜକୃଷ୍ଣ, ମଣିଷ ତା'ର ସ୍ୱାମୀ ପାଖରେ ସ୍ୱାଧୀନ ନୁହେଁ । ସେ ଅଧିକ ସ୍ୱାଧୀନ ଅପର ଲୋକଙ୍କ ପାଖରେ । ବିବାହର ବନ୍ଧନ ହେଉଛି ସଙ୍କୋଚ ଓ ପରାଧୀନତାର ବନ୍ଧନ । - କେତେ ଯୁକ୍ତିତର୍କ, କେତେ ଆନନ୍ଦ ! ଶେଷରେ ମଧୁର ଉପସଂହାର ।

- ବୁଝିଲ ତ ଭଜକୃଷ୍ଣ ? କିଏ ବଡ଼ ? ତମେ ନା ଆମ୍ଭ ବାବୁ ?

ସବୁ ତ ସତ ପରି ଲାଗୁଥିଲା । ଏବେ ମିଛ ହୋଇ ଯାଇଛି; କିନ୍ତୁ ମାନିନୀ ସେହି ଏକା ଅଧିକାର ଓ ଅହଂକାର ନେଇ ତାହାର ସ୍ୱାମୀ ସାଙ୍ଗରେ ରହିଛି ।' (ପୃଷ୍ଠା:୧୦୦)

ରମାକାନ୍ତ ଓ ଭଜକୃଷ୍ଣ - ଏମାନେ ବି ବିଭୋର ହୁଅନ୍ତି ହଳଦୀବସନ୍ତର ଡାକ ଶୁଣି । ସେ ବିଭୋରତା ଅନାଗତ ସମୟର ଶୁଭ ସୂଚନାରେ ।

ସେଇ ସକାଳର ହଳଦୀବସନ୍ତମାନେ ଆସି କୃଷ୍ଣଚୂଡ଼ା ଗଛରେ ଡାକୁଥିଲେ ଶୁଭ-ସଙ୍କେତ ଦେଇ । ସେମାନେ ଯେପରି ଛୋଟ ଛୋଟ ଡେଣାରେ ସାଙ୍ଗ ହୋଇ ଶୁଭଦିନଟିକୁ ବୋହି ଆଣିଛନ୍ତି! ଏଇ ଆଶାରେ ବାଟ ଚାଲେ ଦରିଦ୍ର ମଣିଷ ।

... ବାଟ ଚାଲିଛନ୍ତି ରମାକାନ୍ତ ଆଉ ଭଜକୃଷ୍ଣ । ସେ ବାଟ ବର୍ତ୍ତମାନର ବାଟ, ଅତୀତ ଓ ଭବିଷ୍ୟତ ସେ ବାଟର ଦୁଇଟି ସଂଯୋଗ ଛକ ମାତ୍ର । ଅଳକାର ଘରେ ଆସି ପହଞ୍ଚିଛନ୍ତି ସେଇ ଦୁଇଟି ଅପନ୍ତରା ମଝି ବାଟର ମଣିଷ । କିଛି ଆଳାପ... କିଛି ପାନୋତ୍ସବର ଉନ୍ମାଦନା ପରେ ଅଳକା କହିଲା-

'ଯାଉଛ କେବେ ?'

'-କାଲି । -କାଳେ ଅଳକା ଶୁଣି ପାରିନଥିବ, ଆଉଥରେ ଭଜକୃଷ୍ଣ କହିଲା, -ଆସନ୍ତାକାଲି ଶୁକ୍ରବାର ଦିନ ଯାଉଛି ।'

' - ନା, ତମେ ଯାଇପାରିବ ନାହିଁ । ମାନିନୀ କହିଛି ତମର ପରୀକ୍ଷା ଫଳ ଖରାପ ହୋଇଯିବାର ଆଶଙ୍କା । ତମେ ଏଇଠି ରହି ଆଇ.ଏ.ଏସ. ପାଇଁ ପଢ଼ାପଢ଼ି କରିବ । ... ଯାଇପାରିବ ନାହିଁ ।'

'-ରମାକାନ୍ତ ଆଶ୍ଚର୍ଯ୍ୟ ହୋଇଗଲା ।'

'- ଏମିତି ହୋଇଥାଏ । ଯେ କ୍ଷତିରେ ପକାଇଥାଏ, ସେହି ପୁଣି ଲାଭ କରାଇଦିଏ । ଏହି ସୂତ୍ର ଉପରେ ଦୁନିଆ ଚାଲିଛି ।'

'ଭଜକୃଷ୍ଣ ଉତ୍ସାହରେ ପଚାରିଲା - ମୋର ତାହାହେଲେ କ'ଣ ଭବିଷ୍ୟତ ଅଛି ?'

ଏଇଠି, ଭଜକୃଷ୍ଣ ଓ ଅଳକାର ଏଇ ଆଳାପ ଭିତରେ ରମାକାନ୍ତର ପ୍ରତିକ୍ରିୟା ନିଶ୍ଚୟ ଲକ୍ଷ୍ୟ କରିବାର କଥା ।-

''ରମାକାନ୍ତ ଚଙ୍ଗଚଙ୍ଗ ହେଉଥାଏ । ସେ ଆସିଥିଲା ମାମଲତକାରି କରିବାକୁ । ଏଇ ଏବେ ଅଳକା କ'ଣ ଲାଗିଗଲାଣି ଭଜକୃଷ୍ଣ ପଛରେ ।

ଅଳକା ବୁଝି ପାରିଲା । ପୁରୁଷ ମନର ଏଇ କେତୋଟି ପ୍ରଶ୍ନ ଅତି ସହଜରେ ନାରୀ ଜାଣିପାରେ । ଅଳକା ରମାକାନ୍ତର ମୁଣ୍ଡଟି ଆଉଁସି କହିଲା - ଏଇ ମୋର କୁନିବନ୍ଧୁ । ମୁଁ ତାଙ୍କର - ସେ ମୋର । ଭଜକୃଷ୍ଣଙ୍କର କେହି ଥାଉ ବା ନଥାଉ ।''
(ପୃଷ୍ଠା:୧୧୬)

ଏବଂ -

''ତନ୍ମୟ ହୋଇ ଦୁଇଜଣ ଚାହିଁଥିଲେ ଅଳକାକୁ । ...ଆଖିରେ ଆଖି ରଖି ଅଳକା କହିଲା - ଖାଲି ପୁରୁଷ ଓ ସ୍ତ୍ରୀ'ର ବନ୍ଧୁତାରେ ଏହି ନିୟମ ଖଟେ ନାହିଁ । ସେଠି-



- ଜଣେ ଆଉ ଜଣକର । ଦେହରେ ଓ ମନରେ ।

ଦିହେଁ ଯାକ ଖୁସି ହୋଇ କହିଲେ । ଦିହେଁ ଯାକ ଭାବୁଥିଲେ - ଅଳକା ତାଙ୍କର ।''
(ପୃଷ୍ଠା:୧୧୭)

ଦୁଇଜଣ 'ନାରୀ' ମେଳରେ ଜଣେ 'ପୁରୁଷ' ଯେଉଁ ପରିବେଶକୁ ସୁଧାରି ନେଇ ପାରେନା, ସେଇ ପରିବେଶକୁ ଖୁବ୍ ସହଜରେ ଆନନ୍ଦ-ମୁଖର କରିପାରେ ଜଣିଏ ମାତ୍ର ନାରୀ - ଦୁଇଜଣ ପୁରୁଷ-ବନ୍ଧୁଙ୍କ ମେଳରେ ଥାଇ ସୁଦ୍ଧା ।

'ପ୍ରୀତିର ବଣିଜ'ରେ ନାରୀ-ପୁରୁଷର ପରସ୍ପର ପ୍ରତି ମନୋଭାବର ପରିପ୍ରକାଶ କିଛି କିଛି ସୂଚନା ମାଧ୍ୟମରେ ଫୁଟିଛି । ଜଣେ ନାରୀ ପ୍ରତି ଆଉ ଜଣେ ନାରୀର ମନୋବୃତ୍ତି ଅତି ଚମତ୍କାର ଭାବରେ ଅଳକାର ଏଇ ସଂଳାପଟିରେ ଲକ୍ଷ୍ୟ କରାଯାଇପାରେ-

''ଗୋଟାଏ କଥା ମନେ ରଖିବ ଯେ, କେବେହେଲେ ଗୋଟିଏ ସ୍ତ୍ରୀ ଆଉ ଜଣେ ସ୍ତ୍ରୀକୁ ପ୍ରୀତିର ଗୋପନ କଥା କହିବ ନାହିଁ । ତୁମେମାନେ ମତେ ସୂଚନା ଦେଇ କହି ନଥିଲେ, ମୁଁ କ'ଣ କେବେ କିଛି ହେଲେ ଜାଣିଥାନ୍ତି ?x x x (ପୃଷ୍ଠା:୧୧୬)

'ମାନିନୀ ଥରେ ପାଦ ଖସାଇ ଦେଇଥିଲା - କଲେଜ ପିଲାଙ୍କୁ ଘରପଢ଼ା ମାଷ୍ଟ୍ର କରିବ ନାହିଁ - ସେତିକି ।'

ଏହା ହିଁ ନାରୀ-ଚରିତ୍ର, ଯାହା ସମ୍ପର୍କରେ ପ୍ରାଚୀନକାଳର କବି ମଧ୍ୟ କହିଛନ୍ତି - 'ଦେବା ନ ଜାନଂତି... ।'

x x x x x

ଅନ୍ୟ ଏକ ଆସର୍- ଭିନ୍ନ ଆଳାପର ଆସର । ଅଳକାର ଘରେ । ଅଳକା ତ ଅଛି, ଅଛି ମଧ୍ୟ ମାନିନୀ । ଅଛନ୍ତି ରମାକାନ୍ତ ଓ ଭଜକୃଷ୍ଣ । ଏଇଠୁ ଘଟଣାର ଗତି ବଦଳେ । କିଛି କିଛି ଆଳାପ ଓ ଅଭିମାନ - ବ୍ୟଙ୍ଗ ଓ ବକ୍ରୋକ୍ତି ଭିତରେ ଅଳକା କହିଲା-

''ଆଚ୍ଛା, କଥାଟା ତାହେଲେ ସରିଯାଉ । ଭଜକୃଷ୍ଣ ବାବୁଙ୍କୁ ପ୍ରସ୍ତାବ ଦେଇଛି ଯେ, ସେ ଗାଁକୁ ନଯାଇ ଆଇ.ଏ.ଏସ. ବା ଅନ୍ୟ ଯାହା ପରୀକ୍ଷା ପାଇଁ ପଢ଼ିବେ । ତମେ ଟଙ୍କା ଦେବ ।'' ମାନିନୀର ଅଭିମାନ କିଛିଟା ଶ୍ଳେଷ ଭିତରେ ଫୁଟୁଛି –

''ହଁ । ତାଙ୍କର କିଛି କ୍ଷତି ହୋଇଯାଇଛି ମୋ'ରି ପାଇଁ ସେତକ ଭରଣା ହବା ଦରକାର । ତମେ ଭଜକୃଷ୍ଣ ଏମିତି ବିଫଳତାର ଚିତ୍ର ଦେଖାଇ ଏଣେତେଣେ ବୁଲି କଲେଜ





ଶୋଭାଯାତ୍ରାରେ ସ୍ଲୋଗାନ ଦେବା ଦରକାର ନାହିଁ ।... ବୁଝିଲ ?''

'-ହଁ ।'

''-ପଢ଼ି ମଣିଷ ହୁଅ । ତା'ପରେ ଅମଣିଷ ହୋଇପାରିବ । ଅମଣିଷ ମଣିଷ ହୁଏ ନାହିଁ ।''

...ତା'ପରେ ମାନିନୀ ଓ ଭଜକୃଷ୍ଣ ଦିହିଁଙ୍କ ଆଖିର ଥଣ୍ଡା ଲୁହରେ ଅଭିମାନ ମିଳେଇ ଯାଇଛି । ମାନିନୀ କହୁଥିଲା-

'ଆମର ସାହାବ ମତେ ଥରେ ତାଙ୍କର ବନ୍ଧୁକ ଦେଖାଇଥିଲେ ।... ଜାଣିଛ ?'

'-ନା ।'

'-ଜାଣିଲେ କ'ଣ କରିଥାନ୍ତ ?'

ଭଜକୃଷ୍ଣ ଚାହିଁ ରହିଲା । ମାନିନୀର ଆଖି ଓଦା ଦିଶୁଥିଲା ।

''-ତମ ପାଇଁ ନୁହେଁ । ସ୍ୱାଧୀନତା ଦେଇ ପୁଣି ସେଇ ସ୍ୱାଧୀନତା କାଢ଼ି ନେବାକୁ ହୁକୁମ୍ ଦେଲେ । ସ୍ତ୍ରୀକୁ ପୁରୁଷମାନେ ସ୍ୱାଧୀନତା ଦେବା କଥା କହନ୍ତି- ଦେଇ ପାରନ୍ତି ନାହିଁ । ...ଏସବୁ ଅସୁବିଧାରୁ ମୁକୁଳିବାକୁ ହଠାତ୍ ତୁମକୁ ବିଦାୟ ଦେବାକୁ ପଡ଼ିଲାଣି ।''

''ଭଜକୃଷ୍ଣର ଆଖିରୁ ଅମାନିଆ ଲୁହ ଦୁଇଧାର ଗଡ଼ି ଆସିଲା । ନିଜକୁ ସଂଯତ କରି ମାନିନୀ କହିଲା - ମୁଁ ତ ସମ୍ଭାଳି ଗଲି ! ଆମ ଭିତରେ ଯେଉଁ ଟିକକ ମମତାର ବନ୍ଧନ ଥିଲା, ସେତକ ଏମିତି ଭୁଲ୍ ଭଟକାର ତୋଡ଼ ଯୋଡ଼ରେ ବଦଳି ଯାଇ ଅନ୍ୟ ରୂପ ନେଲା - ନେଉ । ଯାହା ଯାଇଛି ତା'କୁ ଭୁଲିଯିବା । ଆଗରେ କ'ଣ ଅଛି ଦେଖିବା ।

ନୀରବ ସମ୍ମତି ଜଣାଇ ଭଜକୃଷ୍ଣ ଚାହିଁ ରହିଲା ।''

ଏଇ ଗୋଟିଏ ସନ୍ଧ୍ୟାର ଆସରରେ ଭଜକୃଷ୍ଣ ଜୀବନର ଗତି ବଦଳିବାର ସଙ୍କେତ ମିଳେ । ଏଇ ଗୋଟିଏ ସନ୍ଧ୍ୟାର ଆସରରେ ବି ରମାକାନ୍ତ ଜୀବନର ମୋଡ଼ ବଦଳେ । ମାନିନୀ ଓ ଭଜକୃଷ୍ଣଙ୍କ ସାକ୍ଷ୍ୟରେ ଦୁହେଁ ଦୁହିଁଙ୍କର ବାଗ୍‌ଦତ୍ତ ବାଗ୍‌ଦତ୍ତା ହୁଅନ୍ତି - ରମାକାନ୍ତ ଓ ଅଳକା । ...କି ଆକସ୍ମିକତା !! ଏଇଠାରେ ହିଁ ଜୀବନର ବୈଚିତ୍ର୍ୟକୁ ଅନୁଭବ କରିହୁଏ ।

ଔପନ୍ୟାସିକ ଅତି ଚମତ୍କାର ଭାବରେ ଉପନ୍ୟାସର ଉପସଂହାର କରିଛନ୍ତି । ଏହା ଏହିପରି -



'ଏମାନେ ଚାଲିଗଲା ପରେ ଅଳକା ପଚାରିଲା ମାନିନୀକୁ - କଥାଟା କ'ଣ ନାଟକ ?

-ନାଟକ ? ... ନା, ନା...ଜୀବନ । ଜୀବନ ଠିକ୍ ଏମିତି ।

- ନିଜ ଉପରେ ନାଟକ ଗଢ଼ିଥିଲେ ଭଲ ହୋଇଥାନ୍ତା ।

- କାହିଁକି ?

- କହ ।

- ଅଳକା, ତୁମକୁ ମୁଁ ଭଲପାଏ । ...ଆମେ ସେ କଥା ଦିହେଁ ଭଲ କରି ଜାଣୁ । ମୋରି ବୁଦ୍ଧି ବିଚାରରେ ଭାବି ଠିକ୍ କଲି ଯେ ରମାକାନ୍ତକୁ ବିଭା ହେଲେ ଭଲ ହେବ । ...ମନକୁ ନପାଇଲେ ଭାଙ୍ଗିଦେବା... ଏବେ ଏମିତି ଏତିକିରେ ଥାଉ ।

- ଏତିକିରେ କ'ଣ ରହିବ ? ଏ ଯେଉଁ ପ୍ରଘଟ ହେବ...

- କେହି ବିଶ୍ୱାସ କରିବେ ନାହିଁ ।

- ରମାକାନ୍ତ ଆଇ.ଏ.ଏସ. ପାଇଁ ପଢ଼ିବ ।

- ପଢୁ । ତମେ ଯେତେ ବଦଖର୍ଚ୍ଚ କରୁଛ, ସେଥିରେ ଏତକ ଟଙ୍କା କ'ଣ ତମକୁ କାଙ୍ଗାଳ କରିଦେବ ?

'ଦିହେଁ ଚାହିଁଥିଲେ ଦିହିଁଙ୍କୁ । ଆଜି କଥା ଏତିକିରେ ସରୁ । କାଲି ଦେଖିବା କ'ଣ ହେଉଛି ।'

॥ ଦୁଇ ॥

ଏହାହିଁ ଜୀବନ । ଏହା ହିଁ ଜୀବନର ଧାରା - ଆଜି ପାଇଁ ଆଜି ! କାଲି ପାଇଁ କାଲି ! ଅନ୍ତୁଡ଼ିଶାଳର ନିଆଁରୁ ମଶାଣିପଦାର ନିଆଁ ଭିତରକୁ ଝାମ୍ପ ଦେବା ଭିତରେ ମଣିଷ ଜୀବନରେ - ଏହା ହିଁ ମଣିଷର ଜୀବନବୋଧ... ! କେତେବେଳେ ସମୟ ଅସରନ୍ତି ମନେହୁଏ ତ କେତେବେଳେ ଛୋଟ ଗୋଟିଏ ମୁହୂର୍ତ୍ତ ଭିତରେ ସମୟ ହଜିଯାଏ ।

ଘଟଣାର ସୂତାରେ ବନ୍ଧା ହୋଇ ଜୀବନ ଝୁଲୁଥାଏ - କେତେବେଳେ ଆଗକୁ ତ କେତେବେଳେ ପଛକୁ, କେତେବେଳେ ଭବିଷ୍ୟତ ଆଡ଼କୁ ତ କେତେବେଳେ ଅତୀତ ଆଡ଼କୁ ।




ମଣିଷ କେବଳ ବର୍ତ୍ତମାନର ବନ୍ଧନୀ ଭିତରେ ଜୀବନକୁ ମାପେ । ଘଟଣାର ସୂତାରେ ଛୋଟ ଛୋଟ ଗଣ୍ଠି ଦେଖି ବିସ୍ମିତ ହୁଏ । ସମୟର ସୁଅରେ ମୁହୂର୍ତ୍ତର ଭଉଁରି ଦେଖି ଆଶ୍ଚର୍ଯ୍ୟ ହୁଏ- ସେଇ ଭଉଁରୀ ଭିତରେ ସମୟର ପ୍ରତିକ୍ରିୟା ଲକ୍ଷ୍ୟକରି ଜୀବନକୁ ବୁଝେ ।

ଭଜକୃଷ୍ଣ ପରି ଅତି ଅବାକ୍ ହୋଇ କହେ-

'କାଲି ସନ୍ଧ୍ୟାରୁ ଆଜିର ସନ୍ଧ୍ୟା ମୋଟେ ଗୋଟିଏ ଦିନ ! x x x ଏଇ ସୃଷ୍ଟି ବଡ଼ ବିଚିତ୍ର ।' (ପୃଷ୍ଠା: ୧୩୩)

'Character Novel' ଏବଂ 'The structure of the Novel' ରେ Edwin Muir ଚରିତ୍ର ଉପଲକ୍ଷ ବା ନାଟକୀୟ ଉପନ୍ୟାସ ସମ୍ପର୍କରେ ଗୋଟିଏ ଧାରଣା ଦେଇଛନ୍ତି-

'The dramatic novel is limited in space and free in the time, the character novel limited in time, and free in space...'

'ପ୍ରୀତିର ବଣିଜ' ଉପନ୍ୟାସଟିରେ ଉଭୟ ଉପନ୍ୟାସଗତ ଓ ଲକ୍ଷଣ ରହିଥିଲେ ମଧ୍ୟ, ଏହାକୁ ଶେଷ ପର୍ଯ୍ୟନ୍ତ ଡ୍ରାମାଟିକ୍ ନୋଭେଲ୍ କହିହେବ । ଚରିତ୍ର ଓ ଘଟଣା - ଉଭୟ ଏକାଠି ଛନ୍ଦାଛନ୍ଦି - ଚରିତ୍ରର ପ୍ରଭାବ ଘଟଣା ଉପରେ ପଡୁଛି ଓ ଘଟଣାର ପ୍ରଭାବ ମଧ୍ୟ ଚରିତ୍ର ଉପରେ ପଡୁଛି - କିଛିଟା Poetic tragedy ଭିତରେ ଜୀବନର ସ୍ୱର ଶୁଣାଯାଉଛି - ଏବଂ ଶେଷକୁ ରହୁଛି ଏକ ନାଟକୀୟ ଉପସଂହାର । ଅଥଚ ଏସବୁ ହେଉଛି ଖୁବ୍ ସୀମିତ ସମୟ ମଧ୍ୟରେ ।

ଏସବୁ ଦୃଷ୍ଟିରୁ 'ପ୍ରୀତିର ବଣିଜ' ଏକ Dramatic Novel ର ମର୍ଯ୍ୟାଦା ପାଇବ ।





# ଉକ୍ତି : ନିହାରବାଳାର

**ଡକ୍ଟର ରମେଶଚନ୍ଦ୍ର ବିଶ୍ୱାଳ**

ହେ ମହାନ ଯଶସ୍ୱୀ ସ୍ରଷ୍ଟା ଆଜି ତମକୁ ମୁଁ ଅନ୍ୱେଷୁଛି ବାରମ୍ବାର ନିରେଖୁଛି ପ୍ରତି ମୁହୂର୍ତ୍ତରେ, ତମ ପଦପାତର ଶବ୍ଦ ଶୁଣିବାକୁ ମୁଁ କାନଡ଼େରି ବସିଚି । ଅଥଚ ତମେ ଆସୁନ ଯେ, କେତେକାଳ ଅପେକ୍ଷାରେ ଦିନ ରାତି ବିତେଇ ଦେବି ତମ ପାଇଁ । ସହରରେ ଶୋକସଭାର ଆୟୋଜନ ହୋଇ ସାରିଲାଣି । ତମ ଗ୍ରୁପ୍ ମୁଗ୍ଧ ପାଠକ, ସାହିତ୍ୟ ରସିକ ଓ ସମାଲୋଚକଙ୍କ ତମ ବିନା ଏକ ଶୂନ୍ୟସ୍ଥାନ ସୃଷ୍ଟି ହୋଇଗଲା ଓଡ଼ିଆ କଥା ସାହିତ୍ୟରେ ଏକଥା କହି ସାରିଲେଣି । ସମ୍ବାଦପତ୍ର ତମ ବିୟୋଗାନ୍ତକ ସମ୍ବାଦ ଛାପିସାରିଲେଣି । ଗପ ମାଧ୍ୟମରେ ପ୍ରଚାର ବି କରି ସାରିଲେଣି ତମ ଘର ପରିବର୍ତ୍ତନ ବାର୍ତ୍ତା ।

ଅଥଚ ମୁଁ - ? ଅପେକ୍ଷା କରୁଛି ତମକୁ । ଅପେକ୍ଷାରେ ବଞ୍ଚିଥିବି ଚିରକାଳ । ଯେତେବେଳେ ସେବିକାର ବୃତ୍ତି ଥିଲା ଲୋକ ଚକ୍ଷୁରେ ଏକ ଘୃଣିତ ବୃତ୍ତି । ଆମକୁ ସେତେବେଳେ ଘୃଣ୍ୟ ଦୃଷ୍ଟିରେ ଜନସାଧାରଣ ଦେଖୁଥିଲେ ଆପଣ ଠିକ୍ ସେଇ ସମୟରେ ଚିତ୍ରିତ ଏଇପରି ଦେଇଛନ୍ତି । ଡାକ୍ତରଖାନାକୁ ଗାରଦଖାନା ପରି ଅଭିସାର କାରଖାନା କୁହାଗଲେ କେତେ ଭଲ ନହୁଅନ୍ତା । ଆଉ ସେମାନଙ୍କୁ ସେବିକା ବୋଲି ନଡ଼ାକି ଗୌରବ ଦେଇ ଅଭିସାରିକା ବୋଲି କହିଲେ କ'ଣ ବା କ୍ଷତି ସେବିକାମାନଙ୍କର ହୁଅନ୍ତା । ସତରେ ସେତେବେଳେ ଆମକୁ ଏକ ଘୃଣ୍ୟ ଦୃଷ୍ଟିରେ ଦେଖୁଥିଲେ ଶିକ୍ଷିତ ଓ ସାଧାରଣ ମଣିଷମାନେ । ମଣିଷ ପାଇଁ ଆମେ ସେବା କରୁ ଅଥଚ ଆମ ପଛରେ ଗୋଟେ କଳଙ୍କିତ ଇତିହାସ ଥିବା ଖୋଜା ଚାଲେ । ଆପଣଙ୍କ ଭାଷାରେ "ଠେଲାଗାଡ଼ି ଯେମିତି ଔଷଧ ବୁହାଏ, ଏମାନେ ସେମିତି କଳଙ୍କିତ ଜୀବନ ସାଙ୍ଗରେ ଧରି ଡାକ୍ତରଖାନାକୁ ଆସନ୍ତି ପେଟ ପୋଷିବାକୁ ।" ଆମର ସେବା ଓ ଆମର ନିଷ୍ପାପରି ବୃତ୍ତିକୁ ଲୋକେ ଗ୍ରହଣ କରି ପାରନ୍ତି ନାହିଁ । କେତେକ ମଧ୍ୟ ଆମ ପଛରେ ଗୋଟେ କଳଙ୍କିତ ରାହୁ ଗ୍ରାସର ଚିତ୍ର ଦେଖନ୍ତି । ଏହାକୁ ହୃଦୟଙ୍ଗମ କରିଥିଲେ ଆପଣ । ସେଥିପାଇଁ ବ୍ୟଥିତ ହୋଇଥିଲେ ମଧ୍ୟ । କିନ୍ତୁ ମୋ କଥା ଥିଲା ନିଆରା । ମତେ ଯେତେବେଳେ ଘରୁ ପାଦ କାଢ଼ିବାକୁ ପଡ଼ିଲା, ସେତେବେଳେ ଅବଲମ୍ବନ ଭାବରେ ଯାହାକୁ ମୁଁ ଆଶ୍ରୟ କରିବାକୁ ଚାହିଁଲି ସେଠି ହେଲି ପ୍ରତାରିତା । କି ନିଷ୍ଠୁର ଓ ବିଡ଼ମ୍ବିତ ଭାଗ୍ୟ ମୋର । ନିରାଶ୍ରୟା ଲତାଟି ପରି ଯାହାଙ୍କ ଉପରେ ମତେ ଆଶ୍ରୟ କରିବାକୁ ପଡ଼ିଛି ତାଙ୍କୁ କିଛି ପ୍ରତିଦାନ ଦେବାକୁ ପଡ଼ିଛି ବି ମତେ । କି ଅସହ୍ୟ ଆତ୍ମ ଦହନ ! କି ମର୍ମାନ୍ତିକ ଦୁଃଖ ! ଆପଣ ଏକା ବୁଝିଛନ୍ତି ମୋ ଅବସ୍ଥା ତେଣୁ ତ ଲେଖିଛନ୍ତି, 'ଜମି

ରଖିଲେ ଖଜଣା ଦେବାକୁ ପଡ଼େ । ଘର ଥିଲେ ଭଡ଼ା ବା ଟିକସ ଦେବାକୁ ପଡ଼େ । ଏମିତି ବଞ୍ଚିବାକୁ ହେଲେ କିଛି ନା କିଛି ଟିକସ ଦେବାକୁ ହେବ ।'' କେତେ ପ୍ରତୀକିତ ଭାବରେ ଆପଣ ମୋ କଥା କହି ଦେଇଛନ୍ତି ଆପଣଙ୍କ ପାଠକମାନଙ୍କୁ । ମୋର ଅଭିଶପ୍ତ ଯାତ୍ରା ପଥରେ ମାତୃତ୍ୱର ସ୍ୱପ୍ନ ଯେ ମୁଁ ଦେଖିଛି ଏକଥା ନୁହେଁ । ନାରୀଟିଏ ଜନନୀ ହେବାକୁ ନ ଚାହିଁବ ବା କେମିତି ? କିନ୍ତୁ ସେ ଯଦି ମୋରି ପରି ଅଭିଶପ୍ତା ନାରୀଟିଏ ହୋଇଥାଏ ଏହି ଅଭିଶପ୍ତା ନାରୀଟିର ଅର୍ନ୍ତଦହନକୁ ଆପଣ ମଧ୍ୟ ଅନୁଭବ କରିଛନ୍ତି ।

ଆପଣ ନିଜେ କହିଛନ୍ତି ଭଲ ପାଇବା ସ୍ୱର୍ଗୀୟ । ଭଲ ପାଇବା ମହାନ । ଏହି ଭଲ ପାଇବା ଆପଣଙ୍କ ଭାଷାରେ ଜୀବନ । 'ଭଲ ପାଇବା ହେଉଛି ଜୀବନ, ସୃଷ୍ଟିର ଆଲୋକ, ସୃଷ୍ଟିର ଉତ୍ତାପ, ସଂସାରର ସୌରଭ ।' ସେଇ ଆଲୋକରେ ଆଲୋକିତ ହୋଇଛି ମୁଁ, ସେଇ ଉତ୍ତାପ ମତେ ପ୍ରତିମୁହୂର୍ତ୍ତରେ ଉତ୍ତପ୍ତ କରିଛି । ତା'ରି ସୌରଭରେ ମୁଁ ସୁରଭିତ ହୋଇଛି । ବିଭୋର ହୋଇଛି । କିନ୍ତୁ ମୋପରି ଅଭିଶପ୍ତାର ପକ୍ଷରେ 'ଜୀବନ ସବୁଠାରୁ ଭାରିବୋଝ, ସବୁଠାରୁ ବଡ଼ ଦୁଃଖ ହେଉଛି ଭଲ ପାଇବା ।' ସେଇ ବୋଝର ଭାରରେ ମୁଣ୍ଡ ମୋର ନଇଁ ପଡ଼ିଛି । ସେଇ ଭଲ ପାଇବାର ଦାରୁଣ ଦୁଃଖରେ ମୁଁ ଅତିଷ୍ଠ ହୋଇଛି । ସେଇ ଭଲ ପାଇବାର ଜୁଇରେ ଜଳିଛି ମୁଁ । ବହୁ ଅଭିଜ୍ଞ ମନ ଓ ଦେହକୁ ପାଖରେ ପାଇବି ମନର ମଣିଷ ପାଇଁ ବ୍ୟାକୁଳ ହୋଇଛି । ମନର ମଣିଷଟିକୁ ପାଇବାର ସମସ୍ତ ସ୍ୱପ୍ନ ମୋ ଠାରେ ବସା ବାନ୍ଧିଛି । କିନ୍ତୁ ମୁଁ ଯେ ଭାଗ୍ୟହୀନା । ମୋ ପାଇଁ ସ୍ୱପ୍ନ ସ୍ୱପ୍ନ ହୋଇ ରହିଯାଇଛି । ମନର ମଣିଷକୁ ମୁଁ ପାଇବି ପାଇନି । ଏ କେଉଁ ବିଡ଼ମ୍ବନା ସତେ ! ସଞ୍ଜୟ ମଧ୍ୟ ମତେ କମ୍ ଭଲ ପାଉନଥିଲେ । ତାଙ୍କ ଦୃଷ୍ଟିରେ ମୁଁ କଳ୍ପଜେମା । ସ୍ୱପ୍ନବାଳା । ତାଙ୍କରି ପାଇଁ ତ ମୋର ପ୍ରତୀକ୍ଷା । କିନ୍ତୁ ହେ ସ୍ରଷ୍ଟା !! ତାଙ୍କଠାରେ ସେ ଦୃଢ଼ତା ନଥିଲା ମତେ ସାମାଜିକ ସ୍ୱୀକୃତି ଦେବା ପାଇଁ । ତଥାକଥିତ ଚରିତ୍ରହୀନାର ସ୍ୱାମୀ ଭାବରେ ନିଜକୁ ପରିଚିତ କରାଇବାର ସାହସର ଘୋର ଅଭାବ ଥିଲା ତାଙ୍କ ନିକଟରେ ।

ମୋ ଚକ୍ଷୁରେ ସବୁ ସ୍ୱପ୍ନ ଉଭେଇ ଯାଇଛି । ଉଚ୍ଚରେ ମୁଁ ସ୍ୱଗତୋକ୍ତି କରିଛି ମୁଁ ପାଇ ହରାଇଛି । ହରାଇ ସାରିବା ପରେ ପାଇବାର ଆଶା ମଧ୍ୟ ରଖି ନାହିଁ । ମତେ ଏକ ଅସମାପ୍ତ କରୁଣ କାବ୍ୟର ପଂକ୍ତିଟିଏ କରି ଛାଡ଼ି ଦେଇଛନ୍ତି ଆପଣ । ଆପଣଙ୍କର ଦୋଷ ବା କ'ଣ ? ସେତେବେଳେ ଆମ ଅବସ୍ଥା ଯାହା ତାକୁ ତ ବାସ୍ତବ ରୂପାୟନ କରିଛନ୍ତି ଆପଣ । ଭଲ ପାଇବାର ଜୟଗାନ କରିଛନ୍ତି ହେ ମହାନ ସ୍ରଷ୍ଟା । ଆପଣ ଉଦାର ସ୍ୱରରେ ଘୋଷଣା କରିଛନ୍ତି, 'ଭଲପାଇବା ଗୋଟାଏ ଦୋଷ ନୁହେଁ, ସେହି ସ୍ନେହ ଶ୍ରଦ୍ଧା ଉପରେ ସଂସାର ଗଢ଼ା ହୋଇଛି ।'



ତଥାକଥିତ ଆମର ଘୃଣ୍ୟ (?) ବୃତ୍ତି ପ୍ରତି ଆପଣଙ୍କର ଶ୍ରଦ୍ଧା ବି ରହିଛି । ଆପଣ ଲେଖିଛନ୍ତି, 'ଭଲ ପାଇବାକୁ ଚେଷ୍ଟାକଲେ ସମସ୍ତେ ରୋଗୀର ସେବା କରିପାରିବେ ।..... ସମସ୍ତଙ୍କ ଦେହରେ ଈଶ୍ୱର ଅଛନ୍ତି । ଆଉ ରୋଗଟା ଅଭିଶାପ ନୁହେଁ । ମନ ଭିତରେ ସେହି ବ୍ୟବହାରରେ ମମତା ଦେଖାଇ ଅଚିହ୍ନା ଅପରିଚିତ ଲୋକଙ୍କୁ ନିଜର ବୋଲି ଭାବି ପାରିଲେ ତମେ ବି ଜଣେ ଭଲ ସେବିକା ହୋଇପାରିବ ।' ସବୁରି ଘଟେ ନାରାୟଣର ସ୍ଥିତିକୁ ଆପଣ ଅନୁଭବ କରିଥିଲେ । ଉପଲବ୍ଧି ବି କରିଥିଲେ । ସେବା ହିଁ ମହାନ ବୋଲି ତ ଆପଣ ସେଇଥିପାଇଁ କହିଯାଇଛନ୍ତି । ଆଜି ପରିବର୍ତ୍ତିତ ସମୟର ପରିପ୍ରେକ୍ଷୀରେ ସେବା ଯେତେବେଳେ ବିକ୍ରି ଚାଲିଛି ମନେ ପଡୁଛି ଆପଣଙ୍କର ଏ ଉକ୍ତି କେତେ ବେଶି ପ୍ରାସଙ୍ଗିକ ଅନ୍ତତଃ ଆଜିର ସମାଜ ପାଇଁ । ଆମପ୍ରତି ମଧ୍ୟ ଏହା ମଧ୍ୟରେ ସମାଜର ଦୃଷ୍ଟି କୋଣ ବଦଳିଛି । ଆମେ ସମ୍ମାନର ସହ ଜୀବନ ଧାରଣ କରିବାର ସୁଯୋଗ ମଧ୍ୟ ପାଇଛୁ । ଆମେ ଏବେ ଅନ୍ୟମାନଙ୍କ ଭଳି ସେବା ନାମରେ ଛଳନା କରିବା ବି ଶିଖି ଯାଇଛୁ । (ଅବଶ୍ୟ ସମସ୍ତେ ନୋହୁଁ ବ୍ୟତିକ୍ରମ ଅଛନ୍ତି କିଛି)

ମୁଁ ନିହାରବାଳା କହୁଛି ଆପଣଙ୍କ ଅଷ୍ଟମୀ ଚାନ୍ଦ ଉପନ୍ୟାସର ନାୟିକା । ହେ ସମାଜ ମଣିଷମାନେ ଆପଣମାନଙ୍କ ପାଇଁ ମୋ ସ୍ରଷ୍ଟାଙ୍କର ବାଣୀ ହେଉଛି, 'ଭଲ ପାଇବା ଗୋଟାଏ ଦୋଷ ନୁହେଁ, ସେହିପରି ସ୍ନେହ ଶ୍ରଦ୍ଧା ଉପରେ ସମାଜ ଗଢ଼ା ହୋଇଛି । ଏହାକୁ ଉପଲବ୍ଧି କର । ଅନୁଭବ କର । ଭଲ ପାଇବାର ମହାନ ମନ୍ତ୍ରରେ ଅଭିସିକ୍ତ ହୁଅ । ଏହାହିଁ ହେବ ମୋ ସ୍ରଷ୍ଟାଙ୍କ ପ୍ରତି ଶ୍ରେଷ୍ଠ ସ୍ନେହାଞ୍ଜଳି ।

(ନିହାରବାଳା - ସ୍ରଷ୍ଟା ରାଜକିଶୋର ପଟ୍ଟନାୟକଙ୍କ 'ଅଷ୍ଟମୀ ଚାନ୍ଦ' ଉପନ୍ୟାସର ନାୟିକା)

ମଙ୍ଗଳପୁର, ଯାଜପୁର, ୭୫୫୦୧୧



# 'ଚଲାବାଟ'ର ଚିତ୍ର - ଚରିତ୍ର

ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ବିଂଶ ଶତକରେ ପାଶ୍ଚାତ୍ୟ ସାହିତ୍ୟ କ୍ଷେତ୍ରରେ ଯେଉଁ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା, ତାହାର ପ୍ରତିଫଳନ ଓଡ଼ିଆ ସାହିତ୍ୟରେ କ୍ରମଶଃ ଦୃଷ୍ଟିଗୋଚର ହେବାକୁ ଲାଗିଲା । ଓଡ଼ିଆ ସାହିତ୍ୟ ହେଲା ବିଚିତ୍ରବର୍ଣ୍ଣା । ସାହିତ୍ୟ ସାମାଜିକ ଜୀବନ ଅପେକ୍ଷା ମାନବ ମନର ଅବଚେତନତା ପ୍ରକାଶରେ ଶତମୁଖର ହୋଇଉଠିଲା । ମନସ୍ତାତ୍ତ୍ୱିକ ବିଶ୍ଳେଷଣ (Psycho-Analysis)ର ଧାରା ନୂତନ ସଂକେତରେ ସାହିତ୍ୟକୁ ଋଦ୍ଧିମନ୍ତ କଲା । ସାହିତ୍ୟରେ ଚେତନା ପ୍ରବାହ (Stream of Consciousness) ହୋଇଉଠିଲା ମନ ବିଶ୍ଳେଷଣ ନିମିତ୍ତ ନୂତନ ଆୟୁଧ । ଅବଚେତନ ମନର ବିଶ୍ଳେଷଣ, ଯୌନ ସମସ୍ୟା, ନିଃସଙ୍ଗ ମନୁଷ୍ୟର ସତ୍ତା ଉଦ୍‌ଘାଟନ ନିମନ୍ତେ ରିଚାର୍ଡ୍‌ସ୍, ଜେମ୍‌ସ୍ ଜୟେସ୍, ଆଇରିସ୍ ପ୍ରମୁଖ ପାଶ୍ଚାତ୍ୟ ସ୍ରଷ୍ଟାଙ୍କ ଭଳି ଯେଉଁ କେତେଜଣ ଓଡ଼ିଆ ସାହିତ୍ୟର କଥାକାର ଏହି ନୂତନ ଧାରାର ସୂତ୍ରପାତ କଲେ ତହିଁ ମଧ୍ୟରୁ 'ଚଲାବାଟ' ଉପନ୍ୟାସର ସ୍ରଷ୍ଟା ରାଜକିଶୋର ପଟ୍ଟନାୟକ ଅନ୍ୟତମ ।

ଲବ୍‌ଧପ୍ରତିଷ୍ଠ କଥାକାର, ବିଶିଷ୍ଟ ସାମ୍ବାଦିକ, ବିଜ୍ଞ ପ୍ରକାଶକ ଓ ଆଇନ୍‌ଜୀବି ରାଜକିଶୋର 'ଚଲାବାଟ' (୧୯୫୭) ରଚନା କଲାବେଳକୁ ବିତାଇ ସାରିଥିଲେ ଜୀବନର ଚାଳିଶି ଗୋଟି ଫଗୁଣ । ୧୯୧୭ ମସିହାରେ ଜନ୍ମଲାଭ କରିଥିବା ଏହି ସ୍ୱନାମଧନ୍ୟ ସାହିତ୍ୟିକ ଜୀବନରେ ଚଲାବାଟରେ ସୃଷ୍ଟି କରି ସାରିଥିଲେ ୧୦ଟି ଗଳ୍ପ ଉପନ୍ୟାସ, ୭ଟି ଊର୍ଦ୍ଧ୍ୱ କ୍ଷୁଦ୍ରଗଳ୍ପ ସଂକଳନ । ଔପନ୍ୟାସିକ ୧୯୩୪ ମସିହାରେ ନିଜ ଲେଖକ ଜୀବନ ଆରମ୍ଭ କରନ୍ତି 'ମିଷ୍ଟ୍ରିଜ୍ ଅଫ୍ କୋର୍ଟ ଅଫ୍ ଲଣ୍ଡନ୍'ର ଛାୟାରେ ଏକ ଉପନ୍ୟାସ ରଚନା କରି । ତାଙ୍କ ପ୍ରଥମ ଉପନ୍ୟାସ 'ଶୋ ଡ଼ିଡ଼ି ପାଲ୍ଲ୍', 'ନବ ଭାରତ'ରେ ଧାରାବାହିକ ଭାବେ ପ୍ରକାଶ ପାଇ 'ପଞ୍ଜୁରୀ ପକ୍ଷୀ' ନାମରେ ୧୯୪୩ରେ ଗ୍ରନ୍ଥାକାରରେ ପ୍ରକାଶିତ ହେଲା । ଏଣୁ 'ଚଲାବାଟ' ରଚନା ପାଇଁ ତାଙ୍କ ପାର୍ଶ୍ୱରେ ଥିଲା ଦୀର୍ଘ ତେଇଶି ବର୍ଷର ଲେଖକ ଜୀବନର ଅଭିଜ୍ଞତା । ପୂର୍ବ ପ୍ରକାଶିତ ସଞ୍ଜବତୀ, ପ୍ରେମିକର ଡାଏରୀ ଭଳି ଚଲାବାଟ ବିଷୟବସ୍ତୁ ପ୍ରେମିକ ପ୍ରେମିକାଙ୍କ ମନସ୍ତତ୍ତ୍ୱ ଉପରେ ପର୍ଯ୍ୟବସିତ । ମନୋବିଶ୍ଳେଷଣର ଅନ୍ତଃଦୃଷ୍ଟି ଏହି ଉପନ୍ୟାସଟିକୁ ଉତ୍ତୀର୍ଣ୍ଣ କରିଛି ସଫଳତାର ଶୀର୍ଷ ସୋପାନକୁ । ଉପନ୍ୟାସର ମୁଖ୍ୟ ଆଧାର ହୋଇଛି ପ୍ରେମ ପ୍ରଣୟର କାହାଣୀ, ଭଲପାଇବାର କଥା । ଜୀବନ ଦର୍ଶନର ପ୍ରଗାଢ଼ ପ୍ରଲେପରେ ରହି ବି ପ୍ରଭାବଶାଳୀ ହୋଇ ଉଠିଛି ଏହି ଉପନ୍ୟାସ ।



ଉପନ୍ୟାସ 'ଚଲାବାଟ'ର ବିଷୟବସ୍ତୁରେ ବହୁ ଘଟଣାବଳୀର ସମାବେଶ କିମ୍ବା ଚରିତ୍ରମାନଙ୍କର ଗହଳି ଦେଖାଯାଏ ନାହିଁ । ଘଟଣା ସମାବେଶ ଅପେକ୍ଷା ଚରିତ୍ରମାନଙ୍କର ମାନସିକ ଘାତ ପ୍ରତିଘାତ ସୃଷ୍ଟି କ୍ଷେତ୍ରରେ ଔପନ୍ୟାସିକ ହୋଇ ଉଠିଛନ୍ତି ସିଦ୍ଧହସ୍ତ । ତାଙ୍କ ଭାଷାରେ 'ଦେହର ରୋଗ ଆଉ ମନର ରୋଗ ଅଲଗା, ଏତିକି ଯେ ଗୋଟିକର ପ୍ରତିକାର ଯେତେ ସହଜ, ଆରଟିର ସେତିକି କଷ୍ଟ । (ଚଲାବାଟ ପୃ.୨୯୪)' । ବାସ୍ତବରେ ସହଜରେ ପ୍ରତିକାର କରାଯାଇ ପାରୁ ନଥିବା ମନର ରୋଗକୁ ଅତି ମର୍ମସ୍ପର୍ଶୀ ଭାବରେ ସେ ଏହି ଉପନ୍ୟାସରେ ଉନ୍ମୋଚିତ କରିଅଛନ୍ତି । ବିଶ୍ୱବିଦ୍ୟାଳୟ, ତାର ଲାଇବ୍ରେରୀ ଓ ହଷ୍ଟେଲ୍ ହୋଇ ଉଠିଛି ଉପନ୍ୟାସଟିର କ୍ରମଗତିଶୀଳ ବିଷୟବସ୍ତୁର ମୁଖ୍ୟକ୍ଷେତ୍ର । ଏହି ପରିସର ମଧ୍ୟରେ କଳ୍ପନାର ଜାଲବୁଣି ଚାଲିଛନ୍ତି ପ୍ରତିଟି ଚରିତ୍ର – ଅମରେନ୍ଦ୍ର, ରୀତା, ସୁମତୀ, ଦେବୀଦତ୍ତ, ପ୍ରଫେସର ପ୍ରସାଦ ଆଦି । ପୂର୍ବଭାରତୀୟ (ଓଡ଼ିଶା) ଯୁବକ ଅମରେନ୍ଦ୍ର ଓ ଉତ୍ତର ଭାରତୀୟା କନ୍ୟା ରୀତା ଏକଦା ବିଶ୍ୱବିଦ୍ୟାଳୟର ସହପାଠୀ ଥିବା ବେଳେ ଉଭୟ ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଛନ୍ତି । ଭାବପ୍ରବଣତାର ନିର୍ମମ ସ୍ପର୍ଶରେ ଅମରେନ୍ଦ୍ରଠାରୁ କ୍ରମଶଃ ଦୂରେଇ ଯାଇଛି ରୀତା । ବିଶ୍ୱବିଦ୍ୟାଳୟର ଅନ୍ୟତମ ଛାତ୍ରୀ ସୁମତୀ ଜୀବନସାଥୀଭାବେ ଅମରେନ୍ଦ୍ରକୁ ଚାହିଁଛି । କିନ୍ତୁ ରୀତା ପାଖରୁ ଲେଉଟି ଆସିଥିବା ଅମରେନ୍ଦ୍ର ସୁମତୀ ସହିତ ଗୁନ୍ଥାହେବାକୁ ଉତ୍ସାହର ଊଣା ପଡ଼ିଯାଏ । ଔପନ୍ୟାସିକଙ୍କ ଭାଷାରେ 'XXX କୌଣସି ଜିନିଷ ପାଇଁ ଚେଷ୍ଟା କରି ତାକୁ ହରାଇଲେ, ଯେ କୌଣସି ଜିନିଷ ପାଇଁ ଚେଷ୍ଟାକରି ହାରିଗଲେ, ମନର ଉତ୍ସାହ ବଦଳରେ ବୈରାଗ୍ୟ ଆସେ । (ଚଲାବାଟ ପୃ:୩୦୬)' । ମାନସିକ ଦ୍ୱନ୍ଦ୍ୱରେ ଦୋଳାୟିତ ହୋଇ ଉପନ୍ୟାସର ଏହି ତିନୋଟି ମୁଖ୍ୟ ଚରିତ୍ର ପରିଶେଷରେ ଆଦରି ନେଇଛନ୍ତି ନିଃସଙ୍ଗ ଜୀବନ । ଅବସ୍ଥାପ୍ରତି ସଚେତନତା, ପରିବେଶ, ପରିସ୍ଥିତି ଓ ମାନସିକ ସଂଘାତ ଗୋଟିଏ ଗୋଟିଏ ନିୟନ୍ତ୍ରକ ରୂପେ ଉଭା ହୋଇଛନ୍ତି ଉପନ୍ୟାସର ପ୍ରତିଟି କ୍ଷେତ୍ରରେ । ଉପନ୍ୟାସର କଥାବସ୍ତୁର ଗତିଶୀଳତା ଓ ପରିବର୍ତ୍ତନ ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିଛି ଏଗୁଡ଼ିକ ।

'ଚଲାବାଟ'ର ଏହି କ୍ଷୁଦ୍ର ବିଷୟବସ୍ତୁକୁ ତିନିଶତରୁ ଅଧିକ ପୃଷ୍ଠା କଳେବର ମଧ୍ୟରେ ପ୍ରକାଶ କରିଅଛନ୍ତି ଔପନ୍ୟାସିକ । ପ୍ରତିଟି ଘଟଣାର, ପ୍ରତିଟି ମୁହୂର୍ତ୍ତର ସୂକ୍ଷ୍ମାତିସୂକ୍ଷ୍ମ ପର୍ଯ୍ୟାଲୋଚନା ଏହି ଉପନ୍ୟାସଟିର ହୋଇଉଠିଛି ମୁଖ୍ୟ ବିଭବ । ସର୍ବଗ୍ରାହୀ, ଯୁକ୍ତିଯୁକ୍ତ ମନସ୍ତାତ୍ତ୍ୱିକ ବ୍ୟାଖ୍ୟା ଦ୍ୱାରା ମନର ଅନ୍ତରତମ ପ୍ରଦେଶକୁ ସ୍ପର୍ଶ କଲାଭଳି ଉପାଦାନ ଦେଇ ଔପନ୍ୟାସିକ ଶ୍ରୀଯୁକ୍ତ ପଟ୍ଟନାୟକ 'ଚଲାବାଟ'କୁ ଉଚ୍ଚକୋଟୀର ସାରସ୍ୱତ ସମ୍ପଦର ଆସନ ପ୍ରଦାନ କରିବାକୁ ସକ୍ଷମ ହୋଇଛନ୍ତି । ସ୍ୱଗତ କଥନ ମୂଳକ (Internal monologue)





ବକ୍ତବ୍ୟ ଆତ୍ମ ବିଶ୍ଳେଷଣ ପାଇଁ ଉପଯୁକ୍ତ ମାଧ୍ୟମଭାବେ କାର୍ଯ୍ୟ କରିଛି ଉକ୍ତ ଉପନ୍ୟାସଟିରେ ।

'ଚଲାବାଟ'ର ରଚନାକାଳକୁ ଦୃଷ୍ଟିଦେଲେ ଆମେ ଦେଖୁ ଯେ, ଏହା ମଧ୍ୟରେ ସମଗ୍ର ମାନବଜାତି ଦୁଇ ଦୁଇଟି ଧ୍ୱଂସକାରୀ ବିଶ୍ୱଯୁଦ୍ଧର ଅନୁଭୂତି ଲାଭ କରିସାରିଲାଣି । ଭାରତବର୍ଷ ଲାଭ କରି ସାରିସାରିଲାଣି ତା'ର ବହୁ ଆକାଂକ୍ଷିତ ସ୍ୱାଧୀନତା । ଗାନ୍ଧିଜୀ ଅହିଂସା ମାଧ୍ୟମରେ ବିଶ୍ୱକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇ ଆତତାୟୀର ଗୁଳିର ଶିକାର ହେଲେଣି । ଆମର ଏଇ ଓଡ଼ିଶାର ସ୍ୱତନ୍ତ୍ର ରାଜ୍ୟ ଗଠନ ପ୍ରକ୍ରିୟା ସମାପ୍ତ ହୋଇସାରିଲାଣି । ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ 'ନବଯୁଗ ସାହିତ୍ୟ ସଂସଦ (୧୯୩୬)' ପ୍ରତିଷ୍ଠା ହୋଇ ଓଡ଼ିଆ ସାହିତ୍ୟରେ ମାର୍କସ ଚିନ୍ତାଧାରାର ପ୍ରସାର ହେଲାଣି । ଏହିପରି ଏକ ଗୁରୁତ୍ୱପୂର୍ଣ୍ଣ ସାମାଜିକ, ସାଂସ୍କୃତିକ, ରାଜନୈତିକ ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ରାଜକିଶୋର ନିର୍ବିକାର ଭାବରେ ସମାଜ ସଚେତନ ନ ହୋଇ ହୋଇଉଠିଛନ୍ତି ବ୍ୟକ୍ତି ସଚେତନ । ଏଣୁ ତତ୍‌କାଳୀନ ସମାଜର କୌଣସି ଗୁରୁତ୍ୱପୂର୍ଣ୍ଣ ଘଟଣାର ଚିତ୍ର ତାଙ୍କ ଉପନ୍ୟାସ ବହନ କରିପାରି ନାହିଁ । ସମାଲୋଚକ ବ୍ରଜମୋହନ ମହାନ୍ତିଙ୍କ ମତରେ 'ସେ ଯେତେ ସମାଜ ସଚେତନ ନୁହନ୍ତି ସେତେ ବ୍ୟକ୍ତି ସଚେତନ । ତେଣୁ ତାଙ୍କ ନାୟକ ନାୟିକାମାନେ ନିଜ ସୁଖ, ନିଜ ଦୁଃଖ, ନିଜ ପ୍ରେମ ଏବଂ ନିଜ ପ୍ରଣୟରେ ଆତ୍ମବିଭୋର । ତାଙ୍କ ଜୀବନକାଳ ମଧ୍ୟରେ ଏ ଦେଶରେ ସ୍ୱାଧୀନତା ପାଇଁ ଏକ ବିରାଟ ଜାତୀୟ ଆନ୍ଦୋଳନ ସଂଗଠିତ ହୋଇଯାଇଥିଲେ ମଧ୍ୟ ସେ ବ୍ୟଥିତ ବିବ୍ରତ ହୋଇ ନାହାନ୍ତି ଏଥିପାଇଁ । ତାଙ୍କ ଚରିତ୍ରମାନେ ମଧ୍ୟ ଅନାସକ୍ତ ରହିଛନ୍ତି । ଏହି ମହାସ୍ରୋତରେ ନିଜକୁ ଜଡ଼ିତ ନକରି' (ଅଧୁନା– ରାଜକିଶୋର ବିଶେଷାଙ୍କ ୪ର୍ଥ ବର୍ଷ - ଷଷ୍ଠ ସଂଖ୍ୟା) । ଅବଶ୍ୟ ବିଶ୍ୱ ଯୁଦ୍ଧ ପରବର୍ତ୍ତୀ ମାନବ ମନର ଦ୍ୱନ୍ଦ୍ୱାତ୍ମକ ଭାବକୁ ସୁନ୍ଦରଭାବେ ରୂପ ଦେଇଛନ୍ତି କଥାକାର । ଯେକୌଣସି ଅବସ୍ଥାରେ ଏଇ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନେବାରେ ଅକ୍ଷମ ହୋଇଛନ୍ତି ଉପନ୍ୟାସସ୍ଥ ଚରିତ୍ରଗଣ । ଏହାଛଡ଼ା ଭାରତୀୟ ଶିକ୍ଷା ପଦ୍ଧତିରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ କିପରି ଯୁବମାନସକୁ ଏକ ନିଃସଙ୍ଗତା ଜୀବନ ଆଡ଼କୁ ପଥ କଢ଼ାଉଛି, ତାହାର ଯଥାର୍ଥ ଚିତ୍ର ଉପନ୍ୟାସ ଚାକିରିରେ ନିଯୁକ୍ତ ନ ହୋଇ ଯୁବକ ଅମରେନ୍ଦ୍ର ଯେଉଁ ସଂଗ୍ରାମୀ ଜୀବନ ଅତିବାହିତ କରିଛନ୍ତି ତାହା ନିଖୁଣ ଭାବରେ ପ୍ରକାଶ ପାଇଛି । ସହରୀ ଜୀବନର ଛବିରେ ଉପନ୍ୟାସ ରଞ୍ଜିମନ୍ତ । ଏଥିରେ ଗ୍ରାମ୍ୟ ପରିବେଶର ସାମାନ୍ୟତମ ସଙ୍କେତ ମିଳେ ନାହିଁ । ସହରୀ ପରିବେଶରେ ନିଜକୁ ଓତଃପ୍ରୋତଭାବେ ଜଡ଼ାଇ ରଖିଥିବା ଏହି ଚରିତ୍ରମାନଙ୍କଠାରେ ଦେଖାଦେଇଛି ଅଭିମାନ, ଅପବାଦର ଭୟ ଓ ସନ୍ଦେହ ।



ରାଜକିଶୋରଙ୍କ ପ୍ରତିଟି ଉପନ୍ୟାସ ଭଳି 'ଚଲାବାଟ' ଉପନ୍ୟାସରେ ଭଲପାଇବା ହିଁ ମୁଖ୍ୟ ଉପଜୀବ୍ୟ । ଫ୍ରଏଡ୍ରୀୟ ମନସ୍ତତ୍ତ୍ୱ ଯେଉଁ ଯୌନକ୍ଷୁଧାର କଥା କହିଲା ତାହା ନଗ୍ନ ବାସ୍ତବତାକୁ ପ୍ରକାଶକଲା ଉଭୟ ପୁରୁଷ ଓ ନାରୀର ଗୁପ୍ତ ମନକୁ ବିଶ୍ଳେଷଣ କରି । ଏଥିରୁ ପ୍ରାପ୍ତ ବୟସ୍କ ପ୍ରଫେସର ମଧ୍ୟ ବାଦ୍ ଯାଇ ନାହାନ୍ତି । ଅମରେନ୍ଦ୍ର ସହିତ ଗୀତାର କଥୋପକଥନ ତାଙ୍କୁ ଖୁବ୍ ବାଧୁଛି । ସେ ହିଂସାରେ ଜଳି ଯାଇଛନ୍ତି । ଗୀତାଠାରୁ ଅଳ୍ପ ବୟସ୍କ ଦେବୀଦତ୍ତ ମଧ୍ୟ ଗୀତାର ସାନ୍ନିଧ ଲାଭ କରିବା ନିମିତ୍ତ ଆଗ୍ରହ ପ୍ରକାଶ କରିଛି । ସେଥିପାଇଁ ସେ ଅମରେନ୍ଦ୍ରଙ୍କୁ ଈର୍ଷା କରିଛି । ସୁମତୀ ଅମରେନ୍ଦ୍ରଙ୍କୁ ପାଇବା ପାଇଁ ରଙ୍ଗୀନ୍ ସ୍ୱପ୍ନରେ ବିଭୋର ହୋଇଉଠିଛି । ଏଣୁ ବିଶ୍ୱବିଦ୍ୟାଳୟରୁ କାର୍ଯ୍ୟ ଶେଷ ହୋଇ ଯାଇଥିଲେ ମଧ୍ୟ ଏକ ନିର୍ଜନ ସମୟରେ ନିଜ ନିଜ ମଧ୍ୟରେ ସମ୍ପର୍କର ହାତ ବଢ଼ାଇବା ପାଇଁ କିଛି ସମୟ ରହି ଯାଇଛନ୍ତି ବିଶ୍ୱବିଦ୍ୟାଳୟରେ । ସମସ୍ତେ ଭଲପାଇବାର ଅମୁହାଁ ଗଳିର ପଥିକ । ଔପନ୍ୟାସିକଙ୍କ ଭାଷାରେ "ଭଲପାଇବାର ବାଟ ହେଉଛି ଅମୁହାଁ ଗଳି । ଏହି ବାଟରୁ ଫେରନ୍ତା ପାଦ ପଡ଼େ ନାହିଁ । ଥରେ ପ୍ରାଣଭରି ଭଲପାଇଥିଲେ ଆଉ ଥରେ ଭଲପାଇବା ସମ୍ଭବ ହୁଏ ନାହିଁ । ଯେମିତି ଥରେ ଭାବନାରେ ଉଚ୍ଚ ସ୍ତରକୁ ଚାଲିଗଲେ ଆଉ ତଳକୁ ଆସିବା ସମ୍ଭବ ହୁଏ ନାହିଁ (ଚଲାବାଟ - ପୃ : ୧୩୭)" । ଭଲପାଇବାର ଚଲାବାଟରୁ ଫେରନ୍ତା ପାଦ ପଡ଼ି ନାହିଁ ଅମରେନ୍ଦ୍ର, ଗୀତା ଓ ସୁମତୀର । ଭଲପାଇବା ବ୍ୟାକୁଳତା ପରିଣତ ହୋଇଛି ହତାଶାବୋଧ ଓ ନୈରାଶ୍ୟରେ । ଏହି ଭଲପାଇବାର ବ୍ୟାକୁଳତା, ହତାଶାବୋଧ ନୈରାଶ୍ୟ ମଧ୍ୟରେ ପ୍ରକାଶ ପାଇଛି ପ୍ରେମର ବହୁବିଧ ସଂଜ୍ଞା । ଯାହାର ବହୁ ଉଦାହରଣ ଦିଆଯାଇପାରେ । 'ପ୍ରେମ ବୟସର ବାହାରେ । ଜରା, ବାର୍ଦ୍ଧକ୍ୟ, ଧନଦୌଲତ, ବିଦ୍ୟାବୁଦ୍ଧିର ସଂକୀର୍ଣ୍ଣତାର ଉପରେ ପ୍ରେମ ଗୋଟିଏ ରୋଗ । ବୟସରେ ବାଳ ପାଚିଲା ପରି ମନ ଉପରେ ସେ ତାର ରଙ୍ଗ ଛାଡ଼ିଦିଏ । ଫଗୁ ଖେଳର ରଙ୍ଗପରି ସେ ମଣିଷକୁ ରଙ୍ଗେଇ ଦିଏ ।' (ଚଲାବାଟ-ପୃ:୯୫)

ଉପନ୍ୟାସର ଚରିତ୍ରଗଣ ଆଗାମୀ ଯୁଗ ପାଇଁ କୌଣସି ବାର୍ତ୍ତା ବହନ କରି ନାହାନ୍ତି । ତତ୍‌କାଳୀନ ଯୁଗ ଯନ୍ତ୍ରଣାର ସ୍ୱର ବହନ କରନ୍ତି ନାହିଁ । ଏମାନେ ପ୍ରତିନିଧିମୂଳକ ଚରିତ୍ର ନୁହନ୍ତି । ସେମାନେ ସାଧାରଣ ମଣିଷ । ସାଧାରଣ ଆଶା ଆକାଂକ୍ଷାକୁ ନେଇ ସେମାନେ ବଞ୍ଚିବା ପାଇଁ ଆଗ୍ରହୀ । ଭଲମନ୍ଦ, ହାନିଲାଭ, ହିଂସା ପ୍ରତିହିଂସା ମଧ୍ୟରେ ଶ୍ରୀଯୁକ୍ତ ପଟ୍ଟନାୟକ ପରିଚାଳିତ କରାଇଛନ୍ତି ତାଙ୍କ ଚରିତ୍ରମାନଙ୍କୁ । ସମଗ୍ର ଉପନ୍ୟାସଟିରେ ନାରୀ ଚରିତ୍ର ଖୁବ୍ ପ୍ରଭାବଶାଳୀ ମନେହୁଏ ।




ସ୍ରଷ୍ଟାର ଜୀବନାନୁଭୂତି ତାର ସୃଷ୍ଟିରେ ରୂପବନ୍ତ ହୋଇଉଠେ । ଅବଶ୍ୟ ଏହା ପ୍ରତ୍ୟେକ ସ୍ଥଳେ ସମ୍ପୂର୍ଣ୍ଣ ହୋଇନଥିଲେ ହେଁ ଆଂଶିକ ହେବା ପାଇଁ ବାଧ୍ୟ ହୋଇଥାଏ । 'ଚଲାବାଟ' ଉପନ୍ୟାସରେ ଆମେ ଔପନ୍ୟାସିକଙ୍କର ଜୀବନ ଚଲାବାଟର କେତେକ ନିଛକ ଛବି ପାଇଥାଉ । ଉପନ୍ୟାସଟିର ରଚନା ସମୟରେ ସ୍ରଷ୍ଟା ଶ୍ରୀଯୁକ୍ତ ପଟ୍ଟନାୟକ ଅବିବାହିତ ନିଃସଙ୍ଗ ଜୀବନ ଯାପନ କରୁଥିଲେ । ସେ ପର୍ଯ୍ୟନ୍ତ ଜୀବନର ଚାଳିଶିଟି ବିଫଳ ବସନ୍ତ ଅତିବାହିତ ହୋଇଗଲାଣି । ଏହି ନିଃସଙ୍ଗତାର ସ୍ୱଷ୍ଟ ଚିତ୍ର ଉପନ୍ୟାସର ମୁଖ୍ୟ ଚରିତ୍ର (ଅମରେନ୍ଦ୍ର)ରୁ ସହଜରେ ଉପଲବ୍ଧ ହୋଇଥାଏ । ସ୍ରଷ୍ଟାଙ୍କ ପୈତୃକ ଗୃହ ରସୁଲ୍‌କୁଣ୍ଡାରେ ହୋଇଥିଲେ ମଧ୍ୟ ସେ ଜନ୍ମଲାଭ କରିଥିଲେ କଲିକତାରେ । ଜୀବନର ଅଧିକାଂଶ ଜୀବନ ଅତିବାହିତ କରିଥିଲେ କଲିକତା, ଟାଟାନଗର, ଭାଗଲପୁର, ବନାରସ ଓ କଟକ ଭଳି ସହରୀ ଅଞ୍ଚଳରେ । ଏଣୁ ତାଙ୍କ ଉପନ୍ୟାସରେ ମୁଖ୍ୟତଃ ସହର ଜୀବନର ଚିତ୍ର ଦେଖିବାକୁ ମିଳେ । ସେ ଜଣେ ଆଇନ୍ ବ୍ୟବସାୟୀ ଥିବାରୁ ତାଙ୍କ ଉପନ୍ୟାସରେ ଯୁକ୍ତିବାଦିତାର ଦିଗ ଅତି ସ୍ୱଷ୍ଟ । ସଭ୍ୟ ଶିକ୍ଷିତ ପରିବେଶ ମଧ୍ୟରେ ତାଙ୍କର ଜୀବନର ଅଧିକାଶ ସମୟ ଅତିବାହିତ ହୋଇଥିବାରୁ ତାଙ୍କ ସୃଷ୍ଟିର ଚରିତ୍ରଗଣ ଏହି ଶ୍ରେଣୀୟ । ବହୁ ଅନୁଭୂତିକୁ ସାଥିକରି ସେ ଚରିତ୍ରଗଣଙ୍କ ମନଗହନ କଥାକୁ ଅତି ନିପୁଣତାର ସହ ପ୍ରକାଶ କରିପାରିଛନ୍ତି । ଉଭୟ ନାରୀ ଓ ପୁରୁଷ ଜୀବନକୁ ବିଶ୍ଳେଷଣ କରିଛନ୍ତି ଚରିତ୍ରମାନଙ୍କୁ ବିଶ୍ଳେଷଣ କରିବା ମଧ୍ୟରେ । ଉଭୟଙ୍କ ଜୀବନରେ କ'ଣ କ'ଣ ସତ୍ୟ ଆସିପାରେ ତା'ର ମଧ୍ୟ ଅବତାରଣା ଘଟାଇବାକୁ ପଛାଇ ନାହାନ୍ତି ଔପନ୍ୟାସିକ ।

'ଚଲାବାଟ'ର ରଚନା ଶୈଳୀ ବଳିଷ୍ଠ ଓ ରମଣୀୟ । ତାଙ୍କ ଶୈଳୀର ସାବଲିଳତା ଉପନ୍ୟାସଟିକୁ ଶ୍ରେଷ୍ଠ ଲୋକପ୍ରିୟ କରିବାରେ ଖୋରାକ ଯୋଗାଇଛି । ସମାଲୋଚକ ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ ମତରେ, 'ଏହି ଉପନ୍ୟାସରେ ଲେଖକଙ୍କର ବଚନ ବିନ୍ୟାସର ରୀତି ମଧ୍ୟ ଅନନ୍ୟ ଓ ବୈଶିଷ୍ଟ୍ୟପୂର୍ଣ୍ଣ । ଶାଣିତ ବୁଦ୍ଧି ପରିପକ୍ୱ ଅଭିଜ୍ଞତାରେ ତାହା ରସାଣିତ ଓ ଜୀବନର ସତ୍ୟୋପଲବ୍ଧିରେ ଉଦ୍‌ଭାସିତ । ଆଲଙ୍କାରିକ ଚିତ୍ର ଶିଳ୍ପ ପରି ସେ ଏହି ଉପନ୍ୟାସର ଭାବ ସମ୍ପଦକୁ ଯେପରି ଚମତ୍କାର ଉପମା ଓ ରୂପକାଦି ଅଳଙ୍କାରରେ ସୁସଜ୍ଜିତ କରିଛନ୍ତି ତାହା ଲେଖକଙ୍କ ଅପୂର୍ବ ସକ୍ଷତାର ପରିଚାୟକ ।' (ଆଧୁନିକ ଓଡ଼ିଆ ସାହିତ୍ୟ ପୃ : ୧୬୬) । ଉପନ୍ୟାସରେ ପ୍ରୟୋଗ ହୋଇଥିବା ଭାଷା ସାଧାରଣତଃ ସରଳ, ସହଜ ଓ ସ୍ୱାଭାବିକ । ମନସ୍ତତ୍ତ୍ୱର ଧାରାରେ ହୃଦୟର ନିବୃତ୍ତ କନ୍ଦରକୁ ବିଶ୍ଳେଷଣ କରି ତାହାକୁ ପ୍ରକାଶ କରାଯାଇଥିବାରୁ ବେଳେ ବେଳେ ପାଠକ ଅଣନିଃଶ୍ୱାସୀ ବୋଧକରେ । ଥରେ ମାତ୍ର ଏହା ମଧ୍ୟରେ ନିଜକୁ ଏକୀଭୂତ କରିଦେଲେ ଏହା ନିଜର ମନୋରମ ବିଭବକୁ



ପ୍ରଦାନ କରି ଚିତ୍ତହରଣ କରିବାକୁ ସକ୍ଷମ ହୋଇଥାଏ । ଉପନ୍ୟାସରେ ପ୍ରଯୁକ୍ତ ଉପମା ଓ ରୂପକଗୁଡ଼ିକ ପାଠକର ଏକାନ୍ତ ପରିଚିତ । ସ୍ରଷ୍ଟା ସାର୍ବଜନୀନ ଦୃଶ୍ୟକୁ ଉପମା ଓ ରୂପକର ଉପାଦାନ ରୂପେ ଗ୍ରହଣ କରିଅଛନ୍ତି । ଯଥା "ଛିଣ୍ଡା ବହି, ପେଡ଼ି ପୋରୁହା ଲୁଗା, ପୋକଖିଆ ଦାନ୍ତ, କାଳିବୋଳା ଚିଠି, ମରିଯାଇଥିବା ଲୋକର ଛବି, ଉପୁଡ଼ି ଯାଇଥିବା ଗଛ, ଛୋଟା ହୋଇଥିବା ବଳଦ, ଫଟା ଦର୍ପଣ, ଦଦରା ଦେହ, ଝାଉଁଳି ପଡ଼ିଥିବା ମନ ଯେମିତି ସଂସାରେ ଶୁଖିଇଲା ନଈ, ବରଫ ଘେରା ହିମାଳୟ, ବାଘ ବସିଥିବା ରାସ୍ତାକୁ ମନ ରୁଚେ ନାହିଁ, ସେମିତି ପୁରୁଣା ଦିନର କଟୁ ଅନୁଭୂତି । (ଚଲାବାଟ-ପୃଷ୍ଠା ୧୨) ସ୍ଥାନେ ସ୍ଥାନେ ଉପମାର ବନ୍ଧୁର ରାସ୍ତାରେ ପାଠକ ମଧ୍ୟ ଛନ୍ଦି ହୋଇଯାଏ । ଯଥା - ଫୁଲର ସୁବାସ ପରି, ପବନର ଆଶ୍ୱାସ ପରି, ଆକାଶର ନିଳୀମା ପରି ତାର ମୁହଁ ଉପରେ ଆଖି କଣରେ ଓ କପାଳ ଉପରେ ସବୁବେଳେ ହସ ଲାଗି ରହିଥିଲା - ଜହ୍ନର ସ୍ନିଗ୍ଧତା ପରି ଦୁଗ୍ଧ ଉପରର ଧଳା ଚର୍ବି ପରି (ଚଲାବାଟ) ।"

ରାଜକିଶୋରଙ୍କ ଭାଷାର କାବ୍ୟିକତା ତାଙ୍କ ଶୈଳୀର ଅନ୍ୟ ଏକ ସାଫଲ୍ୟ । ଏହି ମନମୁଗ୍ଧକର ଶୈଳୀ ପାଠକକୁ ବାନ୍ଧିରଖେ ଉପନ୍ୟାସଟିର ପରିସମାପ୍ତି ପର୍ଯ୍ୟନ୍ତ । ମନସ୍ତତ୍ତ୍ୱର ବିଶ୍ଳେଷଣ ନିମିତ୍ତ ବ୍ୟବହୃତ ବ୍ୟଞ୍ଜନାତ୍ମକ ଶୈଳୀ ପାଠକର ଚିତ୍ତରେ ଆଲୋଡ଼ନ ସୃଷ୍ଟି କରେ । ଉପନ୍ୟାସରେ ମଧ୍ୟ ଅରାକ, ଭଲଭାଲ, କଥା ନହସ, ନହକି, ମହୁଡ଼, ପେଡ଼ି, ପୋରୁହ ପ୍ରଭୃତି ପ୍ରାଚୀନ ତଥା ଗ୍ରାମ୍ୟ ଶବ୍ଦର ବ୍ୟବହାର ରହିଛି; ଯାହା ଅନେକ ସମୟରେ ବୋଧଗମ୍ୟ ହୋଇପାରେ ନାହିଁ । ଅବଶ୍ୟ ଏହା ସ୍ୱୀକୃତ ଯେ ଉପନ୍ୟାସଟି ଚଳିତ ଶତକର ଷଷ୍ଠ ଦଶନ୍ଧିରେ ରଚିତ ହୋଇଥିବାରୁ, ଏହି ପ୍ରକାର କେତେକ ଅଧୁନା ଅପ୍ରଚଳିତ ଶବ୍ଦ ସେ ସମୟରେ ପ୍ରଚଳିତ ହେଉଥିବାର ସମ୍ଭାବନାକୁ ଯଥେଷ୍ଟ ଅଧିକ । ମଝିରେ ମଝିରେ ଦୀର୍ଘ ବର୍ଣ୍ଣନା ପାଠକକୁ ଅଣନିଃଶ୍ୱାସୀ କରିପକାଏ । ଉପନ୍ୟାସରେ ଯେ ମନୋରଞ୍ଜନକାରୀ ବର୍ଣ୍ଣନା ନାହିଁ ତାହା ନୁହେଁ, ବରଂ ସ୍ରଷ୍ଟା ଏଥିନେଇ ଖୁବ୍ ଯତ୍ନଶୀଳ । 'ଦୂରକୁ ଯାଉଥିବା ବାଟୋଇ ଅନେକ ଦୂର ଚାଲିଗଲା ପରେ କ୍ଲାନ୍ତ ହୋଇ ବସିଯାଏ — ଆଗରେ ତା'ର ପାଦତଳର ରାସ୍ତା କେଜାଣି କେତେ ଦୂରକୁ ଲମ୍ବି ଯାଇଛି । ପଛଆଡ଼େ ଛାଡ଼ି ଆସିଥିବାର ବାଟ ଯେମିତି କେତେ ଦୂରରେ ହଜି ଯାଇଛି । ଦୁଇ ପାଖରେ ପୃଥିବୀ ଓ ଆକାଶ ମିଶି ଯାଇଥାନ୍ତି — ତାହାକୁ କୁହାଯାଏ ଚକ୍ରବାଳ । (ଚଲାବାଟ — ପୃଷ୍ଠା-୧)"

ସାହିତ୍ୟର ଏକନିଷ୍ଠ ସାଧକ ରାଜକିଶୋର 'ଚଲାବାଟ' ରଚନା କଲାପରେ ମଧ୍ୟ ସଂଖ୍ୟାଧିକ ଉପନ୍ୟାସ, ସମାଲୋଚନା ପୁସ୍ତକ ଏବଂ ଜୀବନୀ, ଭ୍ରମଣ କାହାଣୀମାନ





ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଅଛନ୍ତି । ୧୯୫୮ ମସିହାରେ ଶାନ୍ତି ନିବାସ ବାଣୀମନ୍ଦିର ନାମକ ପୁସ୍ତକ ପ୍ରଣୟନ ସଂସ୍ଥା ପ୍ରତିଷ୍ଠା କରି ଓଡ଼ିଆ ସାହିତ୍ୟର ବାଣୀ ମନ୍ଦିରକୁ ଦାନ କରିଛନ୍ତି ବହୁ ମହାର୍ଘ ସୃଷ୍ଟି ସମୂହ । ତାଙ୍କର ସମଗ୍ର ସୃଷ୍ଟି ମଧ୍ୟରୁ 'ଚଲାବାଟ' ଉପନ୍ୟାସ କେବଳ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ନୁହେଁ, ଜାତୀୟ ଉପନ୍ୟାସ ସାହିତ୍ୟରେ ଏକ ମର୍ଯ୍ୟାଦାପୂର୍ଣ୍ଣ ଆସନର ଦାବୀ ରଖେ । ଏହି ସଫଳ ସାରସ୍ୱତ ସୃଷ୍ଟିର ଜନକ ଯଥାର୍ଥରେ ଚାଲେଞ୍ଜ କରି ପାରିଥିଲେ, ଆହ୍ୱାନ ଦେଇଥିଲେ ସତ୍‌ସାହସର ସହ ଏପରି ଏକ ଉପନ୍ୟାସ ଲେଖାଇବା ପାଇଁ ଓଡ଼ିଶା ସାହିତ୍ୟ ଏକାଡେ଼ମୀକୁ । ଜୀବନର ଶେଷଭାଗରେ ଏହି ଆଲୋଚକ ସହ ଏକ ସାକ୍ଷାତକାରରେ କହିଥିଲେ, 'ଚଲାବାଟରେ ଯେଉଁ ଆହ୍ୱାନ ଦେଇଥିଲି ଏ ପ୍ରକାର ଲେଖା ଲେଖିବା ପାଇଁ, ତାହା କ'ଣ ସମସ୍ତଙ୍କ ପାଇଁ ଆହ୍ୱାନ ନୁହେଁ ? ତା'ର କୌଣସି ଉତ୍ତର ଏଯାବତ୍ ମୋତେ ମିଳିନାହିଁ । (ପ୍ରଜାତନ୍ତ୍ର ସପ୍ତାହାନ୍ତ, ୨୧ ସେପ୍‌ଟେମ୍ବର, ୧୯୯୬) ।'

ଗ୍ରା/ପୋ : ଘଣ୍ଟାଳ (କ୍ଷତ୍ରିୟ ସାହି),
ଭାୟା : ଅସୁରେଶ୍ୱର, ଜି : କଟକ





# ମାନବବାଦୀ କଥାକାର

## ପ୍ରଶାନ୍ତ ମହାନ୍ତି

ଆଦ୍ୟ ଯୌବନରେ ଯେଉଁ କଲମକୁ ଅତି ଆପଣାର କରି ନେଇ କଥାକାର ସାଜିଥିଲେ, —ରାଜକିଶୋର ପଟ୍ଟନାୟକ, ସେହି କଲମ ଶେଷଯାଏ ତାଙ୍କର ପାଖ ଛାଡ଼ି ନଥିଲା । ମଣିଷର ମନକୁ ଚିହ୍ନିବାରେ ସେ ତାଙ୍କର ସାଧନାର ଦୀର୍ଘ ସମୟ ବ୍ୟୟ କରିଥିଲେ । କଥା କହିବା ଏବଂ ଉପସ୍ଥାପନା କରିବାରେ ତାଙ୍କର ନିଜସ୍ୱ ଏକ ଶୈଳୀ ଥିଲା । ଓଡ଼ିଆ ପାଠକଙ୍କୁ ନୂଆ ନୂଆ ଚିନ୍ତାଧାରାର ଖୋରାକ୍ ସେ ଯୋଗାଇବାରେ ସିଦ୍ଧହସ୍ତ ଥିଲେ । ତାଙ୍କ ଲେଖାରେ କଳ୍ପନାବିଳାସୀ ବର୍ଣ୍ଣନା ଅପେକ୍ଷା ନିଛକ ବାସ୍ତବତାର ଚିତ୍ର ବହୁ ସମୟରେ ପ୍ରତିଫଳିତ । ମଣିଷର ମନସ୍ତତ୍ତ୍ୱ ବ୍ୟାଖ୍ୟା କରିବାରେ ସେ ଧୁରନ୍ଧର ଥିଲେ । ଏ ଦିଗରେ ତାଙ୍କର ବର୍ଣ୍ଣନା ବେଶ୍ ଯୁକ୍ତିଯୁକ୍ତ ମଧ୍ୟ । ସେ ତାଙ୍କର ମନର କଥାକୁ ସିଧାସଳଖ ଢଙ୍ଗରେ ପାଠକଙ୍କ ଆଗରେ ବାଢ଼ି ଦେଇଥାନ୍ତି । ବସ୍ତୁତଃ ରାଜକିଶୋରଙ୍କର ଅଧିକାଂଶ ଲେଖା ଆତ୍ମକଥନ ଉପରେ ପର୍ଯ୍ୟବସିତ ।

ତାଙ୍କ ରଚିତ 'କଜ୍ଜଳଗାର' ଉପନ୍ୟାସରେ ମଣିଷମନର ଅବ୍ୟକ୍ତ ଚିନ୍ତାଧାରା, ପ୍ରୀତିର ଗୁପ୍ତ ମନ୍ଦାକିନୀର ପରିସ୍ଫୁଟନ ଏହାକୁ ଏକ ଅନବଦ୍ୟ ସାହିତ୍ୟରେ ପରିଣତ କରିଛି । ଉପନ୍ୟାସର ନାୟକ ସୁଭାଷ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ - ଅବିବାହିତ । ନାୟିକା ଶ୍ୟାମାଦେବୀ ଦୁଇଟି ସନ୍ତାନର ଜନନୀ, ଜଣେ ଗୃହିଣୀ, ସର୍ବୋପରି ସୁଭାଷଙ୍କର ପଡ଼ୋଶିନୀ । ସେ ମଧ୍ୟ ଜଣେ ଉଚ୍ଚପଦସ୍ଥ କର୍ମଚାରୀଙ୍କର ପତ୍ନୀ । ଅଧିକାଂଶ ସମୟ ଟୁର୍‌ରେ ବିତାଉଥିବା ସ୍ୱାମୀ କେଶବଙ୍କର ଅନୁପସ୍ଥିତି ଜନିତ ବିରହିଣୀ ଶ୍ୟାମାଦେବୀ ସିତାର୍‌ର ତାର ଭିତରେ ନିଜର ସମୟ କଟାଇବାକୁ ଚେଷ୍ଟା କରନ୍ତି । ଦୁହିଁଙ୍କ ମଧ୍ୟରେ ସମ୍ପର୍କ ଧୀରେ ଧୀରେ ଗଢ଼ି ଉଠେ । ଅତି ସନ୍ତର୍ପଣରେ ସଂଭ୍ରମତାର ସହ ନାୟକ ଏବଂ ନାୟିକା ପାରସ୍ପରିକ ଚାହାଣୀର ବିନିମୟରେ ସମ୍ପର୍କର ସରହଦ୍‌କୁ ପଳାନ୍ତି । ପିଲା ଦୁଇଟିଙ୍କ ସ୍ନେହଶ୍ରଦ୍ଧା ନାୟକଙ୍କୁ ଟାଣି ନେଇଆସେ ନାୟିକା ନିକଟକୁ । ସାମାଜିକ ବିଧି ବ୍ୟବସ୍ଥାକୁ ଉଲ୍ଲଂଘନ ନକରି ରୂପରେ ପ୍ରୀତି ଆଗେଇ ଚାଲେ । ପାରସ୍ପରିକ ଇର୍ଷା, ହିଂସା-ଦ୍ୱେଷ, ରାଗ-ଅନୁରାଗ ଏ ସବୁର ସମ୍ମିଶ୍ରଣରେ ଉପନ୍ୟାସର ଗତି ଚଳ ଚଞ୍ଚଳ । ରାଜକିଶୋରଙ୍କର ଭାଷାରେ 'ଜୀବନର ଚଲାବାଟରେ ଏମିତି ଉଦୟ-ଅସ୍ତ ଲାଗି ରହିଥାଏ । ବାରମ୍ବାର ଭଙ୍ଗାହୁଏ ଓ ଗଢ଼ା ହୁଏ । ଖୋଜିବା ଓ ଭୁଲିଯିବା ସତେ ଯେପରି ମଣିଷର ଧର୍ମ ! ସେ କାହିଁକି ଧାଏଁ, ଆଉ ଧାଇଁବା ପରେ ପସ୍ତାଏ । ଅନୁତାପ ଆସିଲେ ବିରାଗୀ ହୁଏ ପୁଣି





ବିରାଗୀରୁ ଅନୁରାଗି ହୁଏ – କେହି ତ କହି ପାରିବେ ନାହିଁ' ଏହି ନ୍ୟାୟରେ ସୁଭାଷ ଓ ଶ୍ୟାମାଦେବୀ ଓରଫ କୃଷ୍ଣପ୍ରିୟା ପ୍ରୀତିର ଦର୍ପଣରେ ପରସ୍ପରର ପ୍ରତିବିମ୍ବ ଦେଖୁଥିଲେ । ସ୍ୱାମୀ-ସନ୍ତାନର ସୁଖରେ ବାନ୍ଧି ହୋଇଥିବା ଶ୍ୟାମାଦେବୀ ସାଧାରଣ ଗୃହିଣୀ ହେଲେ ମଧ୍ୟ ଧୀ-ସମ୍ପନ୍ନା ମଧ୍ୟ ଅଟନ୍ତି । ତେଣୁ ନିଜ ସାଂସାରିକ ଜୀବନର ଲକ୍ଷ୍ମଣରେଖା ସେ କେବେ ବି ଅତିକ୍ରମ କରିବାକୁ ଚେଷ୍ଟା କରି ନାହାନ୍ତି । ଛାତି ତଳେ ଚେଇଁ ଉଠିଥିବା ପ୍ରୀତିକୁ ସେ ଦେହଜ ହେବାର ଅବକାଶ ଦେଇ ନାହାନ୍ତି । ତେଣୁ ସେ ନିଜେ ସୁଭାଷଙ୍କର ପ୍ରିୟତମା କୃଷ୍ଣପ୍ରିୟା ବୋଲି ଜାଣିବା ପରେ ବିନା ଦ୍ୱିଧାରେ ସୁଭାଷଙ୍କୁ ନିଜର ବୋଲି ବର୍ଣ୍ଣନା କରିବାକୁ ଯାଇ ଯଥାର୍ଥରେ କହିଛନ୍ତି ଯେ, XXX ଆଜି ନୁହେଁ – କାଲିଠାରୁ କୃଷ୍ଣପ୍ରିୟା ତୁମକୁ ସମସ୍ତ ଉତ୍ସର୍ଗ କରିଦେଲା । ତୁମେ ତାକୁ ରଖ କି ଫୋପାଡ଼ି ଦିଅ – ସେ ତୁମର । XXX ବିଶ୍ୱାସ ଯଦି କରୁଛ, ଶୁଣ । କାଲି ରାତିରେ ମୁଁ ତ ଡାଇରୀରେ ଲେଖିଲି ନାହିଁ - ହାରମୋନିୟମ୍ ବଜାଇଥିଲି ଶୁଣିଥିବେ... ବସି ଭାବିଲି ବହୁତ ବେଳ... ଆଗ ପଛ । ଏପାଖ ସେପାଖ... ଶେଷକୁ ତୁମେ ହିଁ ଜିଣିଲ... ଶ୍ୟାମା ହାରିଗଲା XXX କାଲି ଠିକ୍ କଲି ଯେ ସେ ଶ୍ୟାମାଦେବୀଙ୍କୁ ପାଇବେ – ତୁମେ ପାଇବ କୃଷ୍ଣପ୍ରିୟାଙ୍କୁ । ଏଇ ଦେହଟା ତାଙ୍କର । ଏଇ ମନଟା ତମର । ବାହାଘର ଯେଉଁ ପାଚେରୀ ପକାଇ ଦେଇଛି, ସେତିକି ହେଉଛି ବ୍ୟବଧାନ । XXX ଏକାନ୍ତ ମନରେ ତମକୁ ମୋର ମନ ସମର୍ପଣ କଲି । ଏଇ ଦେହକୁ କାମନା କରିବ ନାହିଁ । ଏତିକି ହେଉଛି ତୁମପ୍ରତି ନିଷେଧ । ପାରିବ – ଦୟା ଦେଖାଇ ପାରିବ ? ମୋର ସ୍ୱାଧୀନତା ନାହିଁ, ତୁମେ ଜାଣିଛ । ଆଜି ଶେଷଥର ପାଇଁ ତୁମକୁ ଛୁଇଁ ମୋର ଏଇ ପୋଡ଼ା ମନର ସମସ୍ତ ଭଲ ପାଇବା ତୁମର ପାଦତଳେ ଅଜାଡ଼ି ଦେଇ ତମକୁ ପ୍ରାର୍ଥନା ଜଣାଉଛି । ପ୍ରିୟତମ ! ଏଇ ମନକୁ ଗ୍ରହଣ କରି, ଏହି ଦେହଠାରୁ ଦୂରେଇ ରହିବ । XXX ପ୍ରତିଜ୍ଞା କର ମୁହଁ ଖୋଲି କୁହ ଦେଖିବ – ତମର ମନ ଆଉ ତମକୁ ହଲ୍‌ଚଲ୍ କରିବ ନାହିଁ । ତମେ ପ୍ରୀତି ଖୋଜୁଥିଲ ପାଇଲ ।

ମାନବଦରଦୀ ରାଜକିଶୋର ନିଜର ଅପୂର୍ବ ଶୈଳୀରେ 'କଜ୍ଜଳଗାର' ଉପନ୍ୟାସକୁ ରସୋତ୍ତୀର୍ଣ୍ଣ କରିବାରେ ସହାୟକ ହୋଇପାରିଛନ୍ତି । ବିବିଧ ରଚନାବଳୀ ଦ୍ୱାରା କଥାକାର ରାଜକିଶୋର ନିଜକୁ ଅମର କରାଇଛନ୍ତି । ଓଡ଼ିଆ ସାହିତ୍ୟର ସୁମହାନ୍ ଇତିହାସରେ ପାଠକର ପ୍ରିୟ ଭାଜନ ହେବା ଯେ କୌଣସି ସାହିତ୍ୟିକଙ୍କ ନିମନ୍ତେ ସର୍ବୋଚ୍ଚ ପୁରସ୍କାର । ସେ ଏହି ଯଶର ସୁ-ମହାନ୍ ଅଧିକାରୀ ।

କନିକା ଛକ, କଟକ





# ଡିମିରି ଫୁଲ ପରି

**ଗୁରୁ ମହାନ୍ତି**

ଏଇ କେତେଟା ଦିନ ତଳର ଘଟଣା । ଜଣେ ବନ୍ଧୁ ଓଡ଼ିଆର ସ୍ୱାଭିମାନ ସଂପର୍କରେ ଆଲୋଚନା କରି ବସିଲେ, ମୋର କେଇଜଣ ଓଡ଼ିଆ ମହକିଲଙ୍କ ଉପସ୍ଥିତିରେ । ମୁଁ ତାଙ୍କ ମୁଖରୁ ସ୍ୱାଭିମାନ ସଂପର୍କରେ କିଛି ଶୁଣିବା ପରେ ପ୍ରଶ୍ନ କରିଥିଲି, ତାହା କି ପ୍ରକାର ଏକ ଫଳ ? ତା'ର ସ୍ୱାଦ କ'ଣ ଓ ଦେଖିବାକୁ ରଙ୍ଗ କିପରି ? ସେ କେଉଁ ବୃକ୍ଷରେ ଫଳେ ଓ କେଉଁ ଋତୁରେ ତାହା ପାଚେ ? ଯଦି ସ୍ୱାଭିମାନ ଫଳ ନ ହୋଇ ଫୁଲ ହୋଇଥାଏ । ତାର ରଙ୍ଗ କିପରି ? ମହକ କେଉଁ ଫୁଲର ମହକ ସମକକ୍ଷ ? ଚମ୍ପା, ନାଗେଶ୍ୱର, ସୁଗନ୍ଧରାଜ, ହେନା ପରି ନା ବିଲୁପ୍ତ ହୋଇ ଆସୁଥିବା ପଦ୍ମ ପରି ? ମୁଁ ଅଧିକ ପ୍ରଶ୍ନ କରିଥିଲେ ସେ ଚିତ୍କାର କରିଥାନ୍ତେ ।

ତାହା ଏକ ମାନବୀୟ ଗୁଣ କହି, ମୋର ସଂଶୟ ସେ ଦୂର କରିବାକୁ ପ୍ରୟାସ କଲେ । ତାଙ୍କ କଥାରେ କିଛିଟା ଚମତ୍କାରିତା ଥିଲା । ମୋର ତାଙ୍କୁ ଛୋଟ ଉତ୍ତରଟିଏ ଥିଲା । ''ନିଜେ ବଞ୍ଚିଲେ ବାପର ନାଁ'' ବଞ୍ଚି ରହିବା ପାଇଁ କେଡ଼େ ସୁନ୍ଦର ତାତ୍ପର୍ଯ୍ୟପୂର୍ଣ୍ଣ ପୂର୍ବ ପୁରୁଷରୁ ଗଢ଼ି ଆସୁଥିବା ଦମ୍ଭୋକ୍ତି । ମୁଁ ତାଙ୍କୁ କିର୍କଗାଡ୍ ଓ ତାଙ୍କ ''ସ୍ଥିତିର ଦର୍ଶନ'' "Existential philosophy" ଯାହାକୁ ଆଧାର କରି ଆଲ୍‌ବୟାରକାମୁ ଓ ଦାର୍ଶନିକ ସାତ୍ରେ,ବିଶ୍ୱ ବିଖ୍ୟାତ ସାହିତ୍ୟ ସୃଷ୍ଟି କରିଥିଲେ ବୋଲି ସୂଚନା ଦେଲି । ସେ ଅଧିକ ଯୁକ୍ତି କରିବାକୁ ପ୍ରୟାସ କଲେ ନାହିଁ । ସେ ସ୍ୱାଭିମାନ ପରି ଏକ ଗୁଣ ସହ ଆଦୌ ପରିଚିତ ନଥାଇ, ବଞ୍ଚିବାର ମୋହକୁ ସାବ୍ୟସ୍ତ କରିବାକୁ, ମୋ ମତ ଲୋଡ଼ୁ ଥିଲେ ନିଶ୍ଚୟ । ତୋଷାମଦର କବଚ ପିନ୍ଧି, ଚାକିରି ଜୀବନରେ କାର୍ଯ୍ୟନିପୁଣତା ଯୋଗୁଁ ନୁହଁ, ଉପର ହାକିମକୁ ସନ୍ତୁଷ୍ଟ କରି ପ୍ରୋମୋସନ ଉଠାର ଦୌଡ଼ରେ ବହୁ ସହକର୍ମୀଙ୍କୁ ଟପିଯାଇ, ଅବସର ନେଇ, ବାହାସ୍ଫୋଟ ମାରୁଥିବା ବ୍ୟକ୍ତି ଜଣକ, ଟିଭି ସିରିଆଲ୍ ସ୍ୱାଭିମାନ ଯାହା ନିଛକ ଅହଂକାର, ଦେଖିବା ପରେ, ଜୀବନର ଶେଷ ଅଙ୍କରେ ସ୍ୱାଭିମାନ ପରି ଏକ ଡିମିରି ଫୁଲ ସଂପର୍କରେ ବୁଲିବୁଲି ପ୍ରଚାର ଚଳାଇଥିବା ପରି ମୋର ମନେହେଲା ।

ସେ ଯିବା ପରେ ମନକୁ ଆସିଲେ, ପୋଡ଼ି ପାଉଁଶ ହୋଇ ପଞ୍ଚଭୂତରେ ମିଶିଯାଇ ଥିବା ରାଜକିଶୋର ପଟ୍ଟନାୟକ । ମୁଁ ତାଙ୍କୁ ପଚାଶ ଶତକରୁ ଜାଣିଛି । ମୁଁ ଯେତେବେଳେ ପାଠ ଛାଡ଼ି ନଥାଏ କି ଓକିଲାତି କରିବାର ସ୍ୱପ୍ନ ବି ଦେଖି ନଥାଏ । ମାଟିଆ ଫୁଲପ୍ୟାଣ୍ଟରେ ପାଦ ପାଖରେ କ୍ଲିପ୍ ଲଗାଇ ସାଇକେଲ୍ ଚଢ଼ି ସେ କଚେରୀରୁ ଫେରି ବୀରିବାଟୀ ନିକଟ ତାଙ୍କ ବଗିଚାକୁ ପ୍ରାୟ ନିତିପ୍ରତି ଯାନ୍ତି ଓ ଥଳିଏ ପରିବା ପତ୍ର ଧରି ସଂଜକୁ ଫେରନ୍ତି । ସେ ସେତେବେଳେ ତେଲେଙ୍ଗା ବଜାରର କାଠଯୋଡ଼ୀ କୂଳ ଘରେ ରହୁଥାନ୍ତି । ପରେ ସେ





ଘରର ଏକ ଅଂଶକୁ ପାଠାଗାରଟିଏ କରି ସେଇ ତେଲେଙ୍ଗା ବଜାରର ତାଙ୍କ ଅନ୍ୟଏକ ଟିଣଛପର ଘରକୁ ଆଦରି ନେବା ଦେଖିଛି । ପରିଣତ ବୟସରେ ଶ୍ରୀମତୀ ଶୈଳ ପଟ୍ଟନାୟକଙ୍କୁ ବିବାହ କରି ରିକ୍ସାରେ ଭ୍ରମଣ ଓ ତା' ପରର ପିତୃତ୍ୱର ମୁହଁ ବି ଦେଖିଛି ।

''ତୁଠ ପଥର''ଠାରୁ ''ସିନ୍ଦୂରଗାର'' ପର୍ଯ୍ୟନ୍ତ ଅନେକ ଲେଖା ପାଠ କରି ଉଦ୍‌ବେଳିତ ହୋଇଛି । ଆମେ ନିଲଠା ପୁଳାଏ ମଣିଷ, ସ୍ୱାଭିମାନର ଦୁଆ ଧରି ନିଜକୁ ନିତି-ପ୍ରତି ସ୍ୱାର୍ଥସିଦ୍ଧି ପାଇଁ କେତେ ବାର ଯେ ବିକ୍ରି ନ କରୁଛୁ, ସେକଥା କହି ଶିକ୍ଷିତ ଓଡ଼ିଆ ଛାତିରେ ହାତ ରଖି ହଲପ୍ କରି ପାରିବ ନାହିଁ । ସେ କିନ୍ତୁ ସେଇ ସାଇକେଲ୍ ଓ ବିଡ଼ିର ଏକ କିମ୍ବଦନ୍ତୀ ପୁରୁଷ ହୋଇ ରହିଗଲେ ।

ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ସ୍ୱର୍ଗତ ଲାଲମୋହନ ପଟ୍ଟନାୟକ ଓ ସ୍ୱର୍ଗତ ଶ୍ରୀବତ୍ସ ପଟ୍ଟନାୟକ, ତିନିଭାଇ, ଗଞ୍ଜାମରୁ କଟକ ଆସିଥିଲେ । କଟକ ସହରର ତିନୋଟି ସ୍ଥାନରେ ଘର କଲେ । ଲକ୍ଷ୍ମୀନାରାୟଣ ବ୍ରାହ୍ମ ଧର୍ମ, ଲାଲମୋହନ ଖ୍ରୀଷ୍ଟ ଧର୍ମ ଗ୍ରହଣ କଲେ । ଶ୍ରୀବତ୍ସ ହିନ୍ଦୁ ହୋଇ ରହିଲେ । ଲକ୍ଷ୍ମୀନାରାୟଣଙ୍କ ଜ୍ୟେଷ୍ଠ ପୁତ୍ର ଜର୍ଜ ପଟ୍ଟନାୟକ ଦନ୍ତ ଚିକିତ୍ସା ସହ ଖେଳୁଆଡ଼ ରୂପେ ଯଶ ଅର୍ଜିଲେ । ୨ୟ ପୁତ୍ର ବିଜୁ ପଟ୍ଟନାୟକ ଜଣେ ଜନନାୟକ ଓ ଦୁଇ ଦୁଇଥର ଓଡ଼ିଶାର ମୁଖ୍ୟମନ୍ତ୍ରୀତ୍ୱର ମୁକୁଟ ପିନ୍ଧି ଓଡ଼ିଆଙ୍କ ଭିତରେ ଅନନ୍ୟ ବ୍ୟକ୍ତିତ୍ୱ ହୋଇ ସାରା ଦେଶରେ ଓ ବିଦେଶରେ ବି ନାମ ଅର୍ଜନ କଲେ । ଲାଲ ମୋହନଙ୍କର ଦୁଇ ପୁଅ । ଦେବେନ୍ଦ୍ର ଓ ପ୍ରଣବ । ଦେବେନ୍ଦ୍ର ଥିଲେ ମୋର ଇଂରାଜୀ ଶିକ୍ଷକ ରେଭେନ୍ସାରେ । ସେ ଆମେରିକାର ନାଗରିକ ଏବେ । ପ୍ରଣବ ପଟ୍ଟନାୟକ ଓଡ଼ିଶାର ଜଣେ ଖ୍ୟାତନାମା ସଂଗୀତ ଶିଳ୍ପୀ । ତାଙ୍କ କଣ୍ଠରେ ''ମୈଁ ପାଗଲ ମେରା ମନୁଆ ପାଗଲ୍'' କେଉଁ ରସିକ ଶ୍ରୋତାକୁ ପାଗଳ ନ କରିଛି ?

ଶ୍ରୀବତ୍ସଙ୍କ ପୁତ୍ରମାନଙ୍କ ଭିତରୁ ରାଜ କିଶୋର ଓ କନ୍ୟା ବସନ୍ତଦେବୀ ଖ୍ୟାତି ଅର୍ଜନ କରିଛନ୍ତି ଉପନ୍ୟାସ ଜଗତରେ । ବସନ୍ତ ଦେବୀଙ୍କ ''ଅମଡ଼ାବାଟ''ର ନାରୀ ଚରିତ୍ର ଏକ ଅନବଦ୍ୟ ସୃଷ୍ଟି । ଓଡ଼ିଆ ସିନେମା ଜଗତରେ ଅମଡ଼ାବାଟ ଏକ ମାଇଲ ଖୁଣ୍ଟି । ଓଡ଼ିଆ ସାହିତ୍ୟର ସବୁ କାଳରେ ସରକାରୀ ଚାକିରିଆ ଶ୍ରେଣୀ ପର୍ଯ୍ୟାପ୍ତ ନାମ କମାଇଛନ୍ତି । ରାଧାନାଥଙ୍କ ସମୟରେ କ'ଣ ଓଡ଼ିଶା ସାହିତ୍ୟ ଏକାଡ଼େମି, କେନ୍ଦ୍ର ସାହିତ୍ୟ ଏକାଡ଼େମି, ସରସ୍ୱତୀ, ପୁରସ୍କାର ଥିଲା ଯେ ସେ ଅକ୍ତିଆର କରିଥାନ୍ତେ ? ପରବର୍ତ୍ତୀ କାଳରେ ସିନା ସେ ସମସ୍ତ ସୃଷ୍ଟି ହେଲା । ଓଡ଼ିଶା ସାହିତ୍ୟ ଓ କେନ୍ଦ୍ର ସାହିତ୍ୟ ପୁରସ୍କାରକୁ ଛାଡ଼ିଦେଲେ ବେ-ସରକାରୀ ସ୍ତରର ସାହିତ୍ୟିକକୁ ଏତେ ମୋଟା ଅଙ୍କର ପୁରସ୍କାର କ'ଣ ମିଳି ପାରିଲା ? ଗୋପୀନାଥ ମହାନ୍ତିଙ୍କଠାରୁ ସୀତାକାନ୍ତ ଓ ରମାକାନ୍ତ ପର୍ଯ୍ୟନ୍ତ ସବୁତ ସେଇ ଚାକିରିଆ ଗୋଷ୍ଠୀଙ୍କର କରଗତ ହୋଇଛି । ସେ ସମସ୍ତ ବାହାଦୁରୀ ପଣିଆ । ବେ-ସରକାରୀ ସ୍ତରୀଆ ସୁରେନ୍ଦ୍ର, ଅଖିଳ, ମନୋଜ ଓ ରାଜକିଶୋର ସେ ସବୁର ପାଖ ମାଡ଼ି ପାରିନାହାନ୍ତି ଏକଥା ଅନେକଙ୍କୁ ବାଧିବ ।



ମାତ୍ର ତାହାହିଁ ନିଛକ ସତ । ସୁରେନ୍ଦ୍ର ମହାନ୍ତି ଥରେ ବିଷୁବ ମଣ୍ଡପରେ କହିଥିବାର ମନେ ପଡୁଛି, କେହି କ'ଣ ଏତେ ବଡ଼ ବଡ଼ ପୁରସ୍କାର ବିଜେତା ହୋଇବି ଫକୀର ମୋହନଙ୍କୁ ଟପି ପାରିଲେଣି ?'' ସେ ଓ ରାଜ କିଶୋର କିନ୍ତୁ ଟପି ପାରିଛନ୍ତି । ସେମାନଙ୍କୁ ଉପରକୁ ଉଠାଇବାକୁ ସରକାରୀ ସୁଯୋଗ ଥିଲା ନା ମଣିଷ ବାହାରିଲେଣି ? ମତାମତ ତ ଦେବେ ସେଇ ସରକାରୀ ସ୍ତରୀୟ ଅଧ୍ୟାପକୀୟ ଗୋଷ୍ଠୀ । ତାଙ୍କ ପାଇଁ ପ୍ରମୋସନ ଓ ଅନ୍ୟାନ୍ୟ ସୁବିଧା ସଚିବ ଶ୍ରେଣୀୟ ବ୍ୟକ୍ତି ବିଶେଷଙ୍କ ହାତ ମୁଠାରେ । ସ୍ୱାଧୀନ ଭାବରେ ବଞ୍ଚି ଶିଖିଥିବା ମଣିଷ ପାଇଁ ସେ ସୁଯୋଗ ଏ ଦେଶରେ କାହିଁ ?

ଓଡ଼ିଆ ଭାଷା କହିଲେ ସାହିତ୍ୟକୁ କେବଳ ବୁଝାଏ ନାହିଁ । ଓଡ଼ିଆ ସଂଖ୍ୟାକୁ ବି ବୁଝାଏ । ଏ ସଂଖ୍ୟା ହଜିବାକୁ ବସିଲାଣି । ଜନ୍ମଠାରୁ ପାନବିକାଳି ଯାଏ ନିମନ୍ତ୍ରଣ ପତ୍ର ସବୁ ଇଂରାଜୀରେ ଛପାଇବା ଆରମ୍ଭ କଲେଣି ଏଇ ଅଶିଦଶକରୁ । ନିର୍ବୋଧ କେଇଟା ଓଡ଼ିଆ ଭାଷା ବଞ୍ଚି ରହୁ, ଚିତ୍କାର କରୁଛନ୍ତି । ଇଂରାଜୀ ନିମନ୍ତ୍ରଣ ପତ୍ର ଗ୍ରହଣ କରିବେ ନାହିଁ କି ନିମନ୍ତ୍ରଣ ରକ୍ଷା କରାଯିବ ନାହିଁ, କାହାତୁଣ୍ଡ ଖୋଲୁ ନାହିଁ ।

ରାଜୁବାବୁ କେବଳ ସାହିତ୍ୟ କେଇଧାଡ଼ି ସୃଷ୍ଟି କରି ଯାଇ ନାହାନ୍ତି ଆଙ୍ଗୀକାର ନଥାଇ । ଭାଷା ସମୃଦ୍ଧିର ଅଙ୍ଗୀକାର ସହ ସୃଷ୍ଟି ବି ଅନେକ । ପ୍ରେସ୍ ଓ ପାଠାଗାର କରି ପାଠକ ସୃଷ୍ଟି କରିବାକୁ ଅନେକ ପ୍ରୟାସ ତାଙ୍କର । ଥାକ ଥାକ ବହି ବାଣ୍ଟି, ଚିଟାଉ ଲେଖି, ପ୍ରଚାର ପତ୍ର ବାଣ୍ଟି ଅର୍ଜିତ ଅର୍ଥକୁ ଫୁଙ୍କି ଦେଇଛନ୍ତି, ନିଜର ଅଭାବ ଥାଇବି କାହା ଦ୍ୱାରକୁ ଯାଇ ନାହାନ୍ତି, ସହାୟତା ଲୋଡ଼ିବାକୁ, ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ଘଟାଇବାକୁ । ମୁଖ୍ୟମନ୍ତ୍ରୀ ଭାଇର କୃପା ଭିକ୍ଷା କରିନାହାନ୍ତି ସରକାରୀ ଓକିଲଟାଏ ହେବାକୁ, ଜଜ୍ ହେବାକୁ ବା ଏକାଡେ଼ମିର ସଭାପତି ହେବାକୁ । ତାଙ୍କ ପାଇଁ ଶୋକରେ ଗଦ୍‌ଗଦ୍ ହୋଇଥିବା ବହୁ ବ୍ୟକ୍ତି ସେ ସମସ୍ତ ହାସଲ କରି ନେଇଛନ୍ତି, ନସର ପସର ହୋଇ ।

ଅମାନିଆଁ, ଅଲଗା ଦରର ମଣିଷ ନ ହେଲେ, ଏକଲା ଚାଲି ନ ପାରିଲେ କଣ କିଏ ମଣିଷ ପଣିଆର ସ୍ୱାଦ ବାରିପାରେ ? ସେଥିପାଇଁ ସେ ଏକ ଖାପଛଡ଼ା ମଣିଷ ହୋଇ ରହିଲେ ଓ ସେଇ ଏକଲା ଚାଲିବାର ଜିଦ୍ ମନରେ ଦମ୍ଭର ସହ ବାନ୍ଧିରଖି, ଖାନନଗର ଚିତାରେ ଜଳି ଗଲେ । ତାଙ୍କୁ ଓଡ଼ିଆଏ ପଚାରି ନାହାନ୍ତି । ସେ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ନିଃଶେଷ ହୋଇ ଯାଇ ଥିଲେବି । ଯେପରି ମଧୁସୂଦନ ଉତ୍କଳଟାନେରୀ ଓ ତାରକଷିର ସ୍ୱପ୍ନ ଦେଖି ସେଇଥିରେ ବୁଡ଼ି ଯାଇଥିଲେ ।

ସବୁ କରି ବି ରାଜୁବାବୁ ମସ୍ତବଡ଼ ଭୁଲ୍‌ଟାଏ କରି ଚାଲିଗଲେ । ସେ ଏ ଜାତି ପାଇଁ ଉଇଲ୍‌ଟାଏ କରି ରଖିଦେଇ ଯାଇ ପାରିଲେ ନାହିଁ ଯେ ଏ ଜାତି ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ପାରିବ ନାହିଁ । ନିଲଠା ଜାତିଟାର ଛାତିରେ ଗୋଟାଏ ଶକ୍ତ ବିଧା ମାରିବାର ଥିଲା । ସେ ପାରିଥାନ୍ତେ ।

ହରିପୁରରୋଡ଼, କଟକ-୧



# ଓଡ଼ିଆ ସାହିତ୍ୟଜଗତର ସ୍ୱର୍ଦ୍ଧିତ ରାଜପୁତ୍ର -ରାଜକିଶୋର

**ଶ୍ରୀ ବ୍ରଜନାଥ ରଥ**

ତା ୨୪-୨-୯୫ ରିଖ ଦିନ ହଠାତ୍ ଖଣ୍ଡିଏ ଚିଠି ପାଇଲି । ଚିଠିଟି ଆସିଥିଲା କଟକରୁ ଏବଂ ତାରିଖ ପଡ଼ିଥିଲା ୨୨.୨.୯୫ । ଲେଖିଥିଲେ 'ରାଜକିଶୋର' । ହଁ, ଏ ରାଜକିଶୋର ପଟ୍ଟନାୟକ ନିଶ୍ଚୟ; କାରଣ ତଳେ ଇଂରାଜୀରେ ଯେଉଁ ଠିକଣା ଥିଲା, ତହିଁରୁ ମୁଁ ତାହାହିଁ ଅନୁମାନ କରିଥିଲି । ଏହାର ଅଳ୍ପ ଦିନ ପୂର୍ବରୁ ସବୁଜ ସାହିତ୍ୟିକ ଗୋଷ୍ଠୀଙ୍କ ଅନ୍ତରଙ୍ଗ ବନ୍ଧୁ ତଥା ସୁସାହିତ୍ୟିକ ହରିଶ୍ଚନ୍ଦ୍ର ବଡ଼ାଲ୍‌ଙ୍କର ବିୟୋଗ ଘଟିଥାଏ ପରିଣତ ବୟସରେ ଭୁବନେଶ୍ୱରଠାରେ । ଏକଦା ହରିଶ୍ଚନ୍ଦ୍ର ବଡ଼ାଲ୍ ସବୁଜ ସମସାମୟିକ ଜଣେ ବିଖ୍ୟାତ ଲେଖକ ଭାବରେ ପ୍ରତିଷ୍ଠାଲାଭ କରିଥିଲେ । ତାଙ୍କର ବହୁ ଗଳ୍ପ, କବିତା, ରମ୍ୟ ରଚନା, ନିବନ୍ଧ, ଆଲୋଚନା ଇତ୍ୟାଦି ସେତେବେଳର ପ୍ରତିଷ୍ଠିତ ସାହିତ୍ୟପତ୍ର 'ଉତ୍କଳ ସାହିତ୍ୟ', 'ସହକାର', 'ମୁକୁର', 'ଯୁଗବୀଣା' ପ୍ରଭୃତିରେ ନିୟମିତ ଭାବରେ ପ୍ରକାଶ ପାଉଥିଲା । ପରେ 'ଝଙ୍କାର'ରେ ମଧ୍ୟ ସେ ବହୁ ଗଳ୍ପ ଲେଖିଥିଲେ । ସେ ବାଲେଶ୍ୱର ସହରର ଅଧିବାସୀ ହୋଇଥିବାରୁ ଏବଂ ଅଳ୍ପକାଳ ପାଇଁ ଫକୀରମୋହନ ସାହିତ୍ୟ ପରିଷଦର ସଭାପତି ଥିବାରୁ ଆମେ ସାହିତ୍ୟ ପରିଷଦ୍ ପକ୍ଷରୁ ତାଙ୍କ ବିୟୋଗରେ ଏକ ଶୋକସଭାର ଆୟୋଜନ କରିଥିଲୁ । ସେ ସମ୍ବାଦ 'ସମାଜ'ରେ ୨୨.୨.୯୫ରେ ପ୍ରକାଶ ପାଇଥିଲା । ସେହି ଖବର ପଢ଼ି ଉକ୍ତ ଚିଠିଟି ମୋତେ ଲେଖିଥିଲେ ରାଜୁ ପଟ୍ଟନାୟକ । ଚିଠିଟି ଥିଲା ଏହିପରି -

କଟକ
୨୨.୨.୯୫

**ହରିଶଚନ୍ଦ୍ର ବଡ଼ାଲଙ୍କ ବିଷୟରେ**

ମାନନୀୟ ମହାଶୟ,

୩୦/୩୧ଟି ଜିଲ୍ଲାର ଲେଖକ ବା ଓଡ଼ିଶାର ଲେଖକ କୁନ୍ତଳାକୁମାରୀ, ବାଙ୍କନିଧି ପଟ୍ଟନାୟକ, ହରିଶ୍ଚନ୍ଦ୍ର ବଡ଼ାଲ୍ ଆଦିଙ୍କ କୃତୀ ପୁନରୁନ୍ମୋଚନ ୧୯୯୫ରେ କି କାମରେ ଲାଗିବ ?



କର୍ମକର୍ତ୍ତାଙ୍କର ଭାବମୂର୍ତ୍ତି ଭଲ କରିପାରେ, ଅବକ୍ଷୟମାନ ଓ : ସାହିତ୍ୟର କିଛି ଲାଭ ନାହିଁ । ଓ : ସାହିତ୍ୟ କହିଲେ ଅନ୍ୟ ସାହିତ୍ୟର Adaption ମାତ୍ର; ଓ : ଲେଖକ ଓଡ଼ିଆ ନହୋଇ ଅନ୍ୟ ସଂସ୍କୃତିର ଆରାଧକ ମାତ୍ର ।

ଓ : ସାହିତ୍ୟକୁ ବାଦଦେବା ଭଲ ନୁହେଁ କି ?

ରାଜକିଶୋର

ଚିଠିଟି ପଢ଼ି ମୁଁ ଟିକିଏ ଥମ୍ କରି ବସିଗଲି । ଏ କ'ଣ ଲେଖିଛନ୍ତି ରାଜୁବାବୁ ? ଆମେ କ'ଣ ଆମର 'ଭାବମୂର୍ତ୍ତି ଭଲ କରିବା' ପାଇଁ ଶୋକସଭାରେ ହରିଶ ବଡ଼ାଲ୍‌ଙ୍କ ଗୁଣଗାନ କରିଥିଲୁ ? ପ୍ରଥମେ ନିହାତି ଖରାପ ଲାଗିଲା । ମନେ ମନେ ରାଜୁବାବୁଙ୍କ ଏଭଳି ରୋକ୍‌ଠୋକ୍ କଥାପାଇଁ ତାଙ୍କ ପ୍ରତି ରାଗ ବି ଜନ୍ମିଲା । କିନ୍ତୁ କିଛି ସମୟ ପରେ ଚିଠିଟିକୁ ଦୁଇ ତିନିଥର ପଢ଼ିବା ପରେ ହଠାତ୍ ବୋ' ମନରେ ଯେଉଁ କ୍ରୋଧ ଜନିତ ପ୍ରତିକ୍ରିୟା ହୋଇଥିଲା, ତାହା ଆପେ ଆପେ ଶୂନ୍ୟଡିଗ୍ରୀକୁ ଖସି ଆସିଲା । ଭାବିଲି କେତେ ସତକଥା ନ ଲେଖିଛନ୍ତି ? ସବୁବେଳେ ବେପରୱା ଓ ରୋକ୍‌ଠୋକ୍ ଭାବରେ ଜବାବ ଦେଉଥିବା ଏହି ନିଃସଙ୍ଗ କଥାଶିଳ୍ପୀ 'ରାଜକିଶୋର'; ଅର୍ଥାତ୍ ଆମର ବହୁପରିଚିତ ରାଜୁ ପଟ୍ଟନାୟକ ! କୁନ୍ତଳାକୁମାରୀ ସାବତ, ବାଙ୍କନିଧି ପଟ୍ଟନାୟକ, ହରିଶ୍ଚନ୍ଦ୍ର ବଡ଼ାଲ୍ ଆଦି ଆମ ପାଖରେ ଏକାନ୍ତ ଅପାଙ୍‌କ୍ତେୟ ହୋଇଗଲେଣି । ଆମେ ସେମାନଙ୍କୁ ଏକପ୍ରକାର ଭୁଲି ଗଲୁଣି । ସେମାନଙ୍କ ଲେଖା ଆଉ ଛପା ଯାଉ ନାହିଁ । ସାହିତ୍ୟ ସମୀକ୍ଷକ ଓ ଆଲୋଚକମାନେ ସେମାନଙ୍କୁ ଆଉ ଗୁରୁତ୍ୱ ଦେଉ ନାହାନ୍ତି । ସାହିତ୍ୟର ଇତିହାସକାରମାନେ ସେମାନଙ୍କ ବିଷୟରେ ଏକପ୍ରକାର ନୀରବ । ଅଥଚ ଦିନଥିଲା ଯେତେବେଳେ ସେମାନେ ଏ ଭାଷା-ସାହିତ୍ୟର କୋଣାର୍କ ଗଢ଼ିବାରେ ନିଜର ଲେଖନୀ ରୂପକ ନିହାଣକୁ କାମ୍ ଚଳାଇ ନାହାନ୍ତି । କିଛି କମ୍ କାରୁକାର୍ଯ୍ୟରେ ଚିତ୍ରିତ ଓ ବିମଣ୍ଡିତ କରି ନାହାନ୍ତି ଏ ଜାତିର ସାହିତ୍ୟ-କୋଣାର୍କ ! କିନ୍ତୁ ଆଜିର ସାହିତ୍ୟ-ଦରବାରରେ ସେହି ଗତାୟୁ ସାହିତ୍ୟ-ଶିଳ୍ପୀମାନେ ଏକ ପ୍ରକାର ଅବହେଳିତ, ବିସ୍ମୃତ । ଏହା ହିଁ ସ୍ୱାଭିମାନୀ କଥାଶିଳ୍ପୀ ରାଜକିଶୋରଙ୍କୁ ବ୍ୟଥିତ କରିଛି । ନିଜ ଜୀବନରେ ମଧ୍ୟ ସେ ଏହିମାନଙ୍କ ଭଳି ଅସୂୟା ଓ ଅବହେଳାର ଶିକାର ମଧ୍ୟ ହୋଇଛନ୍ତି । ଅଥଚ 'ଅନ୍ୟ ସାହିତ୍ୟରୁ 'Adaptation' (ଆହରଣ) କରୁଥିବା, 'ଅନ୍ୟ ସଂସ୍କୃତିର ଆଧାରକ ମାତ୍ର' ସାଜିଥିବା କିଛି ଓଡ଼ିଆ ଲେଖକ 'ଦିଗ୍‌ଗଜ' ବୋଲାଇ ଓଡ଼ିଆ ସାହିତ୍ୟର ସ୍ୱର୍ଣ୍ଣ ସିଂହାସନରେ ବସି, ଅଭିଷେକୋତ୍ସବ ପାଳନ କରି 'ସୁନିଆ ଭେଟି' ଗୋଟାଇବାରେ ବ୍ୟସ୍ତ । କେତେ ଦୁଃଖରେ, ମର୍ମବେଦନାରେ, ସ୍ୱର୍ଦ୍ଧିତ ଅଭିମାନରେ ରାଜୁବାବୁ ଏହି ଛୋଟ ଚିଠିରେ 'ଓଡ଼ିଆ ସାହିତ୍ୟକୁ ବାଦ ଦେବା ଭଲ ନୁହେଁ କି ?'





ବୋଲି ମୋତେ ସେଦିନ ଲେଖିଥିଲେ, ଯାହାର ମର୍ମ ମୁଁ ପର ମୁହୂର୍ତ୍ତରେ ବେଶ୍ ବୁଝିପାରିଥିଲି । ଏକ ଅନ୍ତର୍ନିହିତ କାରୁଣ୍ୟବୋଧ ଉକ୍ତ ଚିଠିଟିର ପ୍ରତିଟି ଅକ୍ଷରରେ ଝଲକବାଟି ଭିତରୁ ଉଙ୍କିମାରୁଥିଲା । ଚିରକାଳ ସ୍ୱାଭିମାନୀ, ନିର୍ଭୀକ, ଖୋଲାପଣିଆର ଅକପଟ ବ୍ୟକ୍ତିତ୍ୱ ରାଜୁ ପଟ୍ଟନାୟକ ମୋତେ ଲେଖିଥିବା ଚିଠିଟି ଜରିଆରେ ଯେମିତି ଆମ ସମୟର ପ୍ରତିଟି ଲେଖକକୁ ଶକ୍ତ ଚାବୁକ୍ ମାରିଛନ୍ତି ବୋଲି ମୋର ମନେହେଲା ।

ଏହାପରେ ଦୁଇବର୍ଷରୁ ଅଧିକ କାଳ ଚାଲିଯାଇଛି । କଟକ ଗଲେ ତାଙ୍କୁ ଦେଖା କରିବି ବୋଲି ବହୁବାର ଭାବିଛି । କଟକ ଯାଇଛି ମଧ୍ୟ । କିନ୍ତୁ ସମୟାଭାବରୁ ତାଙ୍କୁ ଦେଖା କରିବା ସମ୍ଭବ ହୋଇପାରି ନାହିଁ । ସେଦିନ ଖବରକାଗଜରୁ ଦେଖିଲି ଏକ ଖବର 'ଚଳିତବର୍ଷର ସମ୍ମାନଜନକ ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରବୀଣ କଥାଶିଳ୍ପୀ ରାଜକିଶୋର ପଟ୍ଟନାୟକଙ୍କୁ ତାଙ୍କ ଅସୁସ୍ଥତା ବଶତଃ ଏକ ନିରାଡମ୍ବର ପରିବେଶରେ ତାଙ୍କ ବାସଭବନରେ ଏକାଡେମୀର ସଭାପତି ଶ୍ରୀ କିଶୋରୀ ଚରଣ ଦାସଙ୍କ ଦ୍ୱାରା ପ୍ରଦତ୍ତ ହେଲା ।' ଖୁବ୍ ଖୁସି ହୋଇଥିଲି ସେଦିନ । ରାଜୁବାବୁ ପୁରସ୍କାର ପାଇଥିବା ଯୋଗୁଁ ଯେତେ ନୁହେଁ, ପୁରସ୍କାର ଓ ପୁରସ୍କାରଦାତାଗଣ ତାଙ୍କ ପାଖକୁ ଆସି ତାହା ପ୍ରଦାନ କରିଥିବା ଯୋଗୁଁ । 'ରାଜୁ ପଟ୍ଟନାୟକ' କେବେ ପୁରସ୍କାର ପଛରେ ଗୋଡ଼ାଇ ନାହିଁ, ସେଥିପାଇଁ ଲବି କରିନାହିଁ । ପୁରସ୍କାର ଦାତାଙ୍କ ପ୍ରିୟ ହେବା ପାଇଁ ମିଠାକଥା କହି ତୈଳମର୍ଦ୍ଦନ କରିନାହିଁ; ବରଂ ସବୁବେଳେ ଏହା ବିରୋଧରେ ସ୍ପଷ୍ଟ ଭାବରେ ଖୋଲାଖୋଲି ଭାବରେ କହିଛି । ପୁରସ୍କାର ମିଳିଲେ କେତେ, ନ ମିଳିଲେ କେତେ ! ରାଜୁ ପଟ୍ଟନାୟକ, ରାଜୁ ପଟ୍ଟନାୟକ । କଲମର ଜୋର୍ ଅଛି ତ, ସେହି ଢେର୍ । ପାଠକ ପଢ଼ି ବାଃ ବାଃ କରୁଛନ୍ତି ତ ଖୁବ୍ ଭଲ । କିନ୍ତୁ ଦିନ ଆସିଲା; ପୁରସ୍କାର ପଛରେ ଗୋଡ଼ାଇନଥିବା ସ୍ୱାଭିମାନୀ ଲେଖକଟି ପାଖକୁ ନିଜେ ପୁରସ୍କାର ଗୋଡ଼ାଇ ଗୋଡ଼ାଇ ଆସିଲା । ସେ ପୁରସ୍କାର ପାଖକୁ ଯାଇନାହିଁ – ପୁରସ୍କାର ତା' ପାଖକୁ ଆସିଛି । ହୁଏତ ଏହା ଜୀବନର ଶେଷ ସୂର୍ଯ୍ୟାସ୍ତର ଅଳ୍ପ କେତେ ମୁହୂର୍ତ୍ତ ଆଗରୁ ସମ୍ଭବ ହେଲା । କିନ୍ତୁ ସେଥିରେ ଯାଏ କେତେ, ଆସେ କେତେ ? ରାଜୁ ପଟ୍ଟନାୟକ ସ୍ୱାଭିମାନୀ, ରାଜୁ ପଟ୍ଟନାୟକ ଆତ୍ମବିଶ୍ୱାସୀ । ସେଥିପାଇଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ଏକ ଆଦର୍ଶ ହୋଇ ରହଗଲେ । ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ରଖିଗଲେ । ପୁରସ୍କାରଲୋଭୀ ଲେଖକମାନଙ୍କୁ ଅଲକ୍ଷ୍ୟରେ ଦେଇଗଲେ ଏକ ଅଦୃଶ୍ୟ ଅଥଚ କଠୋର ଚପେଟାଘାତ ।

ଏହି ରାଜୁ ପଟ୍ଟନାୟକ ଓରଫ୍ ରାଜକିଶୋର ପଟ୍ଟନାୟକଙ୍କୁ ଜାଣିବାର ସୁଯୋଗ ପାଇଥିଲି ପ୍ରାୟ ପଚାଶ ବର୍ଷ ତଳେ । ସେତେବେଳେ ସେ ନିୟମିତ ଗପ ଲେଖୁଥିଲେ



ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ । ମୁଁ ସହକାର, ଡଗର, ଝଙ୍କାର ଇତ୍ୟାଦି ପତ୍ରିକା କିଣୁଥିଲି ଏବଂ ତାଙ୍କ ଗପଗୁଡ଼ିକ ପଢ଼ିବାର ସୁଯୋଗ ପାଉଥିଲି । ଯେତେବେଳେ ମାଟ୍ରିକ୍ ଶ୍ରେଣୀ ଛାତ୍ର ଥିଲି, ସେତେବେଳେ ତାଙ୍କର ପ୍ରଥମ ଗଳ୍ପ ସଂକଳନ (ଯାହା ୧୯୩୬ରୁ ୩୮ ମଧ୍ୟରେ ଲେଖା ହୋଇ ୧୯୪୫ରେ ପ୍ରଥମେ ପ୍ରକାଶ ପାଇଥିଲା) 'ତୁଠପଥର' ଆମର ଓଡ଼ିଆ (M.I.L.)ର ଅତିରିକ୍ତ ପାଠ୍ୟପୁସ୍ତକ ଭାବରେ ପଢ଼ା ହେଉଥିଲା । କବି ରାଧାମୋହନ ଗଡ଼ନାୟକଙ୍କ 'ଉତ୍କଳିକା' ଥିଲା କବିତା ବିଭାଗର ଅତିରିକ୍ତ ପାଠ୍ୟପୁସ୍ତକ । 'ତୁଠପଥର' ଓ 'ଉତ୍କଳିକା' ସେହି କିଶୋର ବୟସରେ ଗଳ୍ପ ଓ କବିତାର ରସାସ୍ୱାଦନ ପାଇଁ ଯେଉଁ ଅଭିରୁଚି ସୃଷ୍ଟି କରୁଥିଲା, ଆଜି ଜୀବନର ଏହି ପଶ୍ଚିମ ଦିଗନ୍ତ ଆଡ଼କୁ ମୁହାଁଇ ଥିଲା ବେଳେ ମୁଁ ଅବଶ୍ୟ ସ୍ୱୀକାର କରିବି ସେହି ସାହିତ୍ୟିକ ଅଭିରୁଚି ହିଁ ମୋର ସାରା ଜୀବନକୁ ପ୍ରଭାବିତ କରିଛି । 'ତୁଠପଥର'ର 'ଘାସ' ଗପ କେଉଁକାଳରୁ ପଢ଼ିଥିଲି; କିନ୍ତୁ ଆଜି ସୁଦ୍ଧା ମନ ଉପରେ ତା'ର ଜୀବନ୍ତ ଛାପ ଅଙ୍କିତ ରହିଛି । ଭାଷାର ଆଡ଼ମ୍ବର ନାହିଁ । ଶବ୍ଦର ବର୍ଣ୍ଣିଳ ବିନ୍ୟାସ ନାହିଁ; କାହାଣୀର ଚମତ୍କାରିତା ନାହିଁ; ପରିବେଷଣରେ ନାଟକୀୟତା ନାହିଁ; ତଥାପି କାହିଁକି କେଜାଣି ଖାଲି 'ଘାସ' ନୁହେଁ, 'ତୁଠପଥର'ର ପ୍ରତିଟି ଗପରେ ଏକ ପ୍ରକାର କିମିଆ ଥିଲା, ଯାହା ପାଠକକୁ ମୁଗ୍ଧ କରିଦିଏ । ଟିକିଏ ଟିକିଏ ସାଧାରଣ କଥାକୁ ନେଇ, ସାମାନ୍ୟ ଚରିତ୍ରକୁ ନେଇ ସହଜ-ସରଳ ଭାଷାରେ, ବିନା ଆଡ଼ମ୍ବରରେ ତାହାକୁ ଅସାଧାରଣ ଓ ଅସାମାନ୍ୟ କରି ଗଢ଼ିପାରିବାର ଅଦ୍ଭୁତ ଲେଖକୀୟ ହାତ ପାଇଥିଲେ ରାଜୁବାବୁ । ସହଜ-ସରଳ ଭାବ ଓ ଭଙ୍ଗୀ ଯେ ଏକ ସୌଖିନ ଅଭିଜାତ୍ୟ ଥାଇପାରେ, ତାହା ସୃଷ୍ଟି କ୍ଷେତ୍ରରେ ସେ ପ୍ରମାଣ କରିଗଲେ । ନିଜ ସୃଷ୍ଟିରେ ସେ ଅନନ୍ୟ; ଯେମିତି ଅନନ୍ୟ ଆପଣାର ଅଭିଜାତ ବ୍ୟକ୍ତିତ୍ୱରେ ଏବଂ ସ୍ପଷ୍ଟବାଦୀ ସ୍ୱାଭିମାନୀ ଚରିତ୍ରରେ ।

କିଶୋର ବୟସରେ ରାଜୁବାବୁଙ୍କୁ ଚିହ୍ନିଥିଲି ତାଙ୍କ ଗଳ୍ପ ମାଧ୍ୟମରେ, କିନ୍ତୁ ମଣିଷ ଭାବରେ ଚିହ୍ନିଲି ତରୁଣ ବୟସରେ । ଯେତେବେଳେ ନିଜେ କଲମ ଧରି ଓଡ଼ିଆ ସାହିତ୍ୟ ଜଗତକୁ ଜଣେ ନବାଗତ ଭାବରେ ପ୍ରବେଶ କଲି । ୧୯୫୬ ମସିହାର କଥା । ସାହିତ୍ୟିକ ବନ୍ଧୁ ଯଦୁନାଥ ଦାଶ ମାହାପାତ୍ର ଓ ମିଳିତଭାବରେ ସଂକଳନ କଲୁଁ ଏକ କବିତା ସଂଚୟନ ''ଧରିତ୍ରୀ'' । ସେତେବେଳର ୩୨ ଜଣ ତରୁଣ ଓ ଯୁବ କବିଙ୍କର କବିତାର ସମଷ୍ଟି । ତା' ପୂର୍ବରୁ ଏତେଜଣ କବିଙ୍କ ନିର୍ବାଚିତ କବିତାକୁ ନେଇ ଏଭଳି କବିତା ସଂକଳନ ପ୍ରକାଶ ପାଇନଥିଲା । ବହିଟି ପ୍ରକାଶ ପାଇବା ପରେ ଆମେ ମହା ସମସ୍ୟାରେ ପଡ଼ିଲୁଁ । କାରଣ ତା'ର ପ୍ରଚାର ତଥା ପ୍ରସାର ପାଇଁ ଆମ ଆଗରେ କୌଣସି ମାଧ୍ୟମ ନଥିଲା । କଟକର ପ୍ରତିଷ୍ଠିତ ପୁସ୍ତକ ବ୍ୟବସାୟୀମାନେ ମଧ୍ୟ ଏହାର ବିକ୍ରିଦାୟିତ୍ୱ ନେବାକୁ କୁଣ୍ଠା ପ୍ରକାଶ କଲେ । ଠିକ୍ ସେତିକିବେଳେ ଖବର ପାଇଲୁ ଯେ ରାଜୁବାବୁ ଓ ତାଙ୍କ ସ୍ୱନାମଧନ୍ୟା ଲେଖିକା

ଭଉଣୀ ବସନ୍ତ କୁମାରୀ ପଟ୍ଟନାୟକ 'ଶାନ୍ତିନିବାସ ବାଣୀ ମନ୍ଦିର' ନାମରେ ପୁସ୍ତକ ପ୍ରତିଷ୍ଠାନଟିଏ ଆରମ୍ଭ କରିଛନ୍ତି ଏବଂ ଲେଖକମାନଙ୍କ ବହି ବିକ୍ରିରେ ସାହାଯ୍ୟ କରୁଛନ୍ତି । ମରୁଭୂମିରେ ମରୁ-ନିର୍ଝର ସଂଧାନ ପାଇଲୁ ଯେମିତି । ମୁଁ ରାଜୁବାବୁଙ୍କୁ ଚିଠି ଲେଖିଲି । ଅତି ଭଦ୍ରୋଚିତ ଆଗ୍ରହରେ ସେ ମୋତେ ଲେଖିଲେ କିଛି ବହି ନେଇ ତାଙ୍କୁ ଦେଖା କରିବା ପାଇଁ । ସେହି ଅନୁସାରେ ସଦ୍ୟପ୍ରକାଶିତ 'ଧରିତ୍ରୀ' କବିତା ସଂକଳନରୁ କେତେଖଣ୍ଡ ଧରି ମୁଁ ଯାଇ ହାଜର ହେଲି ରାଜୁବାବୁଙ୍କ ଘରେ । ଭାଇ ଭଉଣୀ ଦୁହେଁ ଅତି ଆଗ୍ରହରେ ମୋ ପାଖରୁ ବହିତକ ରଖି ବହିଦୋକାନ ପେଡ଼ରେ ରସିଦଟିଏ ଲେଖିଦେଲେ ଏବଂ ବହି ଯାହା ବିକ୍ରି ହେଉଥିବ ତା'ର ମୂଲ୍ୟରୁ କମିଶନ (ଯାହା ଅନ୍ୟମାନଙ୍କଠାରୁ ଯଥେଷ୍ଟ କମ୍) କାଟି ଅବଶିଷ୍ଟ ଟଙ୍କା ମଝିରେ ମଝିରେ ପଠାଇ ଦେବେ ବୋଲି କହିଲେ । ତା' ପରେ ଚାଲିଲା ଗପ । ଚା-ଜଳଖିଆର ଆସର ବି ଜମିଲା । ସେ ଭାଇ-ଭଉଣୀ ଦି' ଜଣଙ୍କ ଅମାୟିକ ବ୍ୟବହାର ଓ ଲେଖକୀୟ ସୌଜନ୍ୟରେ ମୁଁ ମୁଗ୍ଧ ହୋଇଗଲି । ସେମାନେ ମୋଠାରୁ ବୟସରେ ୧୫ରୁ ୨୦ ବର୍ଷ ବଡ଼ । ପୁଣି ଖ୍ୟାତି ଓ ପ୍ରତିଷ୍ଠାରେ ସେତେବେଳକୁ ସେମାନେ ଶୀର୍ଷରେ । ମୁଁ ସାହିତ୍ୟ ଜଗତରେ ନବାଗତ ମାତ୍ର । କିନ୍ତୁ ଏହି ବ୍ୟବଧାନକୁ ଭୁଲି ରାଜୁବାବୁ ଓ ବସନ୍ତ କୁମାରୀ ଲେଖକୀୟ ଆତ୍ମୀୟତାରେ ମୋତେ ବାନ୍ଧି ଦେଲେ । ତା'ପରେ ମୁଁ ବହୁବାର ତାଙ୍କୁ ଭେଟିଛି ପୁରୀଘାଟ ରୋଡ଼ର ତାଙ୍କର ସେହି ପୈତୃକ ବାସଭବନରେ । ବିଡ଼ି ଟାଣୁ ଟାଣୁ ଘର ଆଗ ପିଣ୍ଡାରେ ପଡ଼ିଥିବା କେଉଁ ମରହଟ୍ଟା ଅମଳର ରଙ୍ଗଛଡ଼ା ପୁରୁଣା ଚଉକି ଉପରେ ବସି ସେ କଥାର ଖିଅ ମେଲାଇ ଦିଅନ୍ତି । କଥା ଲମ୍ବି ଲମ୍ବିଯାଏ ଢେଙ୍କିଶାଳରୁ ଢେଙ୍କାନାଳ ଯାଏଁ । ସାହିତ୍ୟରୁ ରାଜନୀତି ଯାଏଁ । ମୁଁ ମୁଗ୍ଧ ଶ୍ରୋତା । ତାଙ୍କ କଥାରେ ଏକ ଟାଣ୍ ଥାଏ । କଥକତାରେ ତାଙ୍କୁ ବଳିବା କିଏ ? ବୋଧହୁଏ ଏହି ଅପୂର୍ବ କଥକତା ଗୁଣ ତାଙ୍କ ଗପରେ, ଉପନ୍ୟାସରେ, ଆତ୍ମଜୀବନୀରେ ଅତି ସାବଲୀଳଭାବେ ରୂପାୟିତ । ପ୍ରକୃତରେ ସେ 'କଥାକାର' । କଥା ତିଆରି ପାଇଁ ତାଙ୍କୁ ବିଶେଷ ଭାବିବାକୁ ପଡ଼େନା । ବସିଲେହିଁ କଥାର ଖିଅ ଆପେ ଆପେ ଲମ୍ବି ଆସେ କଲମ ମୁନରେ ନିଜ ଚାରିପାଖରେ ପୃଥିବୀ ହିଁ ତାଙ୍କୁ ଯୋଗାଇ ଦିଅନ୍ତି କଥାର ପ୍ଲଟ ବା ବିଷୟବସ୍ତୁ । ତା' ନହୋଇଥିଲେ ଯଶସ୍ୱୀ ଔପନ୍ୟାସିକ କାହ୍ନୁ ମହାନ୍ତିଙ୍କ କଥାରେ ଗୋଟାଏ ଦିନରେ ବାରଟି ଗପ ଲେଖି ବାଜିମାତ୍ କରିପାରି ନଥାନ୍ତେ । ଏମିତିକା କଥାଶିଳ୍ପୀ ହେଉଛନ୍ତି ରାଜୁ ପଟ୍ଟନାୟକ । ତାଙ୍କର ତୁଳନା ନାହିଁ ।

ଥରେ ଥରେ ରାଜୁବାବୁଙ୍କ ସହ ଭେଟ ହୋଇଚି ପ୍ରଜାତନ୍ତ୍ର ପରିସରରେ—'ବିଷୁବ ମିଳନ'ରେ । ପୁଣି କେବେ ବା ଶ୍ରୀରାମଚନ୍ଦ୍ର ଭବନରେ କୌଣସି ସାହିତ୍ୟ ସଭାରେ । ରାଜୁବାବୁ ମଞ୍ଚକୁ ଉଠିଲେ ଅନ୍ୟମାନଙ୍କ ହୃତ୍‌କମ୍ପ ଜାତ ହୁଏ । କାରଣ ସେ ଯାହା କହନ୍ତି



କାହାକୁ ସନ୍ତୁଷ୍ଟ କରିବା ପାଇଁ ନୁହେଁ । ନିହାତି ସ୍ପଷ୍ଟ ଓ ରୋକ୍‌ଠୋକ୍ । କାହାକୁ ବାଧିଲେ ବାଧୁ, କିଏ କ'ଣ ଭାବିଲେ ଭାବୁ, ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ଯାହା ଠିକ୍ ଭାବିଲେ ତାହାହିଁ କହିବେ । ଟିକିଏ ଏପଟ ସେପଟ ହେବାର ନାହିଁ । ସେ ସ୍ପଷ୍ଟଭାଷୀ, ସେ ଦୁର୍ମୁଖ । ଦ୍ୱିତବ୍ୟକ୍ତିତ୍ୱ ନେଇ ଚାରୁବାକ୍ ହେବା ତାଙ୍କ ଜାତକରେ ନଥିଲା ।

ନିଜ ବହି ନିଜେ ପ୍ରକାଶ କରିଛନ୍ତି, କେବଳ ପ୍ରକାଶକଙ୍କ ଦ୍ୱାରେ ଦାନ୍ତନିକୁଟି ଠିଆ ହେବେ ନାହିଁ ବୋଲି । ଏକ ବିପୁଳ ଆତ୍ମସମ୍ମାନବୋଧରେ ସେ ଆଉଟି ପାଉଟି ହୋଇଛନ୍ତି ଜୀବନର ଶେଷ ନିଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ । ପ୍ରକାଶକଙ୍କ ଅକ୍ଟୋପାସୀ କବଳରୁ ନିଜକୁ ରକ୍ଷା କରିବା ପାଇଁ ଏକ ମହତ୍ ଉଦ୍ଦେଶ୍ୟ ନେଇ ଆଜକୁ ପ୍ରାୟ ଚାଳିଶ ବର୍ଷ ତଳେ ସେ ଯେଉଁ ପୁସ୍ତକ ପ୍ରତିଷ୍ଠାନ "ଶାନ୍ତିନିବାସ ବାଣୀ ମନ୍ଦିର" ନାମରେ ସ୍ଥାପନ କରିଥିଲେ ତାହା ବେଶିଦିନ ସକ୍ରିୟ ରହି ପାରିଲା ନାହିଁ । ପ୍ରକାଶକମାନଙ୍କ ଚକ୍ରବ୍ୟୂହ ଭିତରେ ବିଚରା ଅଭିମନ୍ୟୁ ଯୁଦ୍ଧକଲା ସତ, କିନ୍ତୁ ତିଷ୍ଠି ପାରିଲା ନାହିଁ । ତଥାପି ତାଙ୍କର ଏକାକୀ ସଂଗ୍ରାମ ତାଙ୍କୁ ଅଦ୍ୱିତୀୟ ବୀରର ସମ୍ମାନ ଦେଇଛି । ମୋ ଜାଣିବାରେ କଲିକତାର ବିଖ୍ୟାତ ପ୍ରକାଶନ ସଂସ୍ଥା 'ମିତ୍ର ଏଣ୍ଡ ଘୋଷ' ଦୁଇ ଜଣ ପ୍ରଖ୍ୟାତ ବଂଗୀୟ ଲେଖକଙ୍କ ଦ୍ୱାରା ସ୍ଥାପିତ ହୋଇ ଆଜକୁ ଦୀର୍ଘଦିନ ହେଲା ତିଷ୍ଠି ରହିଛି । ଏହି ପ୍ରକାଶନ ସଂସ୍ଥା ଦ୍ୱାରା ହଜାର ହଜାର ପୁସ୍ତକ ପ୍ରକାଶ ପାଇଛି ଏବଂ ଲେଖକମାନେ ଉପକୃତ ହୋଇଛନ୍ତି । ଉକ୍ତ ପ୍ରକାଶନ ସଂସ୍ଥାର ପ୍ରତିଷ୍ଠାତା ଥିଲେ ଯଶସ୍ୱୀ କଥାଶିଳ୍ପୀ ଗଜେନ୍ଦ୍ର ନାଥ ମିତ୍ର ଓ ଯଶସ୍ୱୀ ଶିଶୁ ସାହିତ୍ୟିକ କମଳ ଚନ୍ଦ୍ର ଘୋଷ (ମୌମାଛି) । ବଙ୍ଗଳାରେ ଦୁଇଜଣ ଲେଖକଙ୍କ ପ୍ରତିଷ୍ଠିତ ପ୍ରକାଶନ ପ୍ରତିଷ୍ଠାନ 'ମିତ୍ର ଏଣ୍ଡ ଘୋଷ' ବଞ୍ଚି ରହିଲା, କିନ୍ତୁ ଆମ ଓଡ଼ିଶାରେ ରାଜବାବୁ ଓ ତାଙ୍କ ଭଉଣୀ ବସନ୍ତ କୁମାରୀଙ୍କ ଉଦ୍ୟମରେ ସ୍ଥାପିତ ପୁସ୍ତକ ପ୍ରତିଷ୍ଠାନ ଆଉ ବଞ୍ଚିରହି ପାରିଲା ନାହିଁ ଲେଖକମାନଙ୍କ ଅସହଯୋଗ ଏବଂ ଅନ୍ୟ ପ୍ରକାଶନମାନଙ୍କ ଚକ୍ରାନ୍ତ ଫଳରେ । ତଥାପି ରାଜୁବାବୁ ଏ କ୍ଷେତ୍ରରେ ଶହିଦ୍ ହୋଇ ଏକ ଦୃଷ୍ଟାନ୍ତ ରଖିଗଲେ । ମରି ବି ସେ ଅମର ।

ଆଉ ଗୋଟିଏ କଥା ପ୍ରାୟ ଚାଳିଶ ବର୍ଷ ପରେ ଏବେ ମୋର ମନେ ପଡ଼େ । ୧୯୫୮ ମସିହାରେ ଚିତ୍ରଶିଳ୍ପୀ ତଥା କଥାଶିଳ୍ପୀ ବନ୍ଧୁ ଦାଶରଥି ପ୍ରାସାଦ ଦାସଙ୍କର ଗୋଟିଏ ଗଳ୍ପ ସଂକଳନ, 'ପ୍ରତିଧ୍ୱନି' ନାମରେ ପ୍ରକାଶ ପାଇଲା । ଏହାର ପ୍ରଥମ ଗଳ୍ପ 'ଶ୍ରୀଚନ୍ଦନ' କୁ ସେ ମୋତେ ଉତ୍ସର୍ଗ କରିଥିଲେ । ଦାଶରଥିବାବୁ ସେତେବେଳେ 'ଶାନ୍ତିନିକେତନ'ର 'କଳାଭବନ'ର ଛାତ୍ର । ତାଙ୍କର ଗଳ୍ପଗୁଡ଼ିକ ସେତେବେଳେ 'ଡଗର' ଇତ୍ୟାଦି ପତ୍ରିକାରେ ପ୍ରକାଶ ପାଇ ବେଶ୍ ସୁନାମ ଅର୍ଜନ କରିଥିଲା । ଏହି ଗଳ୍ପ ସଂକଳନଟିକୁ ସେ ଉତ୍ସର୍ଗ କରିଥିଲେ ଜଣେ ବେନାମୀ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ । ସେଥିରେ ଲେଖାଥିଲା—

ମାନନୀୟେଷୁ,

ଉତ୍କଳ ଶବ୍ଦର ଅର୍ଥ, କଳା ଏବଂ କଳାକାର ଯେଉଁଠି ରୀତିମତ୍ ଉତ୍ପୀଡ଼ିତ ହୁଏ । ଆପଣଙ୍କୁ ସାମନାରେ ରଖି ଏଇ ନୂତନ ଅର୍ଥର ସନ୍ଧାନ ପାଇଛି ବୋଲି ମୋତେ କ୍ଷମା କରନ୍ତୁ । ସ୍ୱପ୍ନ ବିଳାସୀ ବୟସଠାରୁ ନିରାପଦ ଦୂରତ୍ୱରେ ଥାଇ ସୁଦ୍ଧା ଆପଣ ଯେଉଁ ସଫଳ ସ୍ୱପ୍ନ ଦେଖୁଛନ୍ତି, ତାହାହିଁ ମୋ ପାଇଁ ଚରମ ଆଶୀର୍ବାଦ । ମୋର ନମସ୍କାର ଗ୍ରହଣ କରନ୍ତୁ ।

କଳାଭବନ ଦାଶରଥି

ଶାନ୍ତିନିକେତନ, ତା ୧୫।୨।୫୮

ମୋ ଜାଣିବାରେ ଏହା ଯାହାଙ୍କ ଉଦ୍ଦେଶ୍ୟରେ ଲେଖାଯାଇଥିଲା ସେ ହେଉଛନ୍ତି— ''ସ୍ୱପ୍ନ ବିଳସୀ'' ରାଜକିଶୋର ପଟ୍ଟନାୟକ । କାରଣ ସେ ବହୁ ଭାବରେ ବନ୍ଧୁ ଦାଶରଥି ପ୍ରସାଦ ଦାସଙ୍କୁ ସାହାଯ୍ୟ କରିଥିଲେ । ଏପରିକି ଗଳ୍ପ ଲେଖିବାର ପ୍ରେରଣା ମଧ୍ୟ ଦେଇଥିଲେ । ଏମିତି ବହୁ ଲୋକଙ୍କୁ ସେ ପ୍ରେରଣା ଦେଇଛନ୍ତି, ସାହାଯ୍ୟ କରିଛନ୍ତି ପ୍ରଚ୍ଛନ୍ନ ଭାବରେ । ଏକଥା ଯେ ଜାଣିଛି, ସେ ଜାଣିଛି । ବନ୍ଧୁ ଦାଶରଥି ଦାସ, ଶାନ୍ତିନିକେତନରୁ ଲଳିତକଳାରେ ପାଶ୍ କରି ଫେରି 'ଆକାଶବାଣୀ'ରେ ଦୀର୍ଘ କର୍ମମୟ ଜୀବନରୁ ଏବେ ଅବସର ନେଇଛନ୍ତି । ସଂସାର ପାତିଛନ୍ତି—ପ୍ରତିଷ୍ଠା ପାଇଛନ୍ତି (ଅବଶ୍ୟ ଗପଲେଖାରୁ ଦୂରେଇ ଯାଇଛନ୍ତି) । କିନ୍ତୁ ଏକଦା ଯେ ଖୁବ୍ ଭଲ ଗପ ଲେଖୁଥିଲେ, ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ହେବାର ସୁଯୋଗ ପାଇଲେ—ଏହା ନେପଥ୍ୟ ନାୟକ ହେଉଛନ୍ତି ରଜୁବାବୁ । ଏହାହିଁ ରାଜୁବାବୁଙ୍କ ସହୃଦୟତା, ଉଦାରତା ଓ ମଣିଷପଣିଆର ନିଦର୍ଶନ ।

ତା ୧।୧।୧୯୫୧ର ୧୪ଶ ବର୍ଷ ତ୍ରୟୋଦଶ ସଂଖ୍ୟା 'ଡଗର'ରେ ସଂପାଦକ ନିତ୍ୟାନନ୍ଦ ମହାପାତ୍ରଙ୍କ ଅନୁରୋଧରେ ସେ 'ମୁଁ କାହିଁକି ଲେଖେ' ଶିରୋନାମାରେ ଏକ ଲେଖା ଲେଖିଥିଲେ । ସେଥିରେ କହିଥିଲେ— 'କାହିଁକି ଲେଖା ଆରମ୍ଭ କଲି କହିପାରିବି ନାହିଁ । ବୋଧହୁଏ ଯୁବକ ମନ ଆନନ୍ଦରେ ଦିନେ ବସି ଗୁଣୁଗୁଣୁ ହୋଇ ଗାଇଲା ପରି ଭାବର ଆବେଗରେ ଯାହା ଲେଖି ଯାଇଥିଲି ସେହି ମୋର ପ୍ରଥମ ଲେଖା ।' x x x ହଠାତ୍ ମନେ ହେଲା ମୁଁ ଜଣେ ଲେଖକ । କାରଣ ମୋର ଲେଖା ଛାପା ହୋଇ ପାରୁଛି । ପଛକୁ ପଛ ଲେଖି ନଗଲେ କାଳେ ଛାପା ହେବାରେ ବାଧା ଆସିବ ବୋଲି ବଡ଼ ଅଧ୍ୟବସାୟ ସହିତ କେଇ ବର୍ଷ ଲେଖିଲି । ସେହି ଗୁଡ଼ିକରେ ଯୁବକ ମନର, କଅଁଳ ଅନୁଭୂତିର ସବୁରସ ନିଗାଡ଼ି ଦେଇଛି । କୋଟିଏ ଓଡ଼ିଆଙ୍କର ଜଣେ ଲେଖକ ବୋଲି ସୁମାରିକୁ ଆସିଛି । x x x



ପ୍ରବନ୍ଧ, ପଦ୍ୟ ଆଦି ମୋତେ ଜଣାନାହିଁ । x x x କିନ୍ତୁ ଝାଡୁଦାର ସାହିତ୍ୟିକ ହିସାବରେ ମୋର କର୍ତ୍ତବ୍ୟ ମୁଁ ଶେଷ କରିଛି କହିଲେ ଚଳେ ।'' ଆଉ ଠାଏଁ ଲେଖିଛନ୍ତି—'ସରକାରୀ ଲେଖକ ଓ ପ୍ରକାଶକ ତାଲିକାରୁ ବାଦ ପଡ଼ିଛୁଁ । ପାଠକମାନଙ୍କ ପ୍ରିୟ ସାହିତ୍ୟିକ ଶ୍ରେଣୀରୁ କଟି ଯାଇଛୁଁ ।' ଏଥିରୁ ତାଙ୍କ ମନୋଭାବ ସହଜରେ ଜାଣି ହେବ । ସବୁବେଳେ ସ୍ୱାଧୀନମତ ବ୍ୟକ୍ତ କରୁଥିବା ଏହି ସ୍ୱାଭିମାନୀ ସାହିତ୍ୟିକ ମୃତ୍ୟୁର ୨୦ ଦିନ ପୂର୍ବରୁ ଅସୁସ୍ଥାବସ୍ଥାରେ ରୋଗଶଯ୍ୟାରେ ପଡ଼ି ମଧ୍ୟ 'ଅତିବଡ଼ୀ ପୁରସ୍କାର' ପ୍ରଦାନ ଅବସରରେ ଉତ୍ତର ଛଳରେ ଯାହା କହିଥିଲେ ତା'ର ଗୁରୁତ୍ୱ ଆଜି ପ୍ରତ୍ୟେକ ଓଡ଼ିଆ ବୁଝିବା ଆବଶ୍ୟକ । ସେ କହିଥିଲେ—''ଆବଶ୍ୟକ ପ୍ରୋତ୍ସାହନର ଅଭାବ ଏବଂ ବିଦ୍ୟାଳୟ ସ୍ତରରୁ ବିଦେଶୀ ଭାଷା ପ୍ରତି ଅତ୍ୟଧିକ ଆଗ୍ରହ ଯୋଗୁଁ ଓଡ଼ିଆ ଭାଷା ଓ ସାହିତ୍ୟ ସଂପ୍ରତି ବିପନ୍ନ ହୋଇ ପଡ଼ିଛି । ସଂପ୍ରତି ଆମ ରାଜ୍ୟରେ ଦୁଇଲକ୍ଷ ସରକାରୀ ଚାକିରିଆ ଓ ଦୁଇଲକ୍ଷ ପେନ୍‌ସନ୍‌ଭୋଗୀ କର୍ମଚାରୀ ଅଛନ୍ତି । ଏମାନେ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ହୋଇଥିବାରୁ ପ୍ରତ୍ୟେକ ଅନ୍ୟୁନ ଏକଶହ ପୁସ୍ତକ ସମ୍ବଳିତ ଗୋଟିଏ ଲେଖାଏଁ ମିନିଲାଇବ୍ରେରୀ ପ୍ରତିଷ୍ଠା କଲେ ଓଡ଼ିଆ ଭାଷା-ସାହିତ୍ୟ ଅନ୍ତତଃ ବଞ୍ଚିଯାଇ ପାରନ୍ତା । ଏହା ବ୍ୟତୀତ ପ୍ରତ୍ୟେକ ବ୍ୟକ୍ତି ତାଙ୍କର ପିଲାମାନଙ୍କୁ ଓଡ଼ିଆ ଭାଷା ଶିକ୍ଷା ଦେବାକୁ ଆଗ୍ରହ ପ୍ରକାଶ କରିବା ଉଚିତ । ସଂପ୍ରତି ଓଡ଼ିଆ ଭାଷା ଆଞ୍ଚଳିକ ରାଜନୀତିରୁ ନିଜକୁ ମୁକ୍ତ କରି ପାରୁନଥିବାରୁ ଓଡ଼ିଆ ଭାଷାର ଅବସ୍ଥା ଅତ୍ୟନ୍ତ ଦୟନୀୟ ହୋଇ ପଡ଼ିଛି ।'' (ପ୍ରଗତିବାଦୀ ୧୦।୨।୯୭) ଏହାହିଁ ଥିଲା ଜଣେ ଯଶସ୍ୱୀ, ଜାତ୍ୟାଭିମାନୀ, ବର୍ଷୀୟାନ୍ ସାହିତ୍ୟିକଙ୍କର ଏ ଜାତି ପ୍ରତି ଶେଷ ବାର୍ତ୍ତା । କିନ୍ତୁ ଆମେ କଣ ତାଙ୍କ ମର୍ମବାଣୀର ମର୍ମକୁ ଆମ ମର୍ମରେ ଉପଲବ୍ଧି କରିପାରିବୁଁ ?

ପରିଣତ ବୟସରେ ରାଜୁବାବୁ ଆମ ପାଖରୁ ଚିରବିଦାୟ ନେଇଛନ୍ତି ଗତ ମାର୍ଚ୍ଚ ମାସ ଦୁଇ ତାରିଖରେ । ଓଡ଼ିଆ କଥାସାହିତ୍ୟ କ୍ଷେତ୍ରରେ 'ରାଜକିଶୋର' ନାମଧାରୀ ଯେଉଁ ଦୁଇଜଣ ସ୍ୱର୍ଦ୍ଧିତ ରାଜପୁତ୍ର ସେମାନଙ୍କ ଲେଖନୀ ରୂପକ ଅସିର ଝନତ୍କାରରେ ଆମକୁ ଏକଦା ମୁଗ୍ଧ-ଚକିତ କରୁଥିଲେ ସେମାନଙ୍କ ମଧ୍ୟରୁ ଜଣେ ରାଜୁ ପଟ୍ଟନାୟକ ଚାଲିଗଲେ । ଅନ୍ୟଜଣେ, ରଜୁରାୟ (ଅର୍ଥାତ୍-ରାଜକିଶୋର ରାୟ) ଏବେ ଅସ୍ତସୂର୍ଯ୍ୟର ରକ୍ତରାଗରେ ଜର୍ଜରିତ ହୋଇ ଉଦାସ ଆଖିରେ ଅନାଇ ବସିଛନ୍ତି ପଶ୍ଚିମ ଦିଗ୍‌ବଳୟ ଆଡ଼କୁ । ଏହି ଦୁଇ ପ୍ରବୃଦ୍ଧ କଥାଶିଳ୍ପୀଙ୍କର ଅବଦାନ ଓଡ଼ିଆ କଥା ସାହିତ୍ୟକୁ କିଛି କମ୍ ନୁହେଁ । ଯାହାହେଉ ଆଜି ରାଜୁ ପଟ୍ଟନାୟକଙ୍କର ସ୍ମୃତିଚାରଣ କଲା ବେଳେ ବହୁଦିନ ତଳେ ଅନ୍ୟଜଣେ ପ୍ରଥିତଯଶା ସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର 'ଡଗର'ର ସଂପାଦକୀୟରେ ତାଙ୍କ ଉଦ୍ଦେଶ୍ୟରେ ଯାହା ଲେଖିଥିଲେ ଏବେ ତାଙ୍କ ଦେହାନ୍ତ ପରେ ମୋର ମନେ ପଡୁଛି । ୧୯୫୧ ମସିହାରେ (୧୪ଶ ବର୍ଷ ତ୍ରୟୋଦଶ ସଂଖ୍ୟା 'ଡଗର')

'ସ୍ୱପ୍ନବିଳାସୀ ରାଜକିଶୋର' ଶିରୋନାମାରେ ସେ ଲେଖିଥିଲେ—'ଆପଣଙ୍କ ଯୌବନର ସ୍ୱପ୍ନ ସେଇ 'ସପନ କୁହୁଡ଼ି'ରେ ହିଁ ରହିଯାଇଛି । ଆପଣଙ୍କ ସ୍ୱପ୍ନ ଆଉ ବାସ୍ତବ ଭିତରେ ଯେଉଁ ବ୍ୟବଧାନ, ତାହାରି ପ୍ରତୀକ ଆପଣଙ୍କ ଆଇନ ଜୀବନର କୃଷ୍ଣକାୟ ପୋଷାକ । ଆପଣଙ୍କ ସରସ୍ୱତୀ ଆଜି ଯେପରି ଗାଉନ ପିନ୍ଧି ଅଦାଲତର ନଥିବିଡ଼ା ଭିତରେ ଆଶ୍ରୟ ନେଇଛନ୍ତି । ତଥାପି ଅପାଣଙ୍କର ଖେଳାଳୀ ପ୍ରକୃତି ଜୀବନକୁ ଅତି ହାଲୁକା, ଅତି ଉଶ୍ୱାସିଆ ଭାବରେ ଏକ ସାମରିକ ଶକ୍ତିଭଳି ଅଦମ୍ୟ ଦାମ୍ଭିକତାକୁ ଆଲୋକ ସ୍ତମ୍ଭ କରି ଆଗେଇ ନେଉଛି । ପରିଣାମକୁ ପକ୍ଷପାତ ନାହିଁ, ଅତୀତକୁ ଭ୍ରୁକ୍ଷେପ ନାହିଁ । ବାସ୍ତବ ଦୁନିଆରେ ଗୋଡ଼ ଦେଇ ଏକ ଅତିବାସ୍ତବ ସ୍ତରକୁ ଆପଣ ଏକ ନିପୁଣ ଯାଦୁକର ଭଳି ଖେଳନ୍ତି । x x x ହେ ଅସରନ୍ତି ପଥର 'ପଥିକୀ' ! ଆପଣଙ୍କର 'ହୃଦୟର ବନ୍ଧନ' ଏବେ ମଧ୍ୟ ମୋହମୁକ୍ତ । ପ୍ରାଚୁର୍ଯ୍ୟ ଭିତରେ ଆପଣ ନିଃସଙ୍ଗ । ଆପଣ ଅନାସକ୍ତ ଯୋଗୀ । x x x 'ଡଗର' ଶୁଭେଚ୍ଛା ନେବେ ବନ୍ଧୁ !'' ନିତ୍ୟାନନ୍ଦ ବାବୁ ଆଜକୁ ପ୍ରାୟ ୪୬ ବର୍ଷ ତଳେ ତାଙ୍କର ସାହିତ୍ୟିକ ବନ୍ଧୁ ରାଜୁବାବୁଙ୍କୁ ଶୁଭେଚ୍ଛା ଜଣାଇ ଯାହା କହିଥିଲେ ତାହା ତାଙ୍କ କ୍ଷେତ୍ରରେ, ଚିରନ୍ତନ ସତ୍ୟ । ରାଜୁବାବୁ ଆଜି ଅସରନ୍ତି ପଥର 'ପଥିକୀ' ହୋଇ ଚାଲିଯାଇଛନ୍ତି । କିନ୍ତୁ ନିପୁଣ ଯାଦୁକର ଭଳି ସେ ଖେଳିଛନ୍ତି ସାରା ଜୀବନ । ପ୍ରାଚୁର୍ଯ୍ୟ ଭିତରେ ନିଃସଙ୍ଗ ହୋଇ ବି ସେ ଥିଲେ ଅନାସକ୍ତ ଯୋଗୀ-ପୁରୁଷ । ତାଙ୍କର ସାରସ୍ୱତ ଯୋଗ ଶେଷ ହୋଇଛି । ଅଦମ୍ୟ ଦାମ୍ଭିକତାକୁ ଆଲୋକ ସ୍ତମ୍ଭ କରି ସେ ହୁଏତ ଆଜି ମୃତ୍ୟୁ ଲୋକରେ ଆଗଉଥିବେ ଅମୃତର ସନ୍ଧାନରେ । ମୁଁ ସେହି ଗତାୟୁ ଅଥଚ ଅମର କଥାଶିଳ୍ପୀ, ଓଡ଼ିଆ କଥା ସାହିତ୍ୟ ଜଗତର ସ୍ୱର୍ଦ୍ଧିତ ରାଜପୁତ୍ର-ରାଜକିଶୋରଙ୍କ ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧାର ସହ ମୋର ମସ୍ତକ ଅବନତ କରୁଛି ।

ରଚନା ୧।୪।୧୯୯୬

(ଉତ୍କଳ ଦିବସ)

ସୁନହଟ, ବାଲେଶ୍ୱର - ୭୫୬୦୦୧
ଫୋନ୍-୬୬୭୦୫





# ଚଲା ବାଟର ନିଃସଙ୍ଗ ପଥିକ

**ରଘୁନାଥ ମହାପାତ୍ର**

ପ୍ରଖ୍ୟାତ କଥାଶିଳ୍ପୀ ରାଜକିଶୋର ପଟ୍ଟନାୟକ ତାଙ୍କ 'ଚଲାବାଟ' ଉପନ୍ୟାସରେ ଅନ୍ୟ ସମସାମୟିକ ଲେଖକମାନଙ୍କୁ ଆହ୍ୱାନ ଦେଇଥିଲେ ଏହିପରି ଏକ ଉପନ୍ୟାସ ଲେଖିବାକୁ । ତାଙ୍କର ସେହି ସ୍ପର୍ଦ୍ଧିତ ଆହ୍ୱାନକୁ କେହି ମୁକାବିଲା କରିବାକୁ ଆଗେଇ ଆସିନଥିଲେ । ସତ କହିବାକୁ ଗଲେ ଚଲାବାଟପରି ଏକ ମନନଶୀଳ ଉପନ୍ୟାସ ଲେଖିବା ଅନ୍ୟ କୌଣସି ଔପନ୍ୟାସିକ ପକ୍ଷେ ସମ୍ଭବ ନୁହେଁ । ଏହା ଏବେ ବି ଏକ କାଳଜୟୀ ସାହିତ୍ୟ ସୃଷ୍ଟି ହିସାବରେ ଓଡ଼ିଆ କଥାସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ।

ରାଜକିଶୋର ପଟ୍ଟନାୟକଙ୍କ ଚଲାବାଟ ସବୁବେଳେ ଧୂଳିସରିତ । ସେ ଲେଖାର ଧାରା ଝରଣାର ଝରପରି ଚଳଚଞ୍ଚଳ, କଳ କଳ ନାଦିନୀ । ହୃଦୟକୁ ଛୁଇଁଯାଏ କିନ୍ତୁ ଗଭୀରତାକୁ ମାପି ବସିଲେ ମାପିହୁଏ ନାହିଁ । ସେ ଜଣେ ସତ୍ୟନିଷ୍ଠ ନିର୍ଭୀକ ଲେଖକ । ଯାହା ଚିନ୍ତା କରନ୍ତି ତାହା ପ୍ରକାଶ କରନ୍ତି । କୌଣସି ମନ୍ତ୍ରୀ, ଆଇ.ଏ.ଏସ୍. ଅଫିସର, ହାକିମ, ଜଜ୍ କାହା ପ୍ରତି ସେ ଭ୍ରୂକ୍ଷେପ କରନ୍ତି ନାହିଁ । ନିଜ ବ୍ୟକ୍ତିତ୍ୱକୁ ସେ ସବୁବେଳେ ଉଚ୍ଚ କରି ରଖୁଥିଲେ । କାହାଠାରୁ ସେ ଯେ ହୀନ ସେ କଥା କେବେ ସ୍ୱୀକାର କରନ୍ତି ନାହିଁ । ତାଙ୍କ ସ୍ୱାଭିମାନରେ ଯେଉଁଠି ଟିକିଏ ଆଞ୍ଚ ଆସୁଥିଲା ସେ ସାଙ୍ଗେ ସାଙ୍ଗେ ସେ ଆସନ ବା ପଦବୀ ତ୍ୟାଗ କରୁଥିଲେ ।

ଓଡ଼ିଶାରେ ଯେତେଜଣ ଗଳ୍ପ ଲେଖକ ତାଙ୍କ ସମସାମୟିକ ଥିଲେ କିନ୍ତୁ ତାଙ୍କ ପରି ଏତେ ଦ୍ରୁତଗତିରେ କେହି ଗଳ୍ପ ଲେଖିବାର ମୁଁ ଦେଖିନାହିଁ । ୧୯୭୩ ରୁ ୧୯୮୪ ପର୍ଯ୍ୟନ୍ତ 'ଅଧୁନା' ପତ୍ରିକା ସଂପାଦନା କରୁଥିବାବେଳେ ମୁଁ ଅନେକ ସମୟରେ ତାଙ୍କ ନିକଟକୁ ଗପ ଆଣିବାକୁ ଯାଏ । ମୋ ସାଙ୍ଗରେ ପାଞ୍ଚ ଦଶ ମିନିଟ୍ କଥାବାର୍ତ୍ତା କରି କହନ୍ତି ଆପଣ କାଲି ସକାଳୁ ଆସନ୍ତୁ ଗପ ନେଇଯିବେ । ପରଦିନ ସକାଳ ଆଠଟାରେ ତାଙ୍କ 'ଶାନ୍ତିନିବାସ' ପୁରୀଘାଟ ପାଖ ଘରେ ପହଞ୍ଚିଲାବେଳକୁ ସେ ହୁଏତ କୌଣସି ମହକିଲ ସହିତ ମାଲିମକଦ୍ଦମା ବିଷୟରେ କଥାବାର୍ତ୍ତା କରୁଥାନ୍ତି । ମତେ ଇଙ୍ଗିତ ଦିଅନ୍ତି ଚେୟାରରେ ବସିବା ପାଇଁ ମହକିଲ ସହିତ କଥାବାର୍ତ୍ତା ସାରି ମୋ ଆଡ଼କୁ ବଢ଼େଇ ଦିଅନ୍ତି ପାଞ୍ଚ-ଛ'ଟି ଗଳ୍ପର ଗୋଟିଏ ବିଡ଼ା । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରେ ଏତେଗୁଡ଼େ କ'ଣ ଦେଲେ ? ଆପଣଙ୍କ ପାଇଁ ଲେଖୁ ଲେଖୁ ଯେତେଗୁଡ଼ାଏ ଗଳ୍ପ ସୃଷ୍ଟି ହୋଇଗଲା ତାକୁ ମୁଁ ଆଉ କ'ଣ କରିବି, ଆପଣ ସବୁଗୁଡ଼ା

ନେଇଯାନ୍ତୁ ଯାହା ଭଲ ଲାଗିବ ଦେଇଦେବେ ଯାହା ଖରାପ ଲାଗିବ ଫେରାଇଦେବେ । ଗଳ୍ପ ପଢ଼ିଲେ ଜଣାପଡ଼େ ସତେ ଯେପରି ଲେଖକ ମଣିଷମନର ଗହନ କଥାକୁ ଟିକିନିଖି ଭାବେ ଉପସ୍ଥାପିତ କରିଛନ୍ତି । କୌଣସି ଗଳ୍ପଟିକୁ ଖରାପ ବୋଲି କହି ହେବନାହିଁ । ସବୁ ଗଳ୍ପ ନେଇ ଆସେ, ପ୍ରତି ମାସରେ ଗୋଟିଏ କରି ପ୍ରକାଶ କରେ । ଗଳ୍ପ ଦେବାପାଇଁ କାହାକୁ କେବେ ନିରାଶ କରନ୍ତି ନାହିଁ କିମ୍ବା ପଇସା ମଧ୍ୟ ମାଗନ୍ତି ନାହିଁ । ଲେଖା ପାଇଁ ପଇସା ମାଗିବା କଥାଟାକୁ ସେ ତାଙ୍କ କଳ୍ପନା ଭିତରେ ରଖିନଥିଲେ ।

ତାଙ୍କର ସ୍ୱାଭିମାନ ତାଙ୍କୁ ଲେଖକ, ପ୍ରକାଶକ ଉଭୟ କାର୍ଯ୍ୟ ପାଇଁ ପ୍ରୋତ୍ସାହିତ କରିଥିଲା । ସେ ନିଜେ ବହି ଲେଖୁଥିଲେ, ଛାପୁଥିଲେ, ବଜାରରେ ବିକ୍ରି କରୁଥିଲେ । ନିଜେ ସାଇକେଲ ଚଢ଼ି ବହି ବ୍ୟାଗ ଧରି ବାଲୁବଜାରରେ ବୁଲୁଥିଲେ । ବିଭିନ୍ନ ବହି ଦୋକାନରେ ତାଙ୍କର ବହି ଦେଇ ତା ପ୍ରତିବଦଳରେ ବହି ନେଇ ଶାନ୍ତିନିବାସ ବାଣୀ ମନ୍ଦିରରେ ବ୍ୟବସାୟ କରୁଥିଲେ ।

ରାଜନୀତି, ଓକିଲାତି ଉଭୟ କ୍ଷେତ୍ରରେ ସେ ପାରଦର୍ଶିତା ଦେଖାଇଥିଲେ, କିନ୍ତୁ ଲେଖା ହିଁ ଥିଲା ତାଙ୍କ ଜୀବନର ଆଦର୍ଶ । ସେହି ଆଦର୍ଶକୁ ନେଇ ସେ ସାରାଜୀବନ ବଞ୍ଚିଥିଲେ । ସେ ଥିଲେ ଏକ ସାଲିସ୍‌ହୀନ ବ୍ୟକ୍ତିତ୍ୱ । ତାଙ୍କର ସମସାମୟିକ କିମ୍ବା ତାଙ୍କଠାରୁ କନିଷ୍ଠ ଲେଖକମାନଙ୍କୁ ଯେତେବେଳେ ସାହିତ୍ୟ ଏକାଡ଼େମୀ ପୁରସ୍କାର ଦିଆଯାଇ ସମ୍ମାନିତ କରାଗଲା, ତାଙ୍କୁ ସମ୍ମାନରୁ ବଞ୍ଚିତ କରାଗଲା, ସେ ସେଥିରେ ବେଶ୍ କ୍ଷୁବ୍ଧ ହୋଇଥିଲେ ଏବଂ କୌଣସି ପ୍ରକାର ସମ୍ମାନ, ଉପାୟନ ଗ୍ରହଣ କରିବେ ନାହିଁ ବୋଲି ଦୃଢ଼ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ସେହି ସିଦ୍ଧାନ୍ତ ହିଁ ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିଥିଲା । ଯେ କୌଣସି ସାହିତ୍ୟ ଅନୁଷ୍ଠାନ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବେ ବୋଲି କହିବାକୁ ଆସିଲେ ସେ ବିନୀତ ଭାବରେ କହୁଥିଲେ ଆପଣ ସେହି ଟଙ୍କା ଅନ୍ୟ କୌଣସି ଜଣେ ଲେଖକକୁ ଦେଇ ଦିଅନ୍ତୁ। ମୋତେ ଦେଲେ କିଛି ଲାଭ ହେବନାହିଁ, ମୁଁ ମଧ୍ୟ ଆଣିବାକୁ ଯିବି ନାହିଁ । ଆପଣମାନେ ସେଥିରୁ ବିରତ ରୁହନ୍ତୁ ।

ଥରେ କଥା ପ୍ରସଙ୍ଗରେ ମୁଁ ତାଙ୍କୁ ପଚାରିଦେଲି ଲେଖକ-ଭତ୍ତା ପାଇଁ ଆପଣ ଦରଖାସ୍ତ ଦେଲେ ନାହିଁ ? ବିରକ୍ତିଭରା ମୁହଁରେ ମୋ ଆଡ଼କୁ ଚାହିଁ କହିଲେ କାଳିନ୍ଦୀ ପାଣିଗ୍ରାହୀ, ସଚ୍ଚି ରାଉତରାୟ ଏମାନେ କ'ଣ ସବୁ ଦରଖାସ୍ତ ଦେଇ ଭତ୍ତା ପାଉଛନ୍ତି ? ଏମାନଙ୍କ ଦାରିଦ୍ର୍ୟ ଯଦି ସରକାର ଅନୁଭବ କରିପାରୁଛନ୍ତି, ଏମାନଙ୍କ ନାମ ସୁପାରିସ କରିପାରୁଛନ୍ତି ତେବେ ମୋ ନାଆଁ କାହିଁକି ସୁପାରିସ କରିପାରିବେ ନାହିଁ ? କୌଣସି ପ୍ରତିବନ୍ଧକ ନାହିଁ ତ ।



ମୁଁ ତାଙ୍କ ଉତ୍ତର ଶୁଣି ନୀରବ ରହିଲି, ପ୍ରକୃତରେ ରାଜ୍ୟ ସରକାରଙ୍କର ସ୍ୱତନ୍ତ୍ର ଭାବେ ସଂସ୍କୃତି ବିଭାଗ ରହିଛି, ସାହିତ୍ୟ ଏକାଡ଼େମୀ ରହଛି, ପ୍ରତିଭାବାନ୍ ଲେଖକଙ୍କ ନାମ ସୁପାରିସ କରିବା ସେମାନଙ୍କର ଦାୟିତ୍ୱ । କିନ୍ତୁ ସେ ଦାୟିତ୍ୱ ଏବେ ରାଜନୈତିକ ନେତାଙ୍କ ଦ୍ୱାରା ନିୟନ୍ତ୍ରିତ । ଜଣେ ସୁଲେଖକ ତା'ର ଉପଯୁକ୍ତ ମର୍ଯ୍ୟାଦା ପାଇବ ବା କିପରି ?

ସ୍ୱାଭିମାନୀ ରାଜକିଶୋର ହାତରୁ ଟଙ୍କା ଖର୍ଚ୍ଚ କରି ଉପନିଷଦ ବହି ଛାପିଲେ । ପ୍ରତି ବହି ୩୨ ପୃଷ୍ଠା । ପ୍ରତ୍ୟେକର ମୂଲ୍ୟ ଏକଟଙ୍କା । ଏହିପରି ତିରିଶ ଖଣ୍ଡ ଉପନିଷଦ ଛାପିଲେ । ବହି ଦୋକାନ ମାନଙ୍କରେ ଅଧା ଦାମ୍‌ରେ ଦେଲେ ତଥାପି ପଇସା ମିଳିଲା ନାହିଁ । ଶେଷରେ ସିଦ୍ଧାନ୍ତ ନେଲେ ପିଲାଙ୍କୁ ବହି ମାଗଣାରେ ବାଣ୍ଟିବେ । ରେଭେନ୍ସା କଲିଜିଏଟ୍ ସ୍କୁଲ ଗେଟ୍ ପାଖରେ ଛିଡ଼ା ହୋଇ ପିଲାଙ୍କୁ ଅନେକ ଉପନିଷଦ ବହି ବାଣ୍ଟି ଦେଲେ । ସେଥିରେ ଲାଭ ହେଲାନାହିଁ; କ୍ଷତିହେଲା ଆର୍ଥିକ ଦିଗରୁ । କିନ୍ତୁ ପ୍ରେସ୍‌ର କି କାଗଜବାଲାର କାହାରି ପଇସା ସେ ବାକି ରଖିନଥିଲେ ।

ମୁଁ ଥରେ ଔପନ୍ୟାସିକ କାହ୍ନୁଚରଣଙ୍କ ବାସଭବନକୁ ଗଳ୍ପ ଆଣିବାକୁ ଯାଇଥିଲି । ସକାଳ ଆଠଟା ସମୟ ହେବ । ଏହି ସମୟରେ ରାଜକିଶୋର ପଟ୍ଟନାୟକ ଗୋଟିଏ ସାଇକେଲ୍‌ରେ ଆସି କାହ୍ନୁବାବୁଙ୍କ ଘରେ ପହଞ୍ଚିଲେ । କାହ୍ନୁବାବୁଙ୍କ ସଙ୍ଗେ ନାନା ଆଡୁ ନାନା କଥା ଆଲୋଚନା ହେଲା କାହ୍ନୁବାବୁ କହିଲେ ରାଜୁ ତୁମକୁ ମୋର ଗୋଟିଏ ମାଗୁଣି ?

— କି ମାଗୁଣି ?

—ଯାହା ମାଗିବି ଦେବ ତ, କାହ୍ନୁବାବୁ ପ୍ରଶ୍ନିଳ ଭଙ୍ଗୀରେ କହିଲେ ।

—ଯଦି ଦେବାର ଯୋଗ୍ୟ ହୋଇଥାଏ ନିଶ୍ଚୟ ଦେବି ।

——ତୁମରି ସେହି ବହିର ନାଆଁଟା ମତେ ଦେଇଦିଅ, ମୋ ନାଆଁଟା ତୁମେ ନେଇଯାଅ ।

—ରାଜକିଶୋର ପଟ୍ଟନାୟକ ଚାଁ ପିଉ ପିଉ କହିଲେ କେଉଁ ନାଆଁଟା ?

—'ପ୍ରୀତିର ବଣିଜ'

—ସେଇଟା କେମିତି ହେବ । ଆପଣ ଜୀବନରେ କେବେ ପ୍ରୀତି କରିନାହାନ୍ତି, ମୁଁ ଜୀବନରେ ଅନେକ ପ୍ରେମ କରି କରି ମୋର ଅନୁଭୂତିକୁ ନେଇ ଲେଖିଛି 'ପ୍ରୀତିର ବଣିଜ' ଆପଣଙ୍କୁ କେମିତି ସେ ନାଆଁଟା ଦେବି ।

କାହ୍ନୁ ବାବୁ କହିଲେ ହଉ ନଦେଲ ନାହିଁ, ମୁଁ ତା'ଠାରୁ ଆହୁରି ବଢ଼ିଆ ନାଆଁ ଦେଇ ମୋ ବହି ବାହାର କରିବି ।

ରାଜକିଶୋର ପଟ୍ଟନାୟକ କହିଲେ ଆପଣ ମୋଠାରୁ କେବେ ବି ବଢ଼ିଆ ନାଆଁ ଦେଇପାରିବେ ନାହିଁ । ସେମିତିକା ଉପନ୍ୟାସ ବି ଲେଖିପାରିବେ ନାହିଁ । ମୁଁ ଚାଲେଞ୍ଜ ଦେଉଛି । କାହ୍ନୁ ଚରଣ କହିଲେ ସଂସାରରେ କେହି କାହାରି ପରି ହୋଇପାରନ୍ତି ନାହିଁ । ଏହା ସୃଷ୍ଟିର ନିୟମ ।

ଏହି ଆଲୋଚନା ଶୁଣି ମୋର ମନେ ହେଲା ଲେଖକମାନଙ୍କ ଭିତରେ ପରସ୍ପର ପ୍ରତି କି ସ୍ନେହ କି ମମତା, ହୃଦୟର କି ଆତ୍ମୀୟତା ।

କିନ୍ତୁ ଜୀବନର ଶେଷ ମୁହୂର୍ତ୍ତରେ ବିଜ୍ଞାନୀ ରାଜକିଶୋର ହୋଇପଡ଼ିଥିଲେ ଅତ୍ୟନ୍ତ ଅଧ୍ୟାତ୍ମବାଦୀ । ଶିରିଡ଼ି ସାଇବାବାଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଜନ୍ମିଯାଇଥିଲା ।

ତାଙ୍କର ଆଣ୍ଠୁ ଦରଜ ହୋଇ ସେ ଅନେକ ଦିନ ପର୍ଯ୍ୟନ୍ତ ଚାଲବୁଲ କରିପାରୁ ନଥିଲେ । କେହି ଜଣେ ଶିରିଡ଼ି ସାଇବାବାଙ୍କ ଭକ୍ତ ତାଙ୍କୁ ଉପଦେଶ ଦେଲେ ଆଣ୍ଠୁରେ ବିଭୂତି ଲଗାଇବାକୁ ଏବଂ ବିଭୂତି ପାଇବାକୁ । ଏକ ସନ୍ଦେହ ଭିତରେ ପଡ଼ି ତାହା କରିଥିଲେ, କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବେ ମାସକ ପରେ ସେ ସଂପୂର୍ଣ୍ଣ ଭଲ ହୋଇ ଚାଲବୁଲ କରିପାରିଲେ । ମୋ ପାଖକୁ ଖଣ୍ଡିଏ ପୋଷ୍ଟକାର୍ଡ଼ ଚିଠି ଆସିଲା ସେଥିରେ ଲେଖା ଥିଲା ଶିରିଡ଼ି ସାଇଙ୍କ ବିଭୂତି ଲଗାଇ ମୁଁ ଆଶ୍ଚର୍ଯ୍ୟଜନକ ଭାବେ ଭଲ ହୋଇଯାଇଛି । ଏହି ପରି ଦୁଇଶହ ଯାଏ ଚିଠି ସେ ତାଙ୍କର ବନ୍ଧୁମାନଙ୍କୁ ଲେଖିଥିଲେ ।

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଥିଲେ ଚଲାବାଟର ନିଃସଙ୍ଗ ପଥିକ । ଆଗକୁ ଆଗକୁ ଚାଲିବା ଥିଲା ତାଙ୍କର ଧର୍ମ ।





# ବାଦ୍‌ଶା' ବିଦାୟ

**ଭଗବାନ ନାୟକ ବର୍ମା**

ସେ ଥିଲେ ଓଡ଼ିଆ ସାହିତ୍ୟ ଜଗତର ଅକୁତୋଭୟ ବେସାଲିସ୍ ବେପରୁଆ ପ୍ରଚଣ୍ଡ ସ୍ୱାଭିମାନୀ ବାଦ୍‌ଶା' । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ନିଜର ଯଶ, ପ୍ରତିଷ୍ଠା, ପୁରସ୍କାର ପ୍ରାପ୍ତି ବା ଅଭାବମୋଚନ ପାଇଁ କେବେ କାହାରି ପାଖରେ ନତି ସ୍ୱୀକାର କରି ନାହାନ୍ତି କି ନିଜର ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେଇ କୌଣସି କଥାରେ କାହାରି ସହିତ ସାଲିସ୍ କରିନାହାନ୍ତି । ଏ କ୍ଷେତ୍ରରେ ସେ ଥିଲେ ଯେପରି ଅସାଧାରଣ, ମୌଳିକ ଚିନ୍ତାଧାରା, କଳାତ୍ମକ ସୃଜନଶୀଳତା ଓ ପ୍ରାଜ୍ଞ ବିଚାରବୋଧ କ୍ଷେତ୍ରରେ ମଧ୍ୟ ଥିଲେ ସେହିପରି ଅନନ୍ୟ । ହଁ, ସେ ଥିଲେ ଓଡ଼ିଆ କଥାସାହିତ୍ୟର ପ୍ରବାଦ-ପୁରୁଷ, ଅକୁଣ୍ଠିତ ମୁକ୍ତ ବିଚାରଧାରାର ପ୍ରବର୍ତ୍ତକ ଏବଂ ପ୍ରଚଣ୍ଡ ସ୍ୱାଭିମାନର ପ୍ରତୀକ ରାଜକିଶୋର ପଟ୍ଟନାୟକ । ଓଡ଼ିଆ ଜାତି ପାଇଁ ସେ ଦେଇ ଯାଇଛନ୍ତି ବିପୁଳ ସାରସ୍ୱତ ସମ୍ପଦ, କିନ୍ତୁ ତା ପ୍ରତିବଦଳରେ ପାଇନାହାନ୍ତି କିଛି ପାଇବାକୁ ଇଚ୍ଛା ବି କରି ନାହାନ୍ତି କେବେ । କାରଣ ସେ ଯେ ବାଦ୍‌ଶା' । କେବେଳ ଦାନ କରିବା ହିଁ ତାଙ୍କ ବ୍ୟକ୍ତିତ୍ୱର ସାର୍ଥକତା । କାହାଠାରୁ କିଛି ପ୍ରତିଦାନ ବା ସେ ଗ୍ରହଣ କରନ୍ତେ କିପରି ? ଅତଏବ ନିଜର ସେଇ ଦୁର୍ଲଭ ସ୍ୱାଭିମାନର ଦୀପଶିଖାକୁ ଅନିର୍ବାଣ ରଖି ସେ ଆମଠାରୁ ସବୁଦିନ ପାଇଁ ବିଦାୟ ନେଇ ଚାଲିଯାଇଛନ୍ତି ଗତ ମାର୍ଚ୍ଚ ୧ ତାରିଖରେ, ଅଶୀବର୍ଷ ବୟସରେ ।

ଆଜିକାଲିର ପାଠକ ଓ ଲେଖକମାନେ ରାଜକିଶୋର ପଟ୍ଟନାୟକଙ୍କୁ ଠିକ୍ ଚିହ୍ନିପାରିବେ ନାହିଁ କି ବୁଝି ପାରିବେ ନାହିଁ । ଚଲାବାଟ, ତୁଠପଥର, ପ୍ରେମର ନିୟତି, ପ୍ରେମିକାର ଡାଏରୀ, ହାଟ ବାହୁଡ଼ା, ସିନ୍ଦୁରଗାର, ପଥୁକୀ, ସକାଳର କୁହୁଡ଼ି, କଜଳ ଗାର ପ୍ରଭୃତି ତାଙ୍କର ଉପନ୍ୟାସ ଓ ଗଳ୍ପ ବହି ସବୁ ଯିଏ ନ ପଢ଼ିଛି ଏବଂ ତାଙ୍କର ଶାଣିତ ବ୍ୟଙ୍ଗଧର୍ମୀ ସ୍ପଷ୍ଟବାଦୀ ଭାଷଣ ଯିଏ ନ ଶୁଣିଛି, ସିଏ ତାଙ୍କ ବ୍ୟକ୍ତିତ୍ୱକୁ କଳ୍ପନା କରିବା ବାସ୍ତବିକ ଅତି କଷ୍ଟକର ।

ସବୁଠାରୁ କ୍ଷୋଭର କଥା ହେଉଛି, ଓଡ଼ିଆ କଥାସାହିତ୍ୟର ସେ ଜଣେ ଅତି ବଳିଷ୍ଠ ସ୍ରଷ୍ଟା ଓ ରୂପକାର ହୋଇଥିଲେ ମଧ୍ୟ, ତାଙ୍କ କୃତିତ୍ୱ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜଣାଇ କୌଣସି ଗୋଟିଏ ହେଲେ ଉଲ୍ଲେଖଯୋଗ୍ୟ ସାହିତ୍ୟ ପୁରସ୍କାର ଯଥା ସମୟରେ ତାଙ୍କୁ ମିଳି ପାରିନାହିଁ । କାରଣ ପୁରସ୍କାର ପାଇବା ପାଇଁ 'ଲବି' କରିବା ତାଙ୍କ ଧାତୁରେ ନଥିଲା । ବରଂ ତାଙ୍କୁ କୌଣସି ପୁରସ୍କାର ନ ଦେବା ନିମନ୍ତେ ସେ ପୂର୍ବରୁ ସାହିତ୍ୟ ଏକାଡ଼େମୀ, ଜ୍ଞାନପୀଠ ସଂସ୍ଥା ଓ ଶାରଳା ପୁରସ୍କାର ଇତ୍ୟାଦିର ପ୍ରବର୍ତ୍ତକମାନଙ୍କୁ ଚିଠି ଲେଖି ଜଣାଇ ଦେଇଥିଲେ । ଏ କଥା ସେ ଦଶ ବର୍ଷ ତଳେ ଦେଇଥିବା ଏକ ସାକ୍ଷାତ୍‌କାର ପ୍ରସଙ୍ଗରେ

ନିଜେ ପ୍ରକାଶ କରିଥିଲେ । ସେ ଯାହାହେଉ, ଓଡ଼ିଆ ଜାତି ଯେ ତାଙ୍କ ପ୍ରତି ଘୋର ଅନ୍ୟାୟ ଓ ଅବହେଳା ପ୍ରଦର୍ଶନ କରିଛି ଏବଂ ଅକୃତଜ୍ଞତାର ନିଦର୍ଶନ ଦେଖାଇଛି, ଏଥିରେ ସଂଦେହର ଅବକାଶ ନାହିଁ । ଓଡ଼ିଆ ଜାତି ଏ ପାପର ପ୍ରାୟଶ୍ଚିତ୍ତ କେବେ ଓ କିପରି କରିବ, ସେ କଥା ଏକା ଭଗବାନ ଜାଣନ୍ତି । (ଅବଶ୍ୟ ଗତ ମାସରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ 'ଅତିବଡ଼ୀ ସମ୍ମାନ' ସହ ପଚିଶ ହଜାର ଟଙ୍କା ନେଇ ତାଙ୍କ ଘରେ ଦେଇ ଆସିଥିଲେ । କିନ୍ତୁ ସେତେବେଳେ ସେ ଥିଲେ ମୃତ୍ୟୁଶଯ୍ୟାରେ, ତାର ମାତ୍ର ୨୦ ଦିନ ପରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।) ସ୍ୱର୍ଗତ ରାଜକିଶୋର ପଟ୍ଟନାୟକ କିପରି ସ୍ୱାଭିମାନୀ, ବେପରବାୟ, ବେସାଲିସ୍, ନୀତିନିଷ୍ଠ ଓ ସ୍ପଷ୍ଟବାଦୀ ଥିଲେ, ତାର କେତେକ ଉଦାହରଣ ଦେବା ପାଇଁ ଏଠାରେ ତାଙ୍କର ଏକ ସାକ୍ଷାତ୍କାରରୁ କିଛି କିଛି ବକ୍ତବ୍ୟ ଉଦ୍ଧାର କରାଯାଉଛି । "ଆପଣଙ୍କର ଯଦି କ୍ଷମତା ନାହିଁ, ପ୍ରଭାବ ନାହିଁ ବା ଆପଣ ଯଦି ସାଲିସ୍ କରି ଶିଖିନାହାନ୍ତି, ତେବେ ଆପଣଙ୍କ ବହି ପ୍ରକାଶକମାନେ ଛାପିବେ କାହିଁକି ? x x x ୫୦ ବର୍ଷ ଧରି ଲେଖିବା ପରେ ମୋତେ ଯଦି ଆମ୍ବ କିଲେ କିଣି ଖାଇବାକୁ ପଇସା ନ ମିଳିଲା ତେବେ କ'ଣ ପାଇଁ ମୁଁ ଯା ତା' ଓଠ ଧରି ଲେଖା ଛପେଇବି ? x x x ମୋତେ କୌଣସି ପୁରସ୍କାର ନ ଦେବା ଲାକି ମୁଁ ସମସ୍ତଙ୍କୁ ଲେଖି ଜଣେଇ ଦେଇଛି । ଆଉ ଯଦି କେହି ଦିଅନ୍ତି, ମୁଁ ତାକୁ ଗ୍ରହଣ କରିବି ନାହିଁ । ଆମ ସାହିତ୍ୟ ଏକାଡ଼େମୀ ବାଲା ଥରେ ଡାକିଥିଲେ । ମୁଁ ଗଲିନାହିଁ । କ'ଣ ଚାଦର ଖଣ୍ଡେ ଆଣିବାକୁ ଯାଇଥାନ୍ତି ? x x x ମୋ ବିଚାରରେ ମୁଁ ଏକ ନମ୍ବର, ଆପଣଙ୍କ ବିଚାରରେ ଯେତେ ନମ୍ବର ହୋଇପାରେ । x x x ୧୯୮୫ ବିଷୁବ ସଂକ୍ରାନ୍ତିଠାରୁ ମୋର ସବୁ ପ୍ରକାଶିତ ବହିର ସ୍ୱତ୍ୱ ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ଦାନ କରି ଦେବା କଥା ସଂସ୍କୃତି ବିଭାଗକୁ ଜଣାଇ ଦେଇ ସ୍ୱୀକୃତି ପାଇବା ଅପେକ୍ଷାରେ ଅଛି । x x x ମୁଁ ମନା କରି ଦେଇଛି — ମୁଁ ମରିଗଲା ପରେ ମୋ ଶବାଧାରରେ ଫୁଲତୋଡ଼ା ଦେଇ ମୋ ଆତ୍ମାକୁ କେହି ଲଜ୍ଜିତ କରିବ ନାହିଁ । x x x ମୋ ଜୀବଦ୍ଦଶାରେ ସରକାରୀ ଓ ଘରୋଇ ଅନୁଷ୍ଠାନରୁ ସର୍ବମୋଟ ୬ ହଜାର ଟଙ୍କା ସାହାଯ୍ୟ ବା ପୁରସ୍କାର ବାବଦରେ ପାଇଛି । ଏହା ହିଁ ମୋର ସମଗ୍ର ସାହିତ୍ୟିକ ଭତ୍ତା କଥା ପଚାରୁଛନ୍ତି ? ମୁଁ ତ ଅଖା ପିନ୍ଧୁ ନାହିଁ ଦୁଃସ୍ଥ ହେବି କେମିତି ? x x x ମୁଁ ତ ଏତେ ବୋକା ନୁହେଁ ଯେ ବର୍ଷ ବର୍ଷ ଧରି ଲୋକେ ମୋ ଲେଖାକୁ ଆଦର କରିବେ ବୋଲି ଆଶା କରିବି !' ଗଙ୍ଗାଜଳରେ 'ପତିତୋଦ୍ଧାରୀଣୀ ଗଙ୍ଗା'ଙ୍କୁ ଅର୍ଚ୍ଚନା କଲା ଭଳି, ସ୍ୱର୍ଗତ ରାଜକିଶୋର ପଟ୍ଟନାୟକଙ୍କର ଉପରୋକ୍ତ ବକ୍ତବ୍ୟ କେତୋଟିକୁ ଏଠାରେ ପରିବେଷଣ କରି ଆମେ ତାଙ୍କର ଅମୃତ ଅମଳିନ ଅନନ୍ୟ ସାରସ୍ୱତ ବ୍ୟକ୍ତିତ୍ୱର ପବିତ୍ର ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁଁ ।





# ରାଜୁବାବୁଙ୍କ ଜୀବନ ସନ୍ଦେଶ

ଡକ୍ଟର ଶ୍ୟାମ ସୁନ୍ଦର ମିଶ୍ର

୧୯୫୪ ମସିହାର କଥା । ସେତେବେଳେ ମୁଁ ରେଭେନ୍ସା କଲେଜରେ ଏମ୍.ଏ ପଢୁଥିବା ବେଳେ ଏକ ବିଷମ ବିପଦରେ ପଡ଼ିଥିଲି । ମୁଁ ଏବଂ ମୋର ଜଣେ ସହପାଠୀ ବନ୍ଧୁ ସ୍ୱର୍ଗତ ଶ୍ରୀ ମୁରାରି ମୋହନ ଜେନା 'ତେନ୍ତୁଳି ଛାଟ' ନାମକ ଏକ ସମାଲୋଚନାମୂଳକ ପତ୍ରିକା ପ୍ରକାଶ କରୁଥିଲୁ । ସେ ପତ୍ରିକାରେ ଶିକ୍ଷା, ସାହିତ୍ୟ, ସଂସ୍କୃତି ସଂପର୍କରେ ଅନେକ ଲେଖା ପ୍ରକାଶିତ ହେଉଥିଲା କିନ୍ତୁ ସେଇ ଲେଖାଗୁଡ଼ିକରେ ଅନେକ ସମୟରେ ଆମର ଉତ୍କଟ ଉଗ୍ର ତାରୁଣ୍ୟର ପ୍ରତିଫଳନ ହେଉଥିଲା । ଯାହାକୁ କେତେକ ସ୍ପର୍ଶକାତର ବୟସ୍କ ଲେଖକ ଅସଂଯତ ବୋଲି ଅଭିହିତ କରୁଥିଲେ । ସମ୍ଭବତଃ ସେହିମାନଙ୍କ ମଧ୍ୟରୁ କେହି ଏହି ପତ୍ରିକା ପ୍ରତି ସରାକରୀ କର୍ତ୍ତାଙ୍କ ଦୃଷ୍ଟି ଆକର୍ଷଣ କଲେ । ମୁଁ ଏହି ପତ୍ରିକାର ସଂପାଦନା ସହ ମୁଦ୍ରାକର ଓ ପ୍ରକାଶକ ମଧ୍ୟ ଥିଲି । ତେଣୁ ସେହି ବର୍ଷ ମୁଁ ଜଜ୍‌କୋର୍ଟରୁ ଏକ ସମନ ପାଇଲି ଯେ ସରକାର ମୋ ବିରୁଦ୍ଧରେ ଏକ ସେସନ କେଶ୍ ଦାଏର କରିଛନ୍ତି । ଅଚାନକ ବଜ୍ରପାତ ଭଳି ମୁଁ ଅନୁଭବ କଲି ।

ମୋର ସେ ଅବସ୍ଥା ହୃଦୟଙ୍ଗମ କରି ମୋର ବଡ଼ଭାଇ ଫତୁରାନନ୍ଦ ଥରେ ମୋ ସଙ୍ଗରେ ଆଡ୍‌ଭୋକେଟ ରାଜକିଶୋର ପଟ୍ଟନାୟକଙ୍କ ନିକଟରେ ଉପସ୍ଥିତ ହେଲେ । ଫତୁରାନନ୍ଦ ନିଜେ ତେନ୍ତୁଳିଛାଟ ସହ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ନଥିଲେ ମଧ୍ୟ ଆମର ପ୍ରେରଣା ଓ ଉତ୍ସାହଦାତା ଥିଲେ ଏବଂ ସେଥିରେ ସାମୟିକ ଲେଖକ ମଧ୍ୟ ଥିଲେ । ଫତୁରାନନ୍ଦଙ୍କୁ ଦେଖିବା ମାତ୍ରେ ରାଜୁବାବୁ ଅଭିବାଦନ କଲେ । ବୟସରେ ' ରାଜୁବାବୁ ଫତୁରାନନ୍ଦଙ୍କଠାରୁ ଅଳ୍ପ ଦିନ ଊଣା ହେଲେ ମଧ୍ୟ ଫତୁରାନନ୍ଦଙ୍କ ବହୁ ପୂର୍ବରୁ ସେ ଓଡ଼ିଶାରେ ସାହିତ୍ୟିକ ପ୍ରସିଦ୍ଧି ଅର୍ଜନ କରି ସାରିଥିଲେ । ଫତୁରାନନ୍ଦ ଥିଲେ ତାଙ୍କ ସାରସ୍ୱତ ପ୍ରତିଭାର ଏରୁଣ୍ଡିବନ୍ଧରେ ମାତ୍ର । ତଥାପି ସେ ଦୁଇ ଜଣକ ମଧ୍ୟରେ ସାହିତ୍ୟିକ ବନ୍ଧୁତା ଅତି ନିବିଡ଼ ହୋଇଯାଇଥିଲା । ମୋ କେଶ୍ ଚଳାଇବା ପାଇଁ ରାଜୁବାବୁ ସମ୍ମତି ପ୍ରକାଶ କରିଥିଲେ । ସେ ଭଲ କରି ଜାଣିଥିଲେ ଜଣେ ୨୧/୨୨ ବର୍ଷ ବୟସର ଛାତ୍ରଠାରୁ ଏପରି ଏକ ଅଣଉତ୍ପାଦନକାରୀ ବ୍ୟାପାରରେ ଓକିଲ ଭାବରେ ତାଙ୍କର କିଛି ଆର୍ଥିକ ଲାଭ ହେବ ନାହିଁ

ବରଂ ସେ କେତେକ ଲୋକଙ୍କ ଚକ୍ଷୁଶୂଳ ହେବେ, ତଥାପି ସେ ଫତୁରାନନ୍ଦଙ୍କ ଅନୁରୋଧ ରକ୍ଷା କଲେ ।

ଯଥା ସମୟରେ ଜଜକୋର୍ଟରେ ସେସନ ବିଚାର ଆରମ୍ଭ ହେଲା । ବିଚାରପତି ଥିଲେ ଜୟକୃଷ୍ଣ ମିଶ୍ର । ରାଜୁବାବୁ କିନ୍ତୁ କେଶ୍ ଲଢ଼ିବା ପରିବର୍ତ୍ତେ କୋର୍ଟକୁ ଆବେଦନ କଲେ ଯେ ପ୍ରତିବାଦୀ ଛାତ୍ର ଓ କମ୍ ବୟସର ହୋଇଥିବାରୁ ତାଙ୍କୁ କ୍ଷମା କରି ଦଆଯାଉ । ତାଙ୍କର ଏପରି ପଦକ୍ଷେପ ମୋର ତଥାକଥିତ କେତେକ ଶୁଭେଚ୍ଛୁଙ୍କୁ ବିଚଳିତ କଲା । ସେମାନେ ଏହାର ଖରାପ ପ୍ରତିକ୍ରିୟା ସଂପର୍କରେ ମୋତେ ସତର୍କ କରାଇବାକୁ ଲାଗିଲେ । ଫଳରେ ମୁଁ ଅନ୍ୟ ଏକ ଓକିଲ ନିଯୁକ୍ତ କଲି । ଏହାପରେ ଯାହା ସବୁ ଘଟଣା ପ୍ରବାହ ହେଲା ସେଥିରୁ ସ୍ପଷ୍ଟ ଜଣାପଡ଼ିଲା ରାଜୁବାବୁ ମୋ ପାଇଁ ଯେଉଁ ପଦକ୍ଷେପ ନେଇଥିଲେ ତାହା ଯଥାର୍ଥ ଥିଲା ଏବଂ ଅର୍ଥ ପିପାସା ନଥିବା ଜଣେ ପ୍ରବୀଣ ଓକିଲ ଭାବରେ ମୋ ପ୍ରତି ତାହା ଥିଲା ସମ୍ବେଦନ ମୂଳକ ଆନ୍ତରିକତାର ନିଦର୍ଶନ ।

ଏ ଘଟଣା ପରେ ମଧ୍ୟ ରାଜୁବାବୁ ମୋ ପ୍ରତି ଆଦୌ ବିରକ୍ତି ପ୍ରକାଶ କରି ନଥିଲେ । ପରବର୍ତ୍ତୀ ଜୀବନରେ ୧୯୫୯ ଜୁନ୍ ମାସରେ ମୁଁ ଯେତେବେଳେ ସମବାୟ ବିଭାଗର ଚାକିରୀ ଛାଡ଼ି ବାଲୁବଜାରରେ 'କଟକ ବୁକ୍ ଷ୍ଟଲ୍' ନାମରେ ଏକ ବହି ଦୋକାନ ଓ ପ୍ରକାଶନ ସଂସ୍ଥା ଆରମ୍ଭ କଲି ସେତେବେଳକୁ ରାଜୁବାବୁ ମଧ୍ୟ ପୁସ୍ତକ ବ୍ୟବସାୟ ଆରମ୍ଭ କରିଥିଲେ । ତେଲେଙ୍ଗା ବଜାରଠାରେ ତାଙ୍କ ବାସଗୃହ ନିକଟରେ ପ୍ରତିଷ୍ଠିତ 'ଶାନ୍ତି ନିବାସ ବାଣୀ ମନ୍ଦିର' ଓଡ଼ିଶାର ସାହିତ୍ୟ ପ୍ରେମୀମାନଙ୍କ ପରିସରରେ ଅତି ଲୋକପ୍ରିୟ ହୋଇପାରିଥିଲା । ସେତେବେଳେ ସେ ମୋ ପ୍ରକାଶିତ ବହି ସହ ତାଙ୍କ ବହିର ଆଦାନ ପ୍ରଦାନ କରୁଥିଲେ । ମୋତେ ସେ ଜଣେ ବ୍ୟବସାୟିକ ପ୍ରତିଦ୍ୱନ୍ଦ୍ୱୀ ରୂପେ ବିଚାର ନ କରି ଜଣେ ନୂତନ ଉଦ୍ୟୋଗୀ ପ୍ରତି ଅଗ୍ରଜୋପମ ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ ଏବଂ ସମୟେ ସମୟେ ଉପଦେଶ ମଧ୍ୟ ଦେଉଥିଲେ । ତାଙ୍କ ସଚ୍ଚୋଟତା ଓ ନିର୍ଲୋଭପଣିଆ ଜଣେ ସଫଳ ନିୟାୟିକ ହେବା ପଥରେ ଯେପରି ବାଧା ସୃଷ୍ଟି କରିଥିଲା, ପୁସ୍ତକ ବ୍ୟବସାୟ କ୍ଷେତ୍ରରେ ମଧ୍ୟ ଅସୁବିଧା ସୃଷ୍ଟି କଲା । ସେତେବେଳେ ପ୍ରକାଶନ କ୍ଷେତ୍ରରେ ସବୁଠାରୁ ଆକର୍ଷଣୀୟ ଥିଲା ପାଠ୍ୟପୁସ୍ତକ ପ୍ରକାଶନ, ସେଥିପାଇଁ ଅମଲାତନ୍ତ୍ରର ସମସ୍ତ ସୋପାନକୁ ବିଭିନ୍ନ ଉପାୟରେ ମସୃଣ କରିବାକୁ ପଡୁଥିଲା । ଏ ବ୍ୟାପାରରେ କୌଣସି ପନ୍ଥାକୁ ଅନ୍ୟାୟ ବା ଅନୀତି ବୋଲି ଗ୍ରହଣ କରାଯାଉ ନଥିଲା ।



ସେସବୁ ରାଜୁବାବୁଙ୍କ କଳ୍ପନାର ବାହାରେ ଥିଲା । ପ୍ରାଇଜ ଓ ଲାଇବ୍ରେରୀ ଯୋଗ୍ୟ ଉନ୍ନତମାନର ପୁସ୍ତକର ପ୍ରକାଶନ ଓ ବ୍ୟବସାୟକୁ ସେ ଏକ ମହତ୍ତର ବ୍ୟବସାୟ ବୋଲି ଗ୍ରହଣ କରିଥିଲେ କିନ୍ତୁ ଏହି ଆପତ ମହତ ପଥରେ ମଧ୍ୟ ବହୁ କଣ୍ଟା ଥିଲା । ଯାହା ତାଙ୍କ ପରି ନୀତିପଥରେ ଚାଲିବାରେ ଅଭ୍ୟସ୍ତ ବ୍ୟକ୍ତିର ପାଦକୁ ଫୁଟାଇବାରେ ସକ୍ଷମ । ସେତେବେଳେ ମଧ୍ୟ ସରାକରୀ ବେସରକାରୀ ପୁସ୍ତକାଳୟର ସ୍କୁଲ କଲେଜର କର୍ମଚାରୀଠାରୁ ଶିକ୍ଷକ ପର୍ଯ୍ୟନ୍ତ ବ୍ୟକ୍ତିଗତ ପାଉଣା, କମିଶନ, ଉପହାର ଦାବୀ କରିବାରେ ଅଭ୍ୟସ୍ତ ହୋଇଯାଇଥିଲେ । ରାଜୁବାବୁ ଏ ପରିସ୍ଥିତିର କିପରି ସମ୍ମୁଖୀନ ହୋଇଥିବେ ମୁଁ ଜାଣିନାହିଁ କିନ୍ତୁ ତାଙ୍କ ବ୍ୟବସାୟ କ୍ରମେ ସଙ୍କୁଚିତ ହୋଇ ଆସିଲା ଏବଂ ଅଶୀ ଦଶକର ଆରମ୍ଭ ବେଳକୁ ପ୍ରାୟ ବନ୍ଦ ହୋଇ ଯାଇଥିଲା । ଲେଖକମାନଙ୍କୁ ସେମାନଙ୍କ ପ୍ରାପ୍ୟ ରୟାଲିଟିରୁ ବଞ୍ଚିତ କରିବା ତାଙ୍କର ଧର୍ମ ନଥିଲା । ତାହା କରିପାରି ଥିଲେ ହୁଏତ ସେ ଅନ୍ୟ କେତେକ ପ୍ରକାଶକଙ୍କ ପରି ନିଜର ପୁଷ୍ଟି ସାଧନ କରିପାରି ଥାଆନ୍ତେ ।

ରାଜୁବାବୁଙ୍କୁ କେତେକ ଲୋକ ଜିଦ୍‌ଖୋର ଓ ଏକ ବାଗିଆ ବୋଲି କହୁଥିଲେ । ଇଂରାଜୀ ଚାରିଅଟ ବା ଦୈନିକ ସାହିତ୍ୟପତ୍ର ପ୍ରକାଶନରେ ସେ ଯେଉଁ ଦୁଃସାହସ ପ୍ରଦର୍ଶନ କରିଥିଲେ ତାହା ତାଙ୍କ ଜିଦ୍‌ଖୋରୀ ମନୋବୃତ୍ତି ନୁହେଁ, ତାହା ତାଙ୍କ ଅତ୍ୟଧିକ ଆଶାବାଦ ଓ ସମସାମୟିକ ସାମାଜିକ ଓ ସାଂସ୍କୃତିକ ପରିବେଶଠାରୁ ବହୁତ ଆଗକୁ ଚିନ୍ତା କରିବାର ଫଳ । ସେହି ଯୋଜନାମାନଙ୍କରେ ମଧ୍ୟ ସେ ସଫଳ ହୋଇ ପାରିଥାନ୍ତେ ଯଦି ସେ ଅମଲାତନ୍ତ୍ରୀ ସାହିତ୍ୟିକଙ୍କ ଜୟଗାନ କରିପାରିଥାନ୍ତେ ବା କ୍ଷମତାଧାରୀମାନଙ୍କ ହାତବାରିସୀ ହୋଇପାରିଥାନ୍ତେ ।

ସାହିତ୍ୟିକ ସ୍ୱୀକୃତି ସେ କେବେ ଇଚ୍ଛା କରିନଥିଲେ କିମ୍ବା ବହୁ ପ୍ରୟାସ ଲବ୍ଧ ସେ ଆକାଶ କୁସୁମର ଆଶା ମଧ୍ୟ ତାଙ୍କର ନଥିଲା । ନିଜର କୌଣସି ପୁସ୍ତକର ଉଦ୍‌ଘାଟନ ଉତ୍ସବ କରାଇ ସେଥିରେ ମନ୍ତ୍ରୀଙ୍କ ଭାଷଣ କରାଇ ନଥିଲେ କିମ୍ବା ''ରାଜକିଶୋର ପଟ୍ଟନାୟକ ଜୟନ୍ତୀ' ଉତ୍ସବ ବା ସମ୍ବର୍ଦ୍ଧନା ସଭା କରାଇ ଫୁଲମାଳ ପିନ୍ଧି ନଥିଲେ । ଅନେକ ଦୃଷ୍ଟିରୁ ତାଙ୍କର ଘନିଷ୍ଠ ସାହିତ୍ୟିକ ବନ୍ଧୁ ଫତୁରାନନ୍ଦଙ୍କ ସହ ତାଙ୍କ ଜୀବନ ତୁଳନୀୟ । ଉଭୟେ ଥିଲେ ନୀରବ ସାଧକ ଓ ଆତ୍ମ ପରିପ୍ରଚାର ବିରୋଧୀ, ଉଭୟେ ଅନମନୀୟ ବ୍ୟକ୍ତିତ୍ୱର ମଣିଷ । ଉଭୟଙ୍କର ଆୟୁକାଳ ୮୧ ବର୍ଷ । ଫତୁରାନନ୍ଦ ତାଙ୍କ ଜୀବନର ଶେଷ

ବର୍ଷରେ ଅଥର୍ବ ଅବସ୍ଥାରେ ଏକାଡ଼େମୀର ଏକ ଅଦିନିଆ ଉତ୍ସବରେ କିଛି ବିଶେଷ ଧରଣର ଆର୍ଥିକ ସାହାଯ୍ୟ ପାଇଥିଲେ ଏବଂ ରାଜୁବାବୁଙ୍କୁ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଗୋଟାଏ ସମ୍ମାନର ଘୋଡ଼ଣିରେ ଘୋଡ଼େଇ ଦିଆଯାଇଥିଲା । ଉଭୟଙ୍କ ଜୀବନୀ ଓଡ଼ିଶାର କବିଯଶ ପ୍ରାର୍ଥୀମାନଙ୍କୁ ଦୁଇଟି ବିଷୟରେ ନିର୍ଦ୍ଦେଶ ଓ ସୂଚନା ଦିଏ । ଗୋଟିଏ ହେଉଛି ଆଶ୍ୱାସନାର ବାଣୀ ଅର୍ଥାତ୍ ରାଜପଥର ଟ୍ରାଫିକ୍ ସଙ୍କେତ Better late than never ଡେରି ହେଲେ ମଧ କିଛି ନା କିଛି ସ୍ୱୀକୃତି ମିଳୁଛିତ । ଦ୍ୱିତୀୟ ନିର୍ଦ୍ଦେଶଟି ହେଲା—ହେ ''ମନ୍ଦ କବିଯଶ ପ୍ରାର୍ଥୀ' ଗଣ ! ଯଦି ତୁମେମାନେ ନିଜ ଉଦ୍ଦେଶ୍ୟରେ ସିଦ୍ଧିଲାଭ କରିବାକୁ ଚାହଁ, ତେବେ ଅନ୍ୟ ଯାହା କିଛି ସାଧନା ସାଙ୍ଗକୁ ୮୦ ବର୍ଷରୁ ଉର୍ଦ୍ଧ୍ୱକୁ ବଞ୍ଚି ରହିବା ପାଇଁ ପ୍ରାଣପଣେ ଉଦ୍ୟମ ଆରମ୍ଭ କରିଦିଅ ।'' ରାଜୁବାବୁଙ୍କ ଜୀବନୀ ହୁଏତ ଓଡ଼ିଶାରେ ଆପାଂକ୍ତେୟ ହୋଇ ରହିଯିବ କିନ୍ତୁ ସାହିତ୍ୟ ଓ ସଂସ୍କୃତିର ସେବା ପାଇଁ ସେ ଜୀବନ ସାରା ଯେଉଁ ଅସଫଳ ଉଦ୍ୟମ ସବୁ କରିଗଲେ ତାହାର ତଥ୍ୟ ସବୁ ସ୍ମରଣରେ ରହିଲେ ଆଗତପ୍ରାୟ ଏକବିଂଶ ଶତକର ବିପୁଳ କାଳବେଳାରେ ତାହାର ସଫଳ ପରିସମାପ୍ତି ପାଇଁ କେହିବା କେହି ଉଦ୍ୟମ କରି ପାରନ୍ତି । ଏହି ଆଶାହିଁ ମୋର ତାଙ୍କ ପାଇଁ ଏକମାତ୍ର ଶ୍ରଦ୍ଧାଞ୍ଜଳି ।

ମିଶ୍ରଲେନ୍
ଝାଞ୍ଜିରୀମଙ୍ଗଳା କଟକ-୯





# ରାଜୁମାମୁଁ

## କମଳ କୁମାରୀ ପଟ୍ଟନାୟକ

ରାଜୁମାମୁଁ ମୋ ମାଆର ଦାଦାପୁଅ ଭାଇ । ମୋ ଅଜାଙ୍କୁ ମିଶାଇ ସେମାନେ ଥିଲେ ଏଗାର ଭାଇ ଓ ଦୁଇ ଭଉଣୀ । ଏମାନେ ସମସ୍ତେ ସ୍ୱର୍ଗୀୟ ଜଗନ୍ନାଥ ପଟ୍ଟନାୟକ ଓ ଶ୍ରୀମତୀ ସୁଲକ୍ଷଣା ଦେବୀଙ୍କ ଔରସରୁ ଭଞ୍ଜନଗର ନିକଟରେ ନୂଆଗାଁରେ ସେମାନଙ୍କର ଜନ୍ମ । ମୋର ସବା ସାନ ଅଜା ଶ୍ରୀବତ୍ସ ପଟ୍ଟନାୟକଙ୍କର ରାଜୁମାମୁଁ ହେଲେ ଜ୍ୟେଷ୍ଠ ପୁତ୍ର । ପ୍ରତ୍ୟେକ ଅଜା ଥିଲେ ଶିକ୍ଷିତ ଏବଂ ସେମାନଙ୍କର ବ୍ୟକ୍ତିତ୍ୱ ଥିଲା ଉଚ୍ଚକୋଟୀର । ଗଞ୍ଜାମ ଜିଲ୍ଲାର ଖଣ୍ଡମଣ୍ଡଳରେ ପୁରୁଖା ଲୋକମାନଙ୍କ ମୁହଁରୁ ଏବେ ମଧ୍ୟ ଏମାନଙ୍କ ସଂକ୍ରାନ୍ତରେ ବହୁତ କଥା ଶୁଣିବାକୁ ମିଳେ । ଅଜାମାନେ ସମସ୍ତେ ନୂଆଗାଁ ମାଟିରେ ଜନ୍ମ ସତ; କିନ୍ତୁ ସେମାନେ ଓଡ଼ିଶାର ତେରଟି ଜିଲ୍ଲାରେ ବିକ୍ଷିପ୍ତ ହୋଇ ରହିଥିଲେ । ତେବେ ସେମାନଙ୍କ ମଧ୍ୟରୁ ଦୁଇ ଜଣ ନୂଆଗାଁରେ ରହିଗଲେ । ସେମାନଙ୍କର ବିରାଟ ଫାର୍ମ ହାଉସ ଥିଲା । ବିଭିନ୍ନ ପ୍ରକାର ଫଳ ଗଛ ସବୁ ବଗିଚାରେ ଲଗାଯାଇଥିଲା । ସେତେବେଳେ ସମୟରେ ସେହି ବଗିଚାରେ ଅଙ୍ଗୁର ମଧ୍ୟ ହେଉଥିଲା । ଇଏ ହେଲା ଜଗନ୍ନାଥ ପଟ୍ଟନାୟକଙ୍କର ଅବଦାନ । ପିଲାଟି ଦିନରୁ ଗଛ ଲଗାଇବା ବଗିଚା ସଫା କରିବାଠାରୁ ଆରମ୍ଭ କରି ଚାଷ ଜମିରେ ମୁଲିଆ ସହ ହାତ ବଟାଇବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଏମାନେ ସମସ୍ତେ କରୁଥିଲେ । ପରବର୍ତ୍ତୀ କାଳରେ ଯେ ଯାହାର ସଂସାର ଗଢ଼ିବା ସହିତ ପ୍ରାୟ ସମସ୍ତଙ୍କର ଫୁଲ, ଫଳ ଗଛ ପ୍ରତି ଆଦର ଅବ୍ୟାହତ ରହିଥିଲା । ଏହି କାରଣରୁ ହିଁ ମୋର ସବୁ ଅଜାଙ୍କ ଘରେ ଥିଲା ଫଳ ବଗିଚା । ଯେଉଁ ଦୁଇ ଭାଇ ଗାଁ ଛାଡ଼ି ଯାଇ ନଥିଲେ ସେ ଦୁହିଁଙ୍କୁ ଛାଡ଼ିଦେଲେ ଅନ୍ୟ କୌଣସି ଭାଇ ପୈତୃକ ସମ୍ପତ୍ତିର ଭାଗିଦାର ହେବା ପାଇଁ କେବେ ମନ ବଳାଇ ନଥିଲେ । କହିବାକୁ ଗଲେ ଏମାନେ ଥିଲେ ଏକ ବିରାଟ ଯୁଗ୍ମ ପରିବାର । ବିବାହ ଉତ୍ସବ, ପର୍ବପର୍ବାଣିରେ ହିଁ ଅଜାମାନେ ଏକାଠି ହୁଅନ୍ତି ନୂଆଗାଁରେ । ଅଜାମାନଙ୍କ ମଧ୍ୟରୁ ଦୁଇ ଜଣ ଅଜା, ଜଣେ ଶ୍ରୀବତ୍ସ ପଟ୍ଟନାୟକ (ରାଜୁମାମୁଁଙ୍କ ବାପା) ଏବଂ ଆଉ ଜଣେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ (ବିଜୁମାମୁଁଙ୍କ ବାପା) କଟକରେ ରହିଯାଇଥିଲେ । ଶ୍ରୀବତ୍ସ ପଟ୍ଟନାୟକଙ୍କ ଘର କାଠଯୋଡ଼ୀ କୂଳର ଏବଂ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକଙ୍କ ଘର ତୁଳସୀ ପୁରରେ । ମୋର ଆଉ ଦୁଇ ତିନିଜଣ ଅଜାଙ୍କୁ ଦେଖିଛି ପିଲାଦିନେ ।

ମୁଁ ମାଟ୍ରିକ୍ୟୁଲେସନ ଭଞ୍ଜନଗର ସ୍କୁଲରୁ ପାଶ କରି ଆସିଲି ପଢ଼ିବାକୁ ରେଭେନ୍ସା କଲେଜ । ବାପାଙ୍କ ସାଙ୍ଗରେ ଆସି ପହଞ୍ଚେ ଶ୍ରୀବତ୍ସ ପଟ୍ଟନାୟକଙ୍କ ଘରେ । ତାଙ୍କର କୋଠା,





ବାଡ଼ି ବଗିଚା ଦେଖି ମୁଁ ଟିକିଏ ଡରି ଯାଇଥିଲି । ସେଥିରେ ପୁଣି ଇଲେକ୍‌ଟ୍ରିକ୍ ଆଲୁଅ । ସେଦିନ ରାଜୁମାମୁଁ ଘରେ ଥିଲେ । ଆମେ ପହଞ୍ଚିବା ମାତ୍ରକେ ସେ ଓ ତାଙ୍କ ଭଉଣୀମାନେ (ମୋର ମାଉସୀମାନେ) ମତେ ବହୁତ ଆଦରରେ ଘର ଭିତରକୁ ନେଇ ଯାଇଥିଲେ । ସମସ୍ତେ କିଛି କିଛି କଥା ପଚାରୁଥାନ୍ତି, ଅଥଚ ରାଜୁମାମୁଁ ମୋ ସଙ୍ଗେ କଥା ବି କହିଲେନି । ସେଇ ମୁହୂର୍ତ୍ତଠାରୁ ମୁଁ ତାଙ୍କୁ ଭୟ କରେ । ତାଙ୍କୁ ଦେଖିଲେ ମୁଁ ଲୁଚିଯାଏ । କଲେଜରେ ସିନା ଆଡ୍‌ମିଶନ ଯାଇ କଲି । ରହିବି କେଉଁଠି ? ରେଭେନ୍‌ସା କଲେଜରେ ସେତେବେଳେ ଲେଡ଼ିଜ ହଷ୍ଟେଲ ବୋଲି କିଛି ନଥାଏ । ମନରେ ଶଙ୍କା ଆସିଲା । ତେବେ କ'ଣ ମୋତେ ଏଇ ଅଜାଙ୍କ ଘରେ ରହିବାକୁ ପଡ଼ିବ ? ଯେଉଁଠି ମାମୁଁ ଏତେ ଗମ୍ଭୀର । ଚଳିବି କେମିତି ? ପରେ ଶୁଣିଲି କଲେଜର ଝିଅମାନେ ରହିବା ପାଇଁ ଗୋଟିଏ ପ୍ରାଇଭେଟ୍ ଘର ଭଡ଼ା ନିଆଯାଇଛି ଏବଂ ସେଥିରେ କେବଳ ୧୬ ଜଣ ଛାତ୍ରୀ ରହି ପାରିବେ । ନମ୍ବର ଅନୁସାରେ ବଛା ହେବ, ତେବେ ବିଜ୍ଞାନ ଛାତ୍ରୀମାନଙ୍କୁ ଅଧିକ ପ୍ରାଧାନ୍ୟ ଦିଆଯାଇଥିଲା । ମୁଁ ଅପେକ୍ଷା କରିଥାଏ, କେଉଁଦିନ ମତେ ସିଟ୍‌ଟିଏ ମିଳିବ ? ବାପା ମୋତେ ଛାଡ଼ି ଦେଇ ଗଲେ ଅଜାଙ୍କ ଘରେ, ଦୁଇ ତିନି ଦିନ ରହିବା ପରେ ମୋର ମାଉସୀମାନେ (ବସି ଅପା, ହେମ ଅପା, ଛବି) ମୋତେ ବେଶ୍ ନିଜର କରି ନେଲେଣି । ମୋର ଆଇ ( ଦେଖିବାକୁ ଦେବୀ ପ୍ରତିମା ପରି) ମୋତେ ଖୁବ୍ ଭଲ ପାଉଥିଲେ । ହେଲେ କ'ଣ ହେବ । ରାଜୁମାମୁଁଙ୍କ ଗାମ୍ଭୀର୍ଯ୍ୟ ଆଗରେ ତିଷ୍ଠିବି କିମିତି ? ମୁଣ୍ଡ ମୋର ଗୋଳମାଳିଆ ହୋଇଯାଉଥାଏ । ରାତିରେ ଅଜା, ମାମୁଁ, ମାଉସୀ ଏକାଠି ବସି ବାରଣ୍ଡାରେ ରାତ୍ରି ଭୋଜନ କରୁ । ଆଇ ନିଜେ ପରଶନ୍ତି । ଆଉ ତାଙ୍କୁ ସାହାଯ୍ୟ କରିବାକୁ ଥାଏ ସନିଆ । ଖାଇଲା ବେଳେ ସମସ୍ତେ ଚୁପ୍‌ଚାପ୍ ହୋଇ ଖାଆନ୍ତି । କେହି ବେଶୀ କଥା ବାର୍ତ୍ତା କରନ୍ତିନି । ମୋ ଅଜା ଆହୁରି ଚୁପ୍‌ଚାପ୍ । ତାଙ୍କୁ ମୁହଁ ଦେଖିଲେ ଭାରି ଭୟ ଲାଗେ । ତେବେ ଦିନେ ଦିନେ ସେ ଖାଇ ସାରିବା ପରେ ଡଗଡ଼ମାଳି ଛଳରେ ବେଶ୍ ମଜା ମଜା ଗପ କହି ସମସ୍ତଙ୍କୁ ହସାନ୍ତି । ଆମେ ସମସ୍ତେ ହସି ହସି ବେଦମ୍ ହୋଇଯାଉ । ଦେଖିଲା ବେଳକୁ ଅଜାଙ୍କ ମୁହଁରେ କୌଣସି ହସର ରେଖା ନାହିଁ । ମୋର ମନେ ହେଲା ଯେପରି ବାପ ପୁଅ (ଅଜା ଓ ରାଜୁମାମୁଁ) ପ୍ରାୟ ଏକା ଛାଞ୍ଚରେ ଗଢ଼ା । କ'ଣ ସେମାନେ ଭାବୁଛନ୍ତି ଜମାରୁ ଜାଣି ହେବନାହିଁ । ମୁଁ ସେ ଦୁହିଁଙ୍କୁ ଏତେ ଭୟ କରେ ଯେ ସେମାନଙ୍କ ପାଖ ପଶିବା ମଧ୍ୟ ମୋ ପକ୍ଷେ ସହଜ ନଥିଲା ।

ରାଜୁ ମାମୁଁଙ୍କର ସାନଭାଇ ବୀରକିଶୋର ପଟ୍ଟନାୟକ (ବୀରମାମୁଁ) ସେତେବେଳେ ଲଣ୍ଡନରୁ ପାଶ୍ କରି ଆସିଥିଲେ । ପରେ ସେ ହେଲେ ଚିଫ୍ ଇନ୍‌ସ୍‌ପେକ୍ଟର ଅଫ୍ ଫ୍ୟାକ୍ଟରୀ



ଏଣ୍ଡ୍ ବୟଲରସ୍ । ବେଳେ ବେଳେ ସେ ମୋ ସାଙ୍ଗରେ କଥାବାର୍ତ୍ତା କରନ୍ତି ଏବଂ ପଢ଼ାପଢ଼ି କରିବା ପାଇଁ ଉତ୍ସାହିତ କରନ୍ତି । ଆଉ ଜଣେ ଭାଇ ଭକ୍ତକିଶୋର ପଟ୍ଟନାୟକ (ଭକ୍ତମାମୁଁ) ବର୍ତ୍ତମାନ ଲଣ୍ଡନରେ ରହନ୍ତି । ଜେରିଆରିକ୍ ଉପରେ ତାଙ୍କର ଗବେଷଣା ଉଚ୍ଚକୋଟୀର । ନିକଟରେ ତାଙ୍କର ବକ୍ତୃତାମାଳା ଶୁଣିବା ପାଇଁ ସୁଯୋଗ ପାଇଛି । ଭକ୍ତମାମୁଁ ସେତେବେଳେ ପଢୁଥିଲେ ମେଡ଼ିକାଲ କଲେଜରେ । ଭାରି ଖୁସିବାସିଆ ମଣିଷଟିଏ । ଆମ ସାଙ୍ଗେ ବେଶ୍ ମିଶନ୍ତି । ସେଥିପାଇଁ ହିଁ ମୁଁ ପିଲାଦିନରୁ ତାଙ୍କ ପାଖରେ ବେଶ୍ ଭରସି ପାରେ । ଆଉ ଦୁଇ ଭାଇ ଯୁଗଳ କିଶୋର ପଟ୍ଟନାୟକ, ଜୟ କିଶୋର ପଟ୍ଟନାୟକ ବାହାରେ ପଢୁ ଥିଲେ । ସେ ଦୁହିଁକୁ ମୁଁ ଦେଖି ନ ଥିଲି । ବହୁ ବର୍ଷ ପରେ ସେ ଦୁହିଁଙ୍କୁ ଦେଖିବାର ସୁଯୋଗ ମତେ ମିଳିଥିଲା । ବଡ଼ ଭଉଣୀ କେହିବି ବିବାହ କରି ନ ଥିଲେ । ମୋର ଆଉ ଜଣେ ମାଉସୀ ବସି ଅପା (ରାଜୁ ମାମୁଁଙ୍କ ସାନ ଭଉଣୀ) ଯେକି ମୋର ପ୍ରତ୍ୟକ୍ଷ ଭାବେ ଯତ୍ନ ନେଉଥିଲେ, ମୋର ଲୁଗା ନଥିଲେ ଚୁପ୍ କରି ଯାଇ ଶାଢ଼ି କିଣି ଦେଉଥିଲେ । ମୋର ବ୍ଲାଉଜ ନିଜେ ରାତିରେ ଇସ୍ତ୍ରୀ କରି ଦେଉଥିଲେ । ସେ ଘରର ଟିକିନିଖି କାମ, ମୋର ଓ ସମସ୍ତଙ୍କ କଥା ବୁଝିବା ପରେ ମଧ୍ୟ କ'ଣ ଗୁଡ଼ାଏ ଲେଖୁଥିଲେ । ସେତେବେଳେ ମୋର ଜ୍ଞାନ ବା କେତେ ? ପରେ ଜାଣିଲି ସେ ଲେଖୁଥିଲେ ଅମଡ଼ାବାଟ ଉପନ୍ୟାସ ।

କଟକ ଆସିବା ପୂର୍ବରୁ ମୁଁ ଜାଣିଥିଲି ଯେ ରାଜୁମାମୁଁ ଉପନ୍ୟାସ ଲେଖନ୍ତି । ଆସିବା ଆଗରୁ ଭାବିଥିଲି ତାଙ୍କୁ ପଚାରିବି ବହି ଲେଖିବା କଥା । କିନ୍ତୁ ପଚାରିବା ପାଇଁ ମନ ଥିଲେ ବି ସାହାସ ନାହିଁ । ସେ ଦିନେ ତାଙ୍କ ରୁମ୍‌ରେ ଥିଲେ । ଲୁଚିକରି ଯାଇ ତାଙ୍କ ଲେଖା ସବୁ ଆଡ଼େଇଲି । ହଠାତ୍ ସେ ଭିତରକୁ ପଶି ଆସିଲେ । ମୁଁ ଡରରେ ଶଙ୍କିଗଲି । କିନ୍ତୁ କି ଆଶ୍ଚର୍ଯ୍ୟକଥା ! ସେଦିନ ଦେଖିଲି, ପ୍ରଥମେ ତାଙ୍କ ମୁହଁରେ ହସ । କହିଲେ—''କି'ରେ କମଳ ତୁ ବହି ପଢ଼ିବାକୁ ଭଲ ପାଉ ?'' ମୋଠୁ ଉତ୍ତର ନ ପାଉଣୁ ଏପଟୁ ସେପଟୁ ଖୋଜି ପାଞ୍ଚ ଛଅଟା ତାଙ୍କ ନିଜ ଲେଖା ବହି ଏବଂ ଆଉ କେତେ ଖଣ୍ଡ ଅନ୍ୟ ଲେଖକଙ୍କ ବହି ଦେଉ ଦେଉ କହିଲେ—ନେ ତୁ ବହିତକ । ସେ ବହି ପ୍ରତ୍ୟେକଟିରେ ଲେଖି ଦେଲେ ''ମୋର ସ୍ନେହର କମଳକୁ ଉପହାର — ରାଜୁମାମୁଁ'' । ସେହି ଦିନଠାରୁ ମୁଁ ଜାଣି ପାରିଲି ବାସ୍ତବିକ ତାଙ୍କର ମୋ ପ୍ରତି କେତେ ସ୍ନେହ ଓ ମମତା । ଉପରକୁ ଜମା ଜଣାପଡ଼ନ୍ତିନି ଅଥଚ ମଣିଷଟା ଭିତରେ ଏତେ କୋମଳତା ରହିଛି । ବାଃ ! ମୋ ଅଜା ମଧ୍ୟ ନିଶ୍ଚୟ ସେପରି ହୋଇଥିବେ ।

ଆଉ ଦିନକର ଘଟଣା । ହଷ୍ଟେଲରେ ମୋର ସିଟ୍ ହୋଇ ଯାଇଛି । ମୁଁ ଏହି ସ୍ନେହ ଭରା ଅମୃତ ତୁଲ୍ୟ ଘରୁ ବିଦାୟ ନେବି । ମନ ଭିତରେ ଭୀଷଣ କୋହ । ରାଜୁମାମୁଁ ଠିକ୍

ଠଉରେଇ ନେଇଥିଲେ ମୋ ମନ କଥା । ସେଦିନ ସନ୍ଧ୍ୟାରେ ବସି ପାଠ ପଢୁଛି । ହଠାତ୍ ଦେଖେ ରାଜୁମାମୁଁ ମୋ ପାଖରେ ଛିଡ଼ା ହୋଇଛନ୍ତି । ଅତର୍କିତ ଭାବରେ ମୁଁ ମୋ ଚେୟାର ଉପରୁ ଉଠିପଡ଼ି ଠିଆ ହୋଇଗଲି । କହିଲେ 'ବସ୍ ଲୋ ମା କମଳ—ତୁ ମନ ଦୁଃଖ କରୁଛୁ କି ହଷ୍ଟେଲ ପଳାଇବୁ ବୋଲି ।' ଏତିକି ପଚାରୁ ପଚାରୁ ମୋର କଣ୍ଠ ରୁଦ୍ଧ ହୋଇଗଲାଣି । ପୁଣି ବୁଝାଇ କହିଲେ—''ହଷ୍ଟେଲରେ ରହିଲେ କ'ଣ ହେଲା । ତୁ କ'ଣ ଏଇ ଘରକୁ ଆସିବୁନି । କଥାରେ ଅଛି—ତାଇ ତାଇ, ତାଇ । ଅଜାଘର ଯାଇ, ମାଛଭାତ ଖାଇ । ଜହ୍ନ କେଡ଼େ ସୁନ୍ଦର । ଏଣୁ ତାକୁ ନାଁ ଦଆଯାଇଛି ଜହ୍ନ ମାମୁଁ ।''ତୋର ତ ଏଇ ହେଲା ପ୍ରଥମ ଘର ହଷ୍ଟେଲ ଦ୍ୱିତୀୟ ଘର । ତୁ ପ୍ରତି ଶନିବାର ଦିନ ସନ୍ଧ୍ୟାରେ କ୍ଲାସ ସାରି ଚାଲି ଆସିବୁ ହେମ (ତାଙ୍କର ସାନଭଉଣୀ ସେତେବେଳେ ରେଭେନ୍‌ସା କଲେଜରେ ପଢୁଥିଲେ) ସାଙ୍ଗରେ । ରବିବାର ରହି ସୋମବାର ଦିନ ତୁ ପୁଣି ହେମ ସାଙ୍ଗେ ଚାଲିଯିବୁ । ସେଇ ଦିନୁଁ ରାଜୁମାମୁଁ ହୋଇଗଲେ ମୋର ଲୋକାଲ ଗାର୍ଡ଼ିଆନ୍ । ପ୍ରତିଥର ହଷ୍ଟେଲରୁ ବାହାରିବା ଏବଂ ପହଞ୍ଚିବା ଦିନ ପାଇଁ ମୁଁ ରାଜୁମାମୁଁଙ୍କଠାରୁ ଚିଠି ନେଇଯାଏ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଦେବା ପାଇଁ । ଏଇଟା ଥିଲା ସେ ସମୟର ହଷ୍ଟେଲ ରହିବା ଛାତ୍ରୀଙ୍କ ପାଇଁ କଟକଣା । ସେହି ଦିନଠାରୁ ରାଜୁମାମୁଁଙ୍କ ପାଖରେ ଭରଷି ଗଲି । ମୋର ଦରକାର ପଡ଼ିଲେ ତାଙ୍କୁ ମୋ କଥା କହିଲି ।

କଲେଜରେ ଗୋଡ଼ ଦେଉ ଦେଉ ହେଲା ଛାତ୍ର ଧର୍ମଘଟ । କ'ଣ ନା କଲେଜ ଫିସ୍ ବଢ଼ିଯାଇଛି । ରେଭେନ୍ସା କଲେଜରେ ସେତେବେଳେ ଥିଲା ଓଡ଼ିଶା ଆସେମ୍ବ୍ଲିହଲ୍ । ଆସେମ୍ବ୍ଲିହଲ୍ ଆଗରେ ପିଲାଏ ପିକେଟିଂ କରୁଛନ୍ତି । ଝିଅପୁଅ ସମସ୍ତେ ବସିଛନ୍ତି । ଆଗକୁ ପଛକୁ କିଛି ନ ଭାବି ନ ଜାଣି ମୁଁ ସେହି ପିକେଟିଂରେ ଯୋଗ ଦେଇଥିଲି । ପୋଲିସ ହାତରୁ ଦୁଇ ତିନିଟା ଠେଙ୍ଗାମାଡ଼ ମଧ୍ୟ ଖାଇଥିଲି । ଏଇ ଘଟଣା ପୂର୍ବରୁ ମୁଁ ସାଙ୍ଗମାନଙ୍କଠୁଁ ଶୁଣିବାକୁ ପାଇଲି ଯେ ଜଣେ କଲେଜର ଅଧ୍ୟାପକ ପିଲାଙ୍କ ପକ୍ଷ ନେଇ ପ୍ରିନ୍‌ସପାଲ୍‌ଙ୍କୁ ତାଙ୍କର ଇସ୍ତଫାପତ୍ର ଦେଇଛନ୍ତି । ମୋର ସେତେବେଳେ ସେହି ଅଧ୍ୟାପକଙ୍କ ପାଖରେ ମୁଣ୍ଡ ନଇଁ ଆସିଥିଲା । ବୁଝୁ ବୁଝୁ କିଏ ନା - ମୋର ସେହି ଗାମ୍ଭିର୍ଯ୍ୟଭରା ମାମୁଁ-ରାଜୁମାମୁଁ । ସେତେବେଳେ ସେ ଥିଲେ ମଧୁସୂଦନ ଲ' କଲେଜର ଅଧ୍ୟାପକ । ମୋ ମାମୁଁ ଏତେ ଛାତ୍ରବତ୍ସଳ, ଗରିବ ପିଲାଙ୍କ ପାଇଁ ତାଙ୍କ ମନ ଏତେ କୋମଳ, ଗର୍ବରେ ମୁଁ ନାଚି ଯାଇଥିଲି । ବହୁଥର ଭାବିଛି ତାଙ୍କୁ ମୋର ବଧାଇ ଦେବାପାଇଁ, କାହିଁ ସାହସ ତ ନଥିଲା ।

ଅନେକଦିନ ଧରି ସେ ଅସୁସ୍ଥ ଥିଲେ । ସ୍ୱାଭିମାନ ଥିଲା ତାଙ୍କର ପ୍ରଚୁର । ଅସୁସ୍ଥତା ତାଙ୍କୁ ଆହୁରି ବେଶୀ ସ୍ୱାଭିମାନୀ କରିଦେଲା । ସେ ହୋଇଗଲେ ନିଃସଙ୍ଗ ଏକାକୀ । ସେ



ପୁରସ୍କାର ଲୋଡ଼ି ନଥିଲେ । ଲୋଡ଼ିଥିଲେ ସ୍ୱୀକୃତି । ତାହା ତ ଲେଖକର ହକ ଦାବୀ, ଯାହା ସେ ଅର୍ଜିଛି ଆପଣାର ରକ୍ତ ଦେଇ, ଝାଳ ଦେଇ । ବିଷୁବ ମିଳନରେ ଏବଂ ଶିଶିର-ଉତ୍ସବରେ ସେ ସମ୍ମାନିତ ହୋଇଥିଲେ । ସାହିତ୍ୟ ଏକାଡ଼େମୀର ସମ୍ମାନ ଆସିଥିଲା ବହୁ ବିଳମ୍ବରେ ।

ଦିନକର କଥା । ମନେ ପଡୁଛି ରାଜୁମାମୁଁ ବହିର ପ୍ରକାଶନ ପାଇଁ ସାହାଯ୍ୟ ଲୋଡ଼ିଥିଲେ । କିଏ କ'ଣ ଦେଇଥିଲା ମୁଁ ଜାଣେ ନାହିଁ । ତାଙ୍କୁ ତ ମୋର ଭାରି ଭୟ । ବିଜୁମାମୁଁଙ୍କ ପରି । ମୁଁ କିଛି ଅର୍ଥ ପଠାଇଥିଲି । କିଛିଦିନ ପରେ ସେ ଟଙ୍କା ଫେରି ଆସିଥିଲା । ଲେଖିଥିଲେ, —ଦରକାର ହେଲା ନାହିଁ । ଫେରାଇ ଦେଉଛି । ସେ ଉପରକୁ ଖୁବ୍ କଠୋର । ନଡ଼ିଆ ପରି । ଭିତରଟା କିନ୍ତୁ ରସରେ ଭରା । ଏମିତି ଜଣେ ମଣିଷ ମିଳିବ କେଉଁଠୁ ?

ରାଜୁମାମୁଁ ଆଉ ନାହାନ୍ତି, ସେ ଆଉ ଫେରିବେ ନାହିଁ । ସବୁ ରହିଗଲା ପଛରେ ରାଜୁମାମୁଁଙ୍କୁ ମୋର କୋଟି କୋଟି ପ୍ରଣାମ ।

ଏଇମାଟି ଆପଣଙ୍କ ପରି ସନ୍ତାନ ଜନ୍ମକରୁ — ଯେଉଁମାଟିରେ ଆଜି ଆପଣ ମିଶିଗଲେ ।

ରାଷ୍ଟ୍ରଭାଷା ରୋଡ଼, କଟକ-୧







# ଅମର ବ୍ୟକ୍ତିତ୍ୱ

ଧ୍ରୁବ ଚରଣ ପଣ୍ଡା

ପ୍ରବୀଣ ଲେଖକ ରାଜୁବାବୁଙ୍କ ଧାରଣା ଚାକିରିଆ ଲେଖକର ଅନ୍ତର୍ଦୃଷ୍ଟି ଥାଇପାରେ ମାତ୍ର ପ୍ରକାଶ କରିବାର ଅବକାଶ ନଥାଏ । ତେଣୁ ସେ ସ୍ୱାଧୀନ ଓ ନିର୍ଭୀକ ମତବାଦିତା ଉପରେ ଗୁରୁତ୍ୱ ଦେଇ ପାରିନଥାଏ । ସେ ନିଜେ ଓକିଲ ଓ ଲେଖକ ଥିବାରୁ ତାଙ୍କ ରଚନାରେ ଯୁକ୍ତିତର୍କତା ଓ ସମାଲୋଚନାର ସ୍ୱର ତୀକ୍ଷ୍ଣ କରିବାରେ କୌଣସି ଆଶଙ୍କାର ଅବକାଶ ନଥିଲା । କ୍ଷୋଭ ମଧ୍ୟରେ ଆଉ ଏକ ବଡ଼ ଧଇଞ୍ଜଣର ଗ୍ଲାନିକୁ ସେ ଏଡ଼େଇ ଦେଇ ପାରିନଥିଲେ । ତେଣୁ ସେ ପ୍ରକାଶ କରିଛନ୍ତି ରାଜୁକୁ ଭଲଭାବରେ ବୁଝିବା ପାଇଁ ଓଡ଼ିଶାରେ ଅସମ୍ଭବ । କାରଣ ଆମେ ସମସ୍ତେ ଦୋମୁହାଁ । ପାରିପାର୍ଶ୍ୱିକ ଅବସ୍ଥାଚକ୍ରରେ ବନ୍ଦୀ ଯୋଗୁଁ କେହି କାହାକୁ ଚିହ୍ନିପାରେ ନାହିଁ ।

ମୁଁ ଏହି ସାରସ୍ୱତ ସାଧକଙ୍କର ସାନ୍ନିଧ ଅନୁଭବ କରିଥିଲି ସାହିତ୍ୟ ସଂସଦ ଆନୁକୂଲ୍ୟରେ ଏକବିଂଶ ଶିଶିର ଉତ୍ସବରେ ସେ ମାନପତ୍ର ପାଇବା କାଳରେ । ଅଭ୍ୟର୍ଥନାର ଉତ୍ତର ଦେବା ପ୍ରସଙ୍ଗରେ ତାଙ୍କର ଓଜସ୍ୱିନୀ ଭାଷଣ ପରିପ୍ରେକ୍ଷୀରେ ଉକ୍ତ ଅନୁଷ୍ଠାନର ଉତ୍ସାହ ପ୍ରଦାନ ଧାରାର ବିଶେଷତା ଓ ଆନୁଗତ୍ୟର ସାରବତ୍ତା ପ୍ରକାଶରେ ତାଙ୍କ ଲେଖକ ଜୀବନର ବ୍ୟକ୍ତିତ୍ୱ ପରାକାଷ୍ଠା ଉଚ୍ଚକୋଟୀର ବୋଲି ଅନ୍ୟମାନଙ୍କ ମନରେ ରେଖାପାତ କରୁଥିଲା । ସେ ବରାବର ଏହି ଅନୁଷ୍ଠାନକୁ ଆସୁଥିବା ମୁଁ ଲକ୍ଷ୍ୟ କରିଛି । ଏହି ଅନୁଷ୍ଠାନର ପ୍ରତିଷ୍ଠାତା ସୁ ସାହିତ୍ୟିକ ଶିକ୍ଷାବିତ୍ ସମ୍ପାଦକ ରବିନାରାୟଣ ମହାପାତ୍ରଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନ ଥିଲା । ମୁଁ ସେଠାରେ ଯେଉଁ ଗପ ଓ କବିତା ପାଠୋତ୍ସବରେ ପଢ଼ିଥାଏ, ତା ଉପରେ କିଛି ନା କିଛି ମନ୍ତବ୍ୟ ପ୍ରଦାନ କରନ୍ତି । ତାଙ୍କର ଶାଣିତ ଉକ୍ତି ମୋତେ ଶଙ୍କିତ ଓ ଉତ୍ସାହିତ କରିଥାଏ । ତାଙ୍କ ସହିତ ରବିବାବୁଙ୍କର ଭାବର ଆଦାନ ପ୍ରଦାନ ଲକ୍ଷ୍ୟ କରିବାର ସୁଯୋଗ ମୋତେ ମିଳିଥିଲା । ସେ ସବୁ ମୋ ସ୍ମୃତିରେ ଜାଜ୍ୱଲ୍ୟମାନ ହୋଇ ରହିଛି ।

ବ୍ୟକ୍ତିକୈନ୍ଦ୍ରିକ ମଣିଷଟି ଯେତେବେଳେ ତା'ର ସୁଖଦୁଃଖର ପରିବେଶରୁ ବାହାରି ସମାଜକୈନ୍ଦ୍ରିକ ହୋଇଯାଏ ସେ ସମାଜକୁ କ'ଣ ଦେଉଛି ଓ ଦେଇଗଲା ତାହା ଚର୍ଚ୍ଚିତ ବିଷୟ ହୋଇପଡ଼େ । ସେ ଜଣେ ଏପରି ଲେଖକ ଲେଖକମାନଙ୍କୁ ବୁଝିବାକୁ ତାଙ୍କ



ଅବସ୍ଥା ଅନୁଧ୍ୟାନ କରି ତାଙ୍କ ଲେଖା ପାଇଁ ପାରିଶ୍ରମିକ ଦେବାକୁ ଯାଇଥିଲେ । ତାଙ୍କର ତ୍ୟାଗ ସାହିତ୍ୟର ପ୍ରତିଷ୍ଠାରେ ଲେଖକଙ୍କ ସହଯୋଗ କାମନା ରହୁଥିଲା । ଏହାହିଁ ତାଙ୍କର ସାହିତ୍ୟ ପତ୍ର ସମ୍ପାଦନା କରି ସଂସ୍ଥାଗଠନରେ ସାହିତ୍ୟ ବିକାଶର ଅଖଣ୍ଡ ପ୍ରୀତିର ସ୍ମାରକୀ ମାତ୍ର ।

ରାଜକିଶୋର ବାବୁଙ୍କ ବାଲ୍ୟଜୀବନ, ଛାତ୍ରଜୀବନ, ଓକିଲାତି ଜୀବନ, ସଂସାରୀ ଜୀବନ, ରାଜନୀତିକ ଜୀବନ ଓ ସାହିତ୍ୟ ଜୀବନର ଅଧ୍ୟାୟ ସାମଗ୍ରୀକଭାବେ ସବୁ ସ୍ତରର ଲୋକ ପାଇଁ ଶିକ୍ଷଣୀୟ ତଥା ଅନୁଧ୍ୟାନର ବିଷୟ ହୋଇ ରହିଯିବ ।

ତାଙ୍କ ଜୀବନଟା ଏକ ଗବେଷଣାଗାର । ସେ ସର୍ବଦା ପରୀକ୍ଷା ନୀରିକ୍ଷା କରି ଜୀବନ ବିତାଇଛନ୍ତି । ସେ କଲମ ଚଳାଇ ଏକ ସାରସ୍ୱତ ବିପ୍ଳବର ଚଲାପଥକୁ ବାଛି ନେଇଛନ୍ତି । କୌଣସି ପରିସ୍ଥିତିକୁ ଭ୍ରୂକ୍ଷେପ ନକରି ନାନା ବାଧା ବିଘ୍ନ ପ୍ରତିହତ କରି କେତେକଙ୍କ ଅସହଯୋଗ ଅସୂୟାକୁ କାଟି ଦୃଢ଼ମନୋବଳ ଉପରେ ନିଜକୁ ପର୍ଯ୍ୟବସିତ ରଖି ପାରିଥିଲେ । ଏହାହିଁ ତାଙ୍କ ଜୀବନର ବିଶେଷତ୍ୱ ।



# ଏକ୍‌ବାଗିଆ ରାଜୁବାବୁ

ଅର୍ଦ୍ଧେନ୍ଦୁ ମୋହନ ଦେ

ଅଶିବର୍ଷର ଯୁବକ ଜଣଙ୍କୁ ହଠାତ୍ କେଇ ଦିନରେ ବୁଢ଼ା ହୋଇଯିବା ଦେଖି କେମିତି କେମିତି ଲାଗିଲା । ତା'ପରେ ଶୁଣିଲି ସେ ଆଉ ନାହାନ୍ତି । ଜନ୍ମିଲେ ମରିତେ ହବେ, ଅମର କୋଥାୟ କବେ, ଚିରସ୍ଥିର କୋଥାନୀରି, ହାୟରେ ଜୀବନ ନଦେ ? ଏଇ ଯୁବକଟି ଥିଲେ ରାଜକିଶୋର ପଟ୍ଟନାୟକ । ଏକ ବାଗିଆ ଲୋକଟେ । ଦରଦି ମଣିଷଟେ । ନିରୋଳା ସ୍ନେହଟିକେ ପାଇବାକୁ ଆଉଟି ପାଉଟି ହେଇ ଶେଷ ନିଶ୍ୱାସ ତ୍ୟାଗ କଲେ ମାର୍ଚ୍ଚ ପହିଲା ଦିନ ଏଇ ବର୍ଷ ୧୯୯୭ ।

ତାଙ୍କୁ ଔପନ୍ୟାସିକ, ଗାଳ୍ପିକ ଭାବେ ବିଚାର କରିବାର ଧୃଷ୍ଟତା ମୋର ନାହିଁ । ତାଙ୍କ ରକ୍ତରେ ସାହିତ୍ୟ ଖୁଜୁବୁଜୁ କରୁଥିଲା ପ୍ରକାଶ ପାଇବା ପାଇଁ ଏବଂ ସେ ମଧ୍ୟ ଅଭ୍ୟାସଗତ ଭାବେ ଏହି ସାହିତ୍ୟ ନିଶାକୁ ସାକାର କରିଥିଲେ । ଲେଖନୀକୁ ଫୁରସତ୍ ଦେଇ ନାହାନ୍ତି ଅଳସ ଭାଙ୍ଗିବାକୁ । ତାଙ୍କ ବଂଶରେ ଅନ୍ୟମାନେ ମଧ୍ୟ ସାହିତ୍ୟ ସାଧନା କରିଛନ୍ତି ମାତ୍ର ରାଜୁବାବୁଙ୍କ ସାହିତ୍ୟ ସାଧନା ସାଙ୍ଗକୁ ତାଙ୍କର ଏକବାଗିଆ ପଣ ଅଙ୍ଗାଅଙ୍ଗୀଭାବେ ଅନ୍ଧ-ଆଉ-ଛୋଟାର ବନ୍ଧୁତ୍ୱପୂର୍ଣ୍ଣ ଯୌଥଯାତ୍ରା ।

ପ୍ରକାଶକଙ୍କ ଦ୍ୱାରସ୍ଥ ହେବାକୁ କୁଣ୍ଠିତ ରାଜୁବାବୁ ସ୍ୱକୀୟ ପ୍ରକାଶନ ସଂସ୍ଥା ଏବଂ ଏପରିକି ଉଚ୍ଚକୋଟୀର ସାହିତ୍ୟ ପାଇଁ ନିଜସ୍ୱ ବହି ଦୋକାନଟିଏ କରି ତାଙ୍କର ଏକବାଗିଆ ପଣକୁ ଜାହୀର କରିବା ସଙ୍ଗେ ସଙ୍ଗେ ମାନସିକ ବଳର ପରିଚୟ ଦେଇଛନ୍ତି ତାଙ୍କ ଜୀବନରେ । ସେ ଯାହା ସ୍ଥିର କରନ୍ତି ତାକୁ ସାକାର କରିବା ପାଇଁ ସ୍ୱଳ୍ପ ସମ୍ୱଳରେ ଆଗଭର ହୋଇଥାନ୍ତି ଆଗପଛ ନ ବିଚାରି । ତାଙ୍କର ବ୍ୟବସାୟିକ ବୁଦ୍ଧି ଥିଲା ବୋଲି କହିବା ଠିକ୍ ହେବ ନାହିଁ କିନ୍ତୁ ସେ ନିଜ ଲକ୍ଷ୍ୟରେ ଅଟଳ ରହୁଥିଲେ । ସେ ବନ୍ଧୁବତ୍ସଳ ଥିଲେ ସତ; କିନ୍ତୁ କେବେ କାହାରି ସାହାଯ୍ୟ ତ ଦୂରର କଥା ପରାମର୍ଶ ବା ଉପଦେଶ ବା ମତାମତ ନେଇ କାର୍ଯ୍ୟ କରୁ ନଥିଲେ । ସେ ହଠାତ୍ ଗୋଟାଏ ନବନବାୟମାନ ଯୋଜନାରେ ନିଜକୁ ସାମିଲ କରୁଥିଲେ । ତା'ର କେତୋଟି ଜ୍ୱଳନ୍ତ ପ୍ରମାଣ Scrutiny ପତ୍ରିକାଠାରୁ ଆରମ୍ଭ କରି ଆଇନ୍‌ଜୀବୀ ପତ୍ରିକା ସମ୍ପାଦନ ଏବଂ ପ୍ରାତ୍ୟହିକ ପତ୍ରିକା ପାଠଚକ୍ର ପ୍ରକାଶନ । ୧୯୬୭ରେ ତାଙ୍କ ସହଧର୍ମିଣୀ କଟକ ଲୋକସଭା ନିର୍ବାଚନ ଲଢ଼ିଲେ ଏବଂ ଭଲ ଭୋଟ ପାଇଲେ ମଧ୍ୟ । ଏକ ସମ୍ପୂର୍ଣ୍ଣ ନୂଆ ଢାଞ୍ଚାରେ କେବଳ ଚିଠି ଲେଖା ପ୍ରଚାରରେ ରାଜୁବାବୁ ଏହି



ଏକକ ନିର୍ବାଚନ ଲଢ଼େଇରେ ସେନାପତିତ୍ୱ କରି ତାଙ୍କର ମନୋବଳ ସାଙ୍ଗକୁ ଏକବାଗିଆପଣର ଗୋଟାଏ ଅଥକ ଉଦାହରଣ ଥୋଇଗଲେ । 'ଏକଲା ଚାଲ' ନୀତିରେ ବିଶ୍ୱାସୀ ରାଜୁବାବୁ ହାର୍-ଜିତ୍‌ର ଉର୍ଦ୍ଧ୍ୱରେ ନିଜର ନୀତିଗତ ଜିଦ୍‌କୁ ସ୍ଥାନ ଦେଉଥିଲେ ।

ଅତ୍ୟଳ୍ପ ବୟସରୁ ସମସାମୟିକ ସାହିତ୍ୟ କ୍ଷେତ୍ରରେ ନିଜର ବିଶେଷତ୍ୱ ପ୍ରତିପାଦନ କରି ନିଜର ସ୍ୱାକ୍ଷର ପାଠକ-ଆଲୋଚକ-ପ୍ରକାଶକ ମହଲରେ ଆଦୃତ କରିପାରିଥିଲେ । ଶେଷ ଜୀବନ ଯାବତ୍ ସାହିତ୍ୟ ରଚନାରେ ଲୁଚିଥିଲା ତାଙ୍କର ଗୋଟାଏ ଅଭ୍ୟାସଗତ ନିଶାପରି ।

ସ୍ୱଚ୍ଛଳ ଅଭିଜାତ ବଂଶରେ ବହୁ କୁଟୁମ୍ବୀ ପରିବାରରେ ଜନ୍ମ ଗ୍ରହଣ କରି ସେ ଆଇନ ବ୍ୟବସାୟକୁ ଆଦରି ନେଲେ ସିନା ଉପାର୍ଜନର ପନ୍ଥା ଭାବରେ କିନ୍ତୁ ଏହି କଳା-ଧଳା ବେପାରରେ ସେ ହଁ ଜୀ ହଁ ଜୀ କରି ସଫଳ ନ୍ୟାୟଜୀବୀ ହୋଇ ପାରିଲେ ନାହିଁ । ଫଳତଃ ଆର୍ଥିକ ଅବସ୍ଥା ବିଶେଷ ସୁବିଧାଜନକ ନଥିଲା କିନ୍ତୁ ପାରିବାରିକ ଆଭିଜାତ୍ୟର ଅଭ୍ୟାସ ହେତୁ ବାବୁ ସାହେବ ଅବ୍ ନୟନଯୋର୍ ଭଳି ସେ ସତ୍ୟଜିତ୍ ରାୟଙ୍କ ଜଲସା ଘରର ପ୍ରଧାନ ପାତ୍ରଭାବେ ନିଜକୁ ଚଳାଇ ନେଉଥିଲେ ।

ଏ ସମାଜ ଚିରକାଳ କରିତ୍‌କର୍ମାଙ୍କ ଚରାଭୂଇଁ ଥିଲା ଅଛି ଓ ରହିବ । ରାଜୁବାବୁ ସରସ୍ୱତୀଙ୍କ ବରପୁତ୍ର ହୋଇ ଲକ୍ଷ୍ମୀଙ୍କ କୃପାପାତ୍ର ହୋଇ ପାରିଲେ ନି । ମୁଣ୍ଡ ନୁଆଁଇବା ଲୋକ ସେ ନଥିଲେ । ବାଇବେଲ୍‌ରେଅଛି—"The meek shall rule the world" ସେ କିନ୍ତୁ ଜଣେ meek ବ୍ୟକ୍ତିତ୍ୱ ହେବା ପାଇଁ ନିଜକୁ ସଜାଡ଼ି ପାରିଲେ ନି ସାହିତ୍ୟିକ ଭାବେ ଯେତିକି ସମ୍ମାନ ସେ ବିଳମ୍ବିତ ପ୍ରହରରେ ପାଇଲେ ତା' କେବଳ ତାଙ୍କର ପାଉଣାକୁ ସମ୍ପୂର୍ଣ୍ଣ ଉପେକ୍ଷା କରିବା ସମ୍ଭବ ନ ଥିଲା ବୋଲି ।

ତାଙ୍କ ପରିବାର କରଣ ସମାଜର କେନ୍ଦ୍ରବିନ୍ଦୁ ଥିଲାବୋଲି ଲୋକମୁଖରୁ ଶୁଣିବାକୁ ମିଳେ ଏବଂ ରାଜୁବାବୁ କରଣବାଦୀ ଥିଲେ ବୋଲି ମଧ୍ୟ କେତେକ କୁହନ୍ତି । ମାତ୍ର ତଳେଇ ଦେଖିଲେ ସେ ଥିଲେ ନିଃସଙ୍ଗ 'ଏକାକୀ-ଚଲ' ମନ୍ତ୍ରର ଉପାସକ । ଅବଶ୍ୟ ଏହି ନିର୍ଭୀକ ଲେଖକ ଓକିଲାତି ବ୍ୟବସାୟରେ ଥାଇ ମଧ୍ୟ ଓଡ଼ିଶା ନ୍ୟାୟ ବିଭାଗରେ ବ୍ରାହ୍ମଣ୍ୟରାଜ ଚାଲୁଥିବାର ଅଭିଯୋଗ ଦୃଢ଼ ସ୍ୱରରେ ତୋଳିଥିଲେ ଦିଲ୍ଲୀ ଓ ଓଡ଼ିଶା ଦରବାରରେ ତଥା ଜନମାନସରେ ଏବଂ ବୋଧହୁଏ ତାହାରି ଫଳରେ କେତେଜଣ କରଣ ନ୍ୟାୟମୂର୍ତ୍ତି ଆସୀନ ହୋଇଥିଲେ ରାଜ୍ୟର ସର୍ବୋଚ୍ଚ ନ୍ୟାୟାଳୟରେ ।

ତାଙ୍କର ସମ୍ପର୍କୀୟ ଭାଇ ବିଜୁ ପଟ୍ଟନାୟକ ଦୁଇ ଦୁଇ ଥର ରାଜ୍ୟର ମୁଖ୍ୟମନ୍ତ୍ରୀ ଆସନରେ ପ୍ରତିଷ୍ଠିତ ହେବା ସତ୍ତ୍ୱେ ରାଜୁବାବୁ ଓକିଲ ଭାବେ କିମ୍ବା ସାହିତ୍ୟିକ ରୂପେ ତାଙ୍କ

ଗୁଣଗତ ପ୍ରାପ୍ୟ ପାଇବା ପାଇଁ ତିଳେ ମାତ୍ର ଚେଷ୍ଟିତ ହୋଇ ନଥିଲେ । ତାଙ୍କର ସ୍ୱାଭିମାନ ଆଜିର ସାମାଜିକ ମୂଲ୍ୟାୟନରେ ନିଛକ ବୋକାମି । ରାଜକପୂରଙ୍କ ଗୋଟିଏ ଛବିର ସାଙ୍ଗିତିକ ଭାଷାରେ ''ଦୁନିଆକେ ବାଜାର ମେଁ, ଅପନା ବ୍ୟାଣ୍ଡ ବଜାଏ ଯା ।'' ରାଜୁବାବୁ କିନ୍ତୁ ରାଜଙ୍କ ଉପଦେଶକୁ ଉପେକ୍ଷା କରି ଅଭିମାନ କରି ଗୁମରି ଗୁମରି ରହିଗଲେ ଶେଷ ପର୍ଯ୍ୟନ୍ତ ।

ଆର୍ଥିକ ବା ପାରିବାରିକ ସାହାଯ୍ୟ ସମର୍ଥନ ବା ପୃଷ୍ଟପୋଷକତାକୁ ଅପେକ୍ଷା ନ କରି ମୁଠାଏ ସାଗୁକୁ ପାଣି ଭିଜାଇ କଦଳୀ ଚକଟି ଖାଇ କଚେରୀକୁ ଆସୁଥିଲେ । ମାସ ମାସ ଧରି କିନ୍ତୁ ତାଙ୍କର ଆଭିଜାତ୍ୟ ସମ୍ପନ୍ନ ମୁହଁରେ ନ ଥିଲା ଦୁଃଖର-କଷ୍ଟର ଛାୟା ବା ଅଭାବର ଦୟନୀୟତା । 'ଜଲସା-ଘର'ର ନିଃସ୍ୱ ଜମିଦାର ପରି ଓକିଲାତିଖାନାରେ ମଧ୍ୟ ଅତିଥିଙ୍କୁ ଚା-ପାନରେ ଆପ୍ୟାୟନ କରିବାକୁ ଭୁଲୁ ନଥିଲେ ସେ ।

ଓକିଲାତି ବ୍ୟବସାୟରେ ହଁ ଜୀ ହଁ ଜୀ କରିବା ନୋହିଲାରୁ ବ୍ୟାପାରିକ ସଫଳତା ମିଳିଲା ନାହିଁ । ତା' ସାଙ୍ଗକୁ ମହକିଲଙ୍କୁ ବାହାପିଆ ଆଶା ଦେଇ ଅଣ୍ଟିରୁ ତଣ୍ଟିକଟା ଫିସ୍ ଆଦାୟ ବା କରନ୍ତେ କିମିତି ଏହି ଜନ୍ମଗତ ଭଦ୍ରଲୋକ ? ପଢ଼ିଛୁ, ଶୁଣିଛୁ ଯେ ବିଲାତର ଲର୍ଡ଼ସ୍‌ମାନେ ଯେତେବେଳେ ଆର୍ଥିକ ସ୍ୱଚ୍ଛଳତା ହରାଇ ଆଇନ୍ ବ୍ୟବସାୟ ଆଦରି ନେଲେ ସେତେବେଳ ସେମାନେ ମହକିଲଙ୍କଠାରୁ ସିଧାସଳ ନେଣ-ଦେଣ କରିବାର ନୂଆ ଅଭ୍ୟାସ ଆପଣେଇ ନ ପାରିବାରୁ ଓକିଲମାନଙ୍କର ଗାଉନ୍‌ର ପଛପଟେ ଗୋଟାଏ ମୁଣାପରି ଝୁଲାଇ ଦିଆ ଯାଉଥିଲା । ମହକିଲ ସ୍ୱଇଚ୍ଛାରେ ଯେତିକି ଦେଲା ତା' ଓକିଲ ବାବୁଙ୍କ ଅଜାଣତରେ ଠାକୁରଘର ଅମୁହାଁରେ ଗଳେଇ ଦେଲା ଭଳି ଦେବାକୁ । ସେଥିରେ ଯାହା ମିଳିଲା ସେତିକିରେ ଓକିଲାତି କରୁଥିଲେ ଲର୍ଡ଼ସ୍‌ମାନେ ବୋଲି ଶୁଣିଥିଲୁ କିନ୍ତୁ ଆଜିର ଏ ପେଶାରେ ସତମିଛ କହି, ବହଲେଇ-ଧପେଇ, ଧମକେଇ-ଚମକେଇ ଯେମିତି କିଛି ତଥାକଥିତ ଆଇନ୍‌ଜୀବୀ ଧନ ଦୌଲତ କମେଇଛନ୍ତି ବା ମହକିଲର ପାଉଣା କଚିରୀରୁ ବାଟ ମାରଣା କରି କୋଠା ବାଡ଼ାଉ ଥିବା କଥା ଶୁଣାଯାଏ ସେ ଦୁନିଆରେ ଥାଇ ମଧ୍ୟ ରାଜୁବାବୁ ଥିଲେ ଅନ୍ୟ ଏକ ଯୁଗର, ଅନ୍ୟ ଏକ ଧର୍ମର ଅବତାର । ତାଙ୍କ ମୃତ୍ୟୁର କିଛିଦିନ ପୂର୍ବରୁ ତାଙ୍କର ଜଣେ ଗୁଣମୁଗ୍ଧ ମହକିଲ ତାଙ୍କ ଅସୁସ୍ଥତା ଖବର ପାଇ ଟ୫୦୦ ଧରି ଆସିଥିଲେ ଭେଟି ଦେବା ପାଇଁ । ରାଜୁବାବୁ ତାଙ୍କର ଦୁଃଖବେଳେ ଯଥୋଚିତ ପାରିଶ୍ରମିକ ନ ପାଇ ମଧ୍ୟ ଆଇନଜୀବୀଭାବେ ସହାୟକ ହୋଇଥିଲେ । ଏବେ ଅସୁସ୍ଥ, ବୃଦ୍ଧ ଓକିଲବାବୁଙ୍କୁ ଚିକିତ୍ସାଦି ପାଇଁ ଏହି ଚିରସ୍ଥାୟୀ ମହକିଲ ଚାହିଁଲେ ମାସିକ ଟ ୫୦୦ ଦେବାକୁ କିନ୍ତୁ ରାଜୁବାବୁ ତାହା ନମ୍ରତା ସହ ପ୍ରତ୍ୟାଖ୍ୟାନ କରି ଦେଇଥିବା ଏ ଲେଖକ ଜାଣିଛି ।



ସେ ସମାଜରେ ଯେଉଁମାନେ ଯେନତେନ ପ୍ରକାରେଣ ପ୍ରତିଷ୍ଠିତ ହୋଇ ବାହାସ୍ଫୋଟ ମାରନ୍ତି ସେମାନଙ୍କୁ ଅତି ଛୋଟ ନଜରରେ ଦେଖୁଥିଲେ ଏବଂ ସାଧାରଣ ଲୋକଟିକୁ ମଧ୍ୟ ସସମ୍ମାନ ସମ୍ବୋଧନ କରୁଥିଲେ ।

ରାଜୁବାବୁ ସାମାଜିକ, ସାଂସାରିକ, ବ୍ୟବସାୟିକ ସବୁ କ୍ଷେତ୍ରରେ ନିଜର ବହୁ ସମସ୍ୟା ସତ୍ତ୍ୱେ ଚିରଚଞ୍ଚଳ, କର୍ମଠ, ସ୍ଥିରଚିତ୍ତ ଥାଇ  ଲେଖନୀ ଚାଳନା କରିବାର ତାଙ୍କ ଘନିଷ୍ଠ ବନ୍ଧୁମାନେ ଲକ୍ଷ୍ୟ କରିଥିବେ । ଏହି ଦରଦି ଯୁବକଟି ଅନ୍ୟକୁ ସାହାଯ୍ୟ କରିବାକୁ ସଦା ସର୍ବଦା ଆଗଭର କିନ୍ତୁ କାହାରି ସହାୟତା ଗ୍ରହଣ କରିବାକୁ କୁଣ୍ଠିତ ଥିଲେ ।

ଏଭଳି ସ୍ୱାଭିମାନୀ, ନିରଳସ, ନିର୍ବିକାର ଚିତ୍ତ, ବ୍ୟକ୍ତିତ୍ୱ ଆଜିର ସମାଜରେ ବିରଳ ଏବଂ ସାହିତ୍ୟ ବା ପେଶାରେ ଉନ୍ନତି ପାଇଁ  ଯେତେବେଳେ ସାମ, ଦାନ, ଦଣ୍ଡ, ଭେଦ ନୀତିଠାରୁ ଆରମ୍ଭ କରି ଚାଟୁକାରିତା ଇତ୍ୟାଦ ବହୁବିଧ ଉପାୟ ଅବଲମ୍ବନ କରିବା ଅତି ସାଧାରଣ କଥା ହୋଇଗଲାଣି ସେତେବେଳେ ଏ ଭଳି ଜଣେ ସ୍ୱାଭିମାନୀ ସାହିତ୍ୟିକଙ୍କୁ ରାଜକୀୟ ବା ଆନୁଷ୍ଠାନିକ ସମ୍ମାନ ମିଳିବା ବିଳମ୍ବିତ ହେବା ଅତ୍ୟନ୍ତ ସ୍ୱାଭାବିକ ।

ମୃତ୍ୟୁର ପ୍ରାୟ ବର୍ଷକ ପୂର୍ବରୁ କଚିରୀ ଯିବା ଏକ ପ୍ରକାର  ଅସମ୍ଭବ ହୋଇ ପଡ଼ିଥିଲା ଏବଂ ଦିନକୁ ୨୦/୨୫ଟି ଚିଠି ଲେଖିବାର ଅଭ୍ୟାସ ହେତୁ ବାହାର ଦୁନିଆ ସହ ସମ୍ପର୍କ ରଖୁଥିଲେ । ଏହି ସମୟରେ ରାଜୁବାବୁଙ୍କ ଭଳି ଆତ୍ମବଳ ଉପରେ ଭରସିବା ଲୋକ ହଠାତ୍ ସିରିଡ଼ି ସାଇବାବାଙ୍କର ଅତ୍ୟନ୍ତ ଭକ୍ତ ହୋଇ ପଡ଼ିଲେ ଏବଂ ମୋ ଭଳି ନାସ୍ତିକ ବନ୍ଧୁଙ୍କୁ ମଧ୍ୟ ତାଙ୍କର ଶରଣାଗତ ହେବାକୁ ପ୍ରବର୍ତ୍ତାଇଲେ । ସେ ମୃତ୍ୟୁର ପଦଧ୍ୱନି ଶୁଣି ପାରିଥିଲେ କେଇ ମାସ ପୂର୍ବରୁ । ତାଙ୍କ ଚିଠି ଗୁଡ଼ିକରେ ତା' ଧ୍ୱନିତ ।

ସେ ଆଇନଜୀବୀ ଭାବେ ଯେମିତି ନିଜ ପାଉଣା ଆଦାୟରେ ଥିଲେ ଅପାରଗ ଠିକ୍ ସେମିତି ସାହିତ୍ୟିକ ଭାବେ ସମାଜଠାରୁ ବା ଦରବାରରେ ତାଙ୍କ ପ୍ରାପ୍ୟ ପାଇବା ପାଇଁ ଯୁଗୋପଯୋଗୀ ପ୍ରଚେଷ୍ଟା କରି ନଥିଲେ । ଫଳତଃ ବହୁ ଅସୁବିଧା ଉପୁଜିବା ସ୍ୱାଭାବିକ ଥିଲା । ତାଙ୍କର ଅସ୍ଥିର ମାନସିକତା ଉଦ୍ଭୁରି ଉଛୁଳି ବହୁ ମୌଳିକ ନୂତନ ଯୋଜନା ତାଙ୍କୁ ଅମଦାବାଦର ଅଜଣା ରାଇଜକୁ ସ୍ୱପ୍ନାଟନ୍‌ରେ ତାଙ୍କୁ ନେଇ ଯାଉଥିଲା । ସେସବୁ ସ୍ୱପ୍ନିଳ ଯାତ୍ରା ଆଶାନୁରୂପ ଫଳପ୍ରଦ ହେଲା ନାହିଁ । ଜୀବନର ଖାଲ-ଢିପ, ଉତ୍‌ଥାନ-ପତନରେ କ୍ଷତବିକ୍ଷତ ହୋଇ ମଧ ରାଜୁବାବୁ ଯୁବକ ସୁଲଭ ଆଶାବାଦୀ ଥିଲେ ଜୀବନର ପ୍ରାୟ ଶେଷ ପର୍ଯ୍ୟନ୍ତ । ଯୌବନରେ ଫିଡ଼େଲ କାଷ୍ଟ୍ରୋଙ୍କ ଯୁବକାବସ୍ଥାର ସମାନ୍ତରାଳ ନିଶ ଓ ଉଦ୍ଦାମତା ନେଇ ସେ ପରିଚିତ ଥିଲେ ଜଣେ ରସିକ ଲେଖକ ଭାବେ । ହାତରେ ବ୍ୟାଡ୍‌ମିଣ୍ଟନ୍

ର୍‍ୟାକେଟ୍ ମୁଣ୍ଡରେ ବିଲାତି ଟୋପି । ବୟସ ବଢ଼ି ବଢ଼ି ଚାଲଲା । ଆଶାବାଦୀ ରଙ୍ଗୀନ୍ ସ୍ୱପ୍ନ ସବୁ ଫିକା ପଡ଼ିଗଲା କିନ୍ତୁ ରାଜୁବାବୁଙ୍କ ଯୁବକ ସୁଲଭ ବେପରୁଆଭାବ ତାଙ୍କୁ ଜୀବନ ସଂଗ୍ରାମରେ ନୂଆ ନୂଆ ଯୋଜନାରେ ଝାସ ଦେବାକୁ ପ୍ରବର୍ତ୍ତାଇଥିଲା । ମୃତ୍ୟୁର ପ୍ରାୟ ବର୍ଷକ ପୂର୍ବରୁ ସେ ହଠାତ୍ ବାର୍ଦ୍ଧକ୍ୟ କାଲୁଆସ୍ପର୍ଶରେ ଶୀତେଇ ଉଠିବାକୁ ଆରମ୍ଭ କଲେ ଏବଂ ସିରିଡ଼ି ସାଇବାବାଙ୍କ ଚରଣାଶ୍ରିତ ହେଲେ । ନୈରାଶ୍ୟ ମଧ୍ୟରେ ଆଶାବାଦୀ ଧ୍ୱଜା ବହନକାରୀଙ୍କ ଏ ଏକ ନୂତନ ଅବତାର ।

ଏହି ସ୍ୱାଭିମାନୀ ଓଡ଼ିଆ ସାହିତ୍ୟିକଙ୍କ ସାହିତ୍ୟ ବଙ୍ଗଳା-ଇଂରାଜୀ-ବା ହିନ୍ଦୀ ସାହିତ୍ୟର ଅନୁକରଣରେ ନୁହେଁ । ନିଜ ଜୀବନରେ ଅଙ୍ଗେଲିଭା ବା ପାରିପାର୍ଶ୍ୱିକ ଜୀବନର ପର୍ଯ୍ୟବେକ୍ଷଣ ଦ୍ୱାରା ପୁଷ୍ଟ । ଇଙ୍ଗୀତ ଧର୍ମୀ ପ୍ରକାଶଭଙ୍ଗୀ ତାଙ୍କର ସ୍ୱାକ୍ଷର ବହନ କରେ ।

ତିନିକୋଣିଆ ବଗିଚା

କଟକ-୧





# ସ୍ୱର୍ଗତ କଥାକାର

କିଶୋର ଚନ୍ଦ୍ର ମିଶ୍ର

ଏ ଅନିତ୍ୟ ସଂସାର ବଡ଼ ବିଚିତ୍ର । ତହିଁରେ ଯେତେ ଯେତେ ପ୍ରାଣୀ ଲୀଳାଖେଳା କରନ୍ତି, ତାହାସବୁ ମଧ୍ୟ ସ୍ଥଳ ଭେଦରେ ବିଚିତ୍ର ଜଣାପଡ଼େ । ମଣିଷ ଏକ ବୁଦ୍ଧିମାନ ପ୍ରାଣୀ । ତା'ର ବିବେକ ଅଛି । ତାହାର ଲୀଳାଖେଳା ଭିତରେ କେତେକ ବ୍ୟକ୍ତିଗତ, କେତେକ ସମୂହ ସ୍ୱାର୍ଥ ଜଡ଼ିତ, ଉପକାରୀ, ଅପକାରୀ, ଦରକାରୀ ଓ ଅଦରକାରୀ କାର୍ଯ୍ୟ କରିଥାଏ, ତା'ର ଜ୍ଞାତ ଓ ଅଜ୍ଞାତସାରରେ । ତେଣୁ ତାହାକୁ କେବେ ପ୍ରଶଂସା, କେବେ ନିନ୍ଦା ମଧ୍ୟ ମିଳେ । ତାର ସେଥିପ୍ରତି ନଜର, ଖାତିରି ଥାଉବା ନ ଥାଉ ସେଥିରେ ତାର କିଛି ଯାଏ ଆସେ ନାହିଁ । ସେ ଜଣେ ନିର୍ଲିପ୍ତ ବ୍ୟକ୍ତିତ୍ୱ ।

ଆମର ସୁପରିଚିତ, ବିଶିଷ୍ଟ କଥାକାର ରାଜୁବାବୁ ଏଇଭଳି ଜଣେ ବିଚିତ୍ର ବ୍ୟକ୍ତିତ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ପିତା, ଦଦେଇ ଗଞ୍ଜାମ ଅଧିବାସୀ—ଭଂଜନଗର ପାଖ ନୂଆଗାଁରେ ଅଦ୍ୟାବଧି ତାଙ୍କର ଜ୍ଞାତିଗୋତ୍ର ଅଛନ୍ତି । ସେ କିନ୍ତୁ ଜନ୍ମ ହୋଇଥିଲେ ସୁଦୂର କଲିକତାରେ ଯେଉଁଠି ତାଙ୍କ ପିତା ଶ୍ରୀବତ୍ସ ପଟ୍ଟନାୟକ ଚାକିରୀ କରୁଥିଲେ । ତାଙ୍କ ଭାଇ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଦେଶ ପ୍ରେମୀ, ଜାତିପ୍ରାଣ ଥିଲେ । ଯାହାଙ୍କ ସୁଯୋଗ୍ୟ ପୁତ୍ର ଓଡ଼ିଆ ବୀର ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ । ଅର୍ଥାତ୍ ସେ ତାଙ୍କର ଭାଇ ବିରାଦର । ବିଜୁବାବୁ ପିଲାଦିନୁ ସାହସୀ, ପରବର୍ତ୍ତୀ ଜୀବନରେ ରାଜନୀତିରେ ମଧ୍ୟ ବେଳେ ବେଳେ ସେ ଖୁବ୍ ସାହସ ପ୍ରଦର୍ଶନ କରିଛନ୍ତି । ଆମ ରାଜୁବାବୁ ମଧ୍ୟ କମ୍ ସାହସୀ ନୁହନ୍ତି । ତାଙ୍କର କାହାକୁ ଖାତିର ନଥାଏ, ସ୍ୱାଭିମାନୀ, ତାଙ୍କ ମତରେ ସେ ନଛୋଡ଼ବନ୍ଧା । ଠିକ୍ ପ୍ରବୀଣ ସାହିତ୍ୟିକ, କବି, ଗାଳ୍ପିକ, ସମାଲୋଚକ ଗୋଦାବରୀଶ ମହାପାତ୍ରଙ୍କ ସଦୃଶ । ଉଭୟଙ୍କର ଚିନ୍ତାଧାରା, କଥୋପକଥନ ଏକାଧାରାର ଥିବାରୁ ବୋଧହୁଏ ଗୋଦାବରୀଶ ବାବୁ ତାଙ୍କଠାରୁ ପ୍ରାୟ ୨୦ ବର୍ଷ ଅଧିକ ବୟସର ହୋଇଥିଲେ ମଧ୍ୟ ଦୁହେଁ ବଂଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ । ୧୯୫୦-୫୧ ସମୟରେ ପ୍ରାୟ ପ୍ରତିଦିନ ଉପରଓଳି ସେ ଦରଘା ବଜାରସ୍ଥ ନିଆଁଖୁଣ୍ଟା ଅଫିସକୁ ଆସି ତାଙ୍କୁ ସଙ୍ଗରେ ନିଅନ୍ତି । ଦୁହେଁ ଯାଇ ବୁଲା ବୁଲି କରି ଜଳଖିଆ ଖାଇ ଫେରନ୍ତି । ଉଭୟେ କଥା କହିବାରେ ଧୂରନ୍ଧର ପ୍ରତ୍ୟୁତ୍ପନ୍ନମତି ସମ୍ପନ୍ନ । କାହା ସାଙ୍ଗରେ ସାଲିସ୍ କରନ୍ତି ନାହିଁ । ଉଭୟେ ଏଇ ଢଙ୍ଗଢ଼ାଙ୍ଗରୁ ଅନେକ କ୍ଷଣିକ, ଅସ୍ଥାୟୀ ଶତ୍ରୁ ଅର୍ଜିଥାନ୍ତି । ହାସ୍ୟରସିକ ଗୋଦାବରୀଶଙ୍କ ପରି ରାଜୁବାବୁ ମଧ୍ୟ ମଜାରେ ଥଟ୍ଟା କରିଥାନ୍ତି । ଉଭୟେ ଖୁବ୍ ଭଦ୍ର ଲୋକ ।





ଅଧ୍ୟାପକ ପଠାଣି ପଟ୍ଟନାୟକ କହନ୍ତି, ସେ ଯେତେ ଚେଷ୍ଟା କରି ମଧ୍ୟ ଆଗରୁ ରାଜୁବାବୁଙ୍କୁ କେବେହେଲେ ପ୍ରଥମେ ନମସ୍କାର କରି ପାରି ନଥିଲେ ।

ଯେଉଁମାନେ ଲେଖକ, ସାହିତ୍ୟିକ, ଚିନ୍ତା ନାୟକ ସେମାନଙ୍କର ଚିନ୍ତାଧାରା କଥା କହିବା ଭଙ୍ଗୀ ସାଧାରଣ ଲୋକଠାରୁ ଟିକିଏ ଭିନ୍ନ । ସେମାନଙ୍କ ଜୀବନ ପ୍ରାୟତଃ ମଧୁମୟ ସୁନ୍ଦର । ତେଣୁ ସେମାନେ କଥୋପକଥନ ମାଧ୍ୟମରେ ଶ୍ରୋତାମାନଙ୍କ ଜୀବନକୁ ସରସ ସୁନ୍ଦର କରି ପାରନ୍ତି । ଥଟ୍ଟା, ପରିହାସ, ମାନବ ଜୀବନର ଏକ ପ୍ରଧାନ ଜୀବନ ଧାରା । ସମାଲୋଚନାଟା ଟିକିଏ, କଟୁ ଅଶ୍ରାବ୍ୟ ହେଲେ ମଧ୍ୟ ତାହା ହାସ୍ୟ ରସ ମିଶ୍ରିତ ହୋଇଗଲେ ଶ୍ରୁତିମଧୁର ହୁଏ । ରଙ୍ଗ, ରହସ୍ୟ ତହିଁରୁ ଫୁଟି ଉଠେ । ସେ ସବୁଦିନେ ମହାପାତ୍ରଙ୍କ ପାଖକୁ ଆସୁଥିବାରୁ ମୁଁ ଦିନେ ପ୍ରଶ୍ନ କଲି । ସେ ତତ୍‌କ୍ଷଣାତ୍ ହସି ହସି କହିଲେ, ଯେଉଁଦିନ ମହାପାତ୍ରେ ମନା କରି ଦେବେ ସେଦିନଠୁ ମୁଁ ନ ଆସି, ଯାଇ ମୋ କୋଠା ଉପରେ ବସି କାଠଯୋଡ଼ୀର ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତରକୁ ଓ ଦୂର ଦିଗ୍‌ବଳୟର ଶ୍ୟାମଳିମାକୁ ଚାହିଁ ରହି ସମୟ କଟାଇ ଦେବି । ସେ ଏକଥାକୁ କିଞ୍ଚିତ୍ ବିରସ ନହୋଇ ସହାସ୍ୟ ବଦନରେ ଅକ୍ଳେଶରେ କହି ପକାଇଲେ । ସେ ଜଣେ ସ୍ପଷ୍ଟବାଦୀ ଓ କଳୁଷ ବିହୀନ ଚରିତ୍ରର ଲୋକ ଥିଲେ ।

ଜୀବନରେ ରାଜନୀତି, ସାମ୍ବାଦିକତା, ଛାତ୍ର ଜୀବନରେ କ୍ରୀଡ଼ାରେ ଓ ସାମାଜିକ ସଙ୍ଗଠକ କାମରେ ମଧ୍ୟ ପ୍ରବେଶ କରିଥିଲେ । କିନ୍ତୁ ସର୍ବୋପରି ସାହିତ୍ୟ ସେବାରେ ସେ ଜୀବନର ଶେଷ ମୁହୂର୍ତ୍ତ ଯାଏଁ ମଜି ରହିଥିଲେ । ଶେଷ ଜୀବନରେ ଲମ୍ବା ଫୁଲ୍‌ସ୍କେପ୍ କାଗଜରେ ବଡ଼ ବଡ଼ ଅକ୍ଷରରେ ଏଣୁ ତେଣୁ କେତେ ଲେଖି ପ୍ରତିଦିନ ଲେଖୁଥିବା ମୁଁ ଦେଖିଛି । ତହିଁରେ ତାଙ୍କର ଆତ୍ମ ସମୀକ୍ଷା ଜଣାପଡ଼େ । କିନ୍ତୁ ସରଳ, ସାବଲୀଳ ଗତିରେ ସେ ଲେଖା ସବୁ ଗଡ଼ି ଚାଲିଥାଏ । ଭାବଧାରା ପ୍ରାଞ୍ଜଳ ଭାବେ ପ୍ରକଟିତ ହୋଇଥାଏ ।

ସେ ଏକାଧାରାରେ ଜଣେ କୃତବିଦ୍ୟ ଲେଖକ, ଆର୍ଗନଙ୍କ, ସାମ୍ବାଦିକ ଓ ରାଜନୀତିଜ୍ଞ ଥିଲେ । ଆଜିକାଲି କିଏ ଖଣ୍ଡେ ବହି ଲେଖି ତାକୁ ଉତ୍ସବ ସାହାଯ୍ୟରେ ଉଦ୍‌ଘାଟନ କରି, ସଭା ସମିତି କରି ବୁଦ୍ଧିଜୀବୀଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତି । କିନ୍ତୁ ରାଜୁବାବୁ ସେଇବାଟର ଲେଖକ ନଥିଲେ । କାହାର ମତାମତକୁ ଅପେକ୍ଷା ନକରି ଲେଖି ଚାଲିଥାନ୍ତି । ମଣିଷ ଜୀବନରେ ଟିକିଏ ପ୍ରଶଂସା, ଉପହାର କିଏ ନ ଚାହିଁ ଥାଏ । ଥରେ ସେ କୁଆଡ଼େ କହିଲେ ଆଉ କାହିଁକି ଲେଖିବି, କିଏ ଛାପିବ କିଏ ପଢ଼ିବ । ଏତେ ଲେଖି କରି ତ ଖରା ଦିନେ ପାଚିଲା ଆମ୍ବ ୨ କିଲୋ ଖାଇବାକୁ ମିଳୁ ନାହିଁ । ସେ ଯାହା ବା ଜୀବନରେ ପ୍ରଶଂସା, ଉପହାର ପାଇଛନ୍ତି ତାହା କିଛି ନୁହେଁ, ଖୁବ୍ ସୀମିତ । ସେ ମରିବାର ମାତ୍ର ୨୧ ଦିନ



ପୂର୍ବରୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ ପୁରସ୍କୃତ କରି ୨୫ ହଜାର ଟଙ୍କା ଓ ଉପାୟନ ପ୍ରଦାନ କରିଥିଲେ, ଯେଉଁ ଦିନ ସେ ପ୍ରାୟ କିଛି ଜାଣୁ ନଥିଲେ । ପରେ ଜାଣି କୁଆଡ଼େ ସେ କଥା ପଚାରିଥିଲେ ।

ସେ ବଡ଼ ସ୍ନେହୀ । ତାଙ୍କ ପ୍ରତି ଅନେକଙ୍କର ଭକ୍ତି ସମନ୍ୱିତ ଭୟ ଥିଲା । ସେ ଆଜୀବନ ନିର୍ଭୀକ ଭାବରେ କଥା ଭାଷା କହି, ତାହା ନିଜ ଲେଖା ମାଧ୍ୟମରେ ପ୍ରକଟିତ କରି ଯାଇଛନ୍ତି । ସେ ଅଜର ଅମର ଏକ ପ୍ରଚଣ୍ଡ ବ୍ୟକ୍ତିତ୍ୱ, ଅମ୍ଳାନ ପ୍ରତିଭାଧର କହିଲେ ଅତ୍ୟୁକ୍ତି ହେବନାହିଁ ।

ତାଙ୍କ ବିଷୟରେ ମୁଁ କେତେ ପଦ କବିତା ଲେଖି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି—

ଲୋଡ଼ା ନାହିଁ ତାର ଲୋଡ଼ା ନାହିଁ
ସଭା ପରେ ତୋଡ଼ା ଲୋଡ଼ା ନାହିଁ ।
ଆଜୀବନ କଲା ସାହିତ୍ୟର ସେବା
କିଏ ତ ନକଲେ ବିଶେଷ ବାହାବା
କଳାକୋଟ ପିନ୍ଧି ଯାହା ବା ଅର୍ଜିଲା
ଗରିବ ଲୋକର ତଣ୍ଟି ନ ଚିପିଲା
କା' ବେକରେ କେବେ ଗାମୁଛା ପକାଇ
କାହାର ଗୋଛି ସେ କାଟି ନାହିଁ ।

ସରଳ ଜୀବନ କରିଲା ଯାପନ
ଚାଆ ସିଆରେଟ୍ରେ ଗଲା ତା ଜୀବନ
ଭୋଗ, ବିଳାସ ସେ କେବେ ନାହିଁ କରି
ସାଙ୍ଗ ସାଥି ମେଳେ ମଉଜ ନ କରି
ଓଡ଼ିଆ ବୀର ସେ ଅତି ସ୍ୱାଭିମାନୀ
ସ୍ପଷ୍ଟ ଭାଷା କହି କାହାରେ ନମାନି

ମୁହେଁ ମୁହେଁ କହି ନ୍ୟାୟ ନୀତି କଥା
ସମାଲୋଚନାରେ କଲା ସରସତା
କାହାଠାରୁ କିଛି ଚାହିଁ ନାହିଁ ।

ଗୋରାତକତକ ସରସ ସୁନ୍ଦର
ଗଳ୍ପ ଉପନ୍ୟାସ ଲେଖି କଥାକାର
କିଛି ଦିନ ଧରି ଶଯ୍ୟାଶାୟୀ ଥାଇ
ପଚାରିଲେ ଅବା ପଦେ କିଛି କହି
ସେ ବେଳରେ ଏକାଡେମୀ ପୁରସ୍କାର
ମୂଲ୍ୟ କିବା ଥିଲା ସେ ଉପହାରର
ଲୋକେ ଜାଣିବାକୁ ବୃଥା ଏ ସମ୍ଭାର
ଶୁଙ୍ଘାଇଲେ ମଲା କାଳକୁ ଗୋବର
ଏଇପରା ବୁଦ୍ଧିଜୀବୀ କାରବାର
ଧିକ୍‌ଧିକ୍ ବଡ଼ଲୋକୀ ଏ ବେଭାର ।

ରାଜକିଶୋର ନାଁ-ଅକ୍ଷର ଅମର
ଏ ଜାତି ତାଙ୍କ ପଦେ କରେ ନମସ୍କାର
ତାର ଅମରାତ୍ମା ଲଭୁ ସଦଗତି
ବିଭୁ ପଦେ ମୋର ଏତିକି ମିନତି ।



ସଂପାଦକ ନିଆଁଖୁଣ୍ଟା
ହରିପୁର ରୋଡ୍, କଟକ-୧



# ଜୀବନ ଦର୍ଶନ

**ନୀଳମଣି ମହାନା**

ଗାଳ୍ପିକ, କଥାକାର ଓ ଔପନ୍ୟାସିକ ରାଜକିଶୋରଙ୍କ ଜୀବନ ଦର୍ଶନ ଅତି ବିସ୍ମୟକର । ଜନ୍ମ ତାଙ୍କର କଲିକତାରେ ଯେଉଁ ଘରେ ବିପ୍ଳବୀ ଅରବିନ୍ଦ ଆତ୍ମଗୋପନ କରିଥିଲେ । ବିଜ୍ଞାନ ସ୍ନାତକ । ଆଇନିଜୀବୀ । ସାହେବି ଠାଣୀର ମଣିଷ, ଆଭିଜାତ୍ୟର ବିଡ଼ମ୍ବନାରେ ନିଛକ ମଣିଷର ହୃଦୟକୁ ଖୋଜିବାରେ ସେ ଅହରହ ପ୍ରଚେଷ୍ଟା କରିଛନ୍ତି । ବିଦ୍ରୋହୀ ପରି ମନେ ହେଲେ ବି ବିଦ୍ରୋହୀ ନୁହନ୍ତି । ସମ୍ବେଦନଶୀଳତାରରେ ସତେ ଯେପରି ସେ ଜୁଡୁବୁଡୁ ହୋଇ ଅଧା ଶୁଖିଲା ଓ ଅଧା ପାଣିର ତୁଠ ପଥର ।

କଲିକତାରେ ଜନ୍ମ ସତ; ହେଲେ ତାଙ୍କର ଚରାଭୂଇଁ ଖାନନଗରରୁ ସତୀଚଉରା । ତା ମାନେ କଟକ ସହର ଭିତରେ ଆବଦ୍ଧ । ତାଙ୍କର ପୈତୃକ ଚାଷ ଘରଟିଏ ବିରିବାଟୀ ପାଖରେ ଥିଲା । ଓକିଲାତି ଜୀବନ ତାଙ୍କୁ ଭଲ ଲାଗୁ ନଥିଲାକି ସୁହାଉ ନଥିଲା ସେ କଥା ସେ ଜାଣିଥିବେ । କାରଣ ଅଧିକାଂଶ ସନ୍ଧ୍ୟାରେ ଖାକି ହାପ୍‌ପ୍ୟାଣ୍ଟ ଓ ଧଳା ହାପ୍‌ସାର୍ଟ ପିନ୍ଧି ସାଇକେଲ ଆଗରେ ଲଣ୍ଠନଟିଏ ରଖି କଟକରୁ ତାଙ୍କର ପୈତୃକ ଚାଷ ଘରକୁ ଯାଆନ୍ତି । କିଏ ବା ଜାଣିବ ସେ ମନର କଥା । ସହରୀ ଜୀବନ ତାର ଚାକଚକ୍ୟ ଓ ଆଡ଼ମ୍ବର କୋଳାହଳ, ଜୀବନର ଅବକ୍ଷୟ ଓ ବଞ୍ଚିବାର ଅହେତୁକ ବ୍ୟବସ୍ଥା ହୁଏ ତ ଭଲ ଲାଗି ନ ଥାଇ ପାରେ । ନତୁବା ଓକିଲାତିର ତିକ୍ତତା, ପଲ୍ଲୀର ସେହି ଚିର ଶସ୍ୟଶ୍ୟାମଳ ମନଲୋଭା ପରିବେଶ ଆକୃଷ୍ଟ କରି ଥାଇପାରେ କିମ୍ବା ପଲ୍ଲୀର ଶାନ୍ତ ପରିବେଶରେ ଜୀବନ ମାନସକୁ ପର୍ଯ୍ୟାଲୋଚନା କରିବାରେ ଆନନ୍ଦରେ ବିଭୋର ହୋଇ ପାରିଥାଆନ୍ତି । ସେଇଥିପାଇଁ ସେ ବୋଧେ ସହର ଛାଡ଼ି ପଳାଇ ଯାଆନ୍ତି ।

ସ୍ୱାଭିମାନୀ ଓ ସ୍ପଷ୍ଟବାଦୀର ସନ୍ତକ ରୂପେ ନିଜ ଜୀବନର ଆଲେଖ୍ୟ ଭାବରେ ସେ ଶାନ୍ତି ନିବାସ ବାଣୀ ମନ୍ଦିର ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କଲେ । ପ୍ରକାଶକମାନଙ୍କ ଲୁଣ୍ଠନରେ ଲୁଣ୍ଠିତ ନ ହୋଇ ଏକ ସୁସ୍ଥ ସୁନ୍ଦର ସଂସ୍ଥା ଗଢ଼ି ତୋଳିଲେ ଯେଉଁ ସଂସ୍ଥା ସାହିତ୍ୟିକମାନଙ୍କୁ ତାଙ୍କ ନିଜର ପ୍ରାପ୍ୟରୁ ବଞ୍ଚିତ କରି ପାରିବ ନାହିଁ । ସେଥିପାଇଁ ବହୁ ପ୍ରୟାସ । ବହୁ ପ୍ରଚେଷ୍ଟା ଓ ବହୁ ସମୟ ବିନିଯୋଗ ପରେ ବି ବିଫଳ ହେଲା ସେ ପ୍ରଚେଷ୍ଟା । ତହିଁରେ ସେ ଭାଙ୍ଗି ପଡ଼ି ନଥିଲେ । ବାପା ମାଆଙ୍କ ଜ୍ୟେଷ୍ଠ ପୁତ୍ର ଭାବରେ ପରିବାରର ଗୁରୁ ଦାୟିତ୍ୱକୁ ବହନ କରି ସେ ଜୀବନର ମଧ୍ୟାହ୍ନ ଅତିକ୍ରାନ୍ତ କରି ଯାଇଥିଲେ ।

ପ୍ରତାରଣା, ପ୍ରବଞ୍ଚନାରେ ବ୍ୟଥିତ ମଣିଷର ଅହେତୁକ କୌତୂହଳ ଆଉ ସେଇ କୌତୂହଳକୁ ହରାଇ ବସି ସେ ଯେପରି ଅସହାୟ ହୋଇଉଠେ ତାହା ହୁଏତ ତାଙ୍କର ସ୍ୱରଲିପି । ପ୍ରକୃତି ଓ ପ୍ରକୃତିର ଦାସ ହୋଇ ବି ମଣିଷର ସହୃଦୟତାକୁ ବିସ୍ମୟ ପ୍ରକାଶ କରେ ସତ । ହେଲେ ତାହା ଜନମାନସରେ ରେଖାପାତ କରେ । ସାମାଜିକ ବ୍ୟବସ୍ଥାରେ ସେ ଅସନ୍ତୋଷ ପ୍ରାକାଶ କରିଛନ୍ତି । ପ୍ରତି କ୍ଷେତ୍ରରେ ସେ ସୂଚାଇଛନ୍ତି ତାଙ୍କର ଅସନ୍ତୋଷ । ହେଲେ କ'ଣ ହେବ ? ବ୍ୟକ୍ତିଙ୍କୁ ନେଇ ସମାଜ । ସମାଜ ବ୍ୟକ୍ତି ବିଶେଷର ସମଷ୍ଟି । ସାଧାରଣ ଭିତରେ ଅସାଧାରଣତା ଦେଖା ନ ଦେଲେ ତାର ପ୍ରତିଷ୍ଠା ବା ସମ୍ମାନ ବା ଗୌରବ ମିଳିବ କେଉଁଠି ?

ବ୍ୟକ୍ତିଗତ ଜୀବନର ଅନୁଭୂତିକୁ ଲିପିବଦ୍ଧ କଲା ବେଳେ ସେ ଅସ୍ୱଷ୍ଟ ହେଲାପରି ମନେ ହୁଏ । ନ ହେଲେ ଜୀବନ ଦର୍ଶନର ସାର୍ଥକତା ପରିପ୍ରକାଶ ହୋଇ ନଥାଆନ୍ତା । ତାଙ୍କରି ଭାଷାରେ—"ସମସ୍ତ ପ୍ରାପ୍ତି ଓ ଐଶ୍ୱର୍ଯ୍ୟ ମଧ୍ୟରେ ଏକ ସୌଖିନ ହାହାକାର ସେମାନଙ୍କ ଜୀବନକୁ ଅସହାୟ କରି ଗଢ଼େ ।' ସେମାନଙ୍କ ମାଂସ ପେଶୀ ଦୁର୍ବଳ, କଲିଜା ଦୁକୁ ଦୁକୁ । ସେମାନଙ୍କ ବିଚକ୍ଷଣତା ଥାଇପାରେ ମାତ୍ର ହୃଦୟ ନାହିଁ । କିନ୍ତୁ ଅନ୍ୟ ପକ୍ଷରେ ନାନା ଅଭାବ ଅନଟନ ଭିତରେ ବି ଦରିଦ୍ର ନିଜ ସଂସାରକୁ ଷୋଳଅଣା କରି ଗଢ଼େ, ସୁନେଇ ବଳିଆକୁ ହୃଦୟ ଦେଇ ଭଲ ପାଏ । ତେଣୁ ସେଠି ଦୈନ୍ୟ ଭିତରେ ମହତ୍ତ୍ୱ ରହିଛି । ସଜ ପଖାଳ ଭିତରେ ମଧ୍ୟ ବନ୍ଧୁପଣିଆ ଅଛି ।''

ତାଙ୍କ ସାଧନାର ପ୍ରତିକ୍ରିୟାର ଭାଷା 'ଯେଉଁ ପାଠ ମଣିଷକୁ ଅର୍ଥ ଉପାର୍ଜନର ଗଳି କନ୍ଦି ବାଟ ଦେଖାଏ, ମଣିଷଟିଏ କରେ ନାହିଁ, ଦାସଟିଏ କରିଦିଏ, ମିଥ୍ୟାକପଟତାର ଭ୍ରାନ୍ତି ଭରିଦିଏ, ଜୀବନକୁ ସୁଖ ଓ ସମ୍ଭୋଗ ପୂର୍ଣ୍ଣ କରିବାକୁ ପ୍ରବୃତ୍ତ କରାଏ, ଗର୍ବ ଅହଙ୍କାର ବଳରେ ସ୍ନେହ ମମତାର ଡୋରିକୁ ଅକ୍ଳେଶରେ କାଟିଦେଇ ଭାଙ୍ଗି ନିଏ, ମନ ଗଢ଼େ ନାହିଁ, କୋଠାଘର ଗଢ଼େ, ତା'ର ଉଜ୍ଜ୍ୱଳ ଭବିଷ୍ୟତ ଆଶା କରିବା ବୃଥା ।''





# ଆମସମୟର ସ୍ୱାଭିମାନୀ ସ୍ରଷ୍ଟା

**ଡକ୍ଟର ବିଜୟାନନ୍ଦ ସିଂହ**

ପ୍ରଖ୍ୟାତ କଥାକାର ରାଜକିଶୋର ପଟ୍ଟନାୟକ ଜଣେ ଜୀବନବାଦୀ ଶିଳ୍ପୀ । ସ୍ୱାତନ୍ତ୍ର୍ୟ ଉତ୍କର୍ଷର ପରିଚୟ । ସ୍ୱତନ୍ତ୍ର ଜୀବନ ଥିଲା ରାଜକିଶୋରଙ୍କର । ରଚନା ବି' ଥିଲା ତାଙ୍କର ସ୍ୱତନ୍ତ୍ର । ମୌଳିକ ଦୃଷ୍ଟିଭଙ୍ଗୀରେ ଆମ ସାହିତ୍ୟର ସେ ସାର୍ଥକ ପ୍ରତିନିଧି । ଶାନ୍ତ, ସରଳ ମଣିଷଟିଏ । ନିରଳସ ଜୀବନ ପ୍ରଣାଳୀ – କିନ୍ତୁ ଇସ୍ପାତଠାରୁ ଆହୁରି ଦୃଢ଼ ଓ ଶକ୍ତିଶାଳୀ । ମଣିଷ ଭିତରେ ମଣିଷ ପଣିଆକୁ ସେ ଦେଖିଥିଲେ । ସେଇଥିପାଇଁ ସେ ବୋଧହୁଏ ଏତେ ଶାନ୍ତ, ସରଳ, ସହଜ ମଣିଷ ଥିଲେ । ମାନବ ଚରିତ୍ରକୁ ଅନୁଶୀଳନ କରିବାରେ ସେ ସମର୍ଥ ସ୍ରଷ୍ଟା । ଜୀବନର ବିବିଧ ଦିଗକୁ ସାହିତ୍ୟ ମାଧ୍ୟମରେ ପ୍ରକାଶ କରିବାରେ ସେ ଜଣେ ଅଦ୍ୱିତୀୟ ଲେଖକ । ମାପିଚୁପି ଶବ୍ଦ ବ୍ୟବହାର କରିବାରେ ସେ ଯେପରି ସଫଳତା ଅର୍ଜନ କରିଥିଲେ, ସେହିପରି କଥାବସ୍ତୁ ନିର୍ବାଚନ ଓ ଅଧିକ ସଂଯତ ଓ ଶୃଙ୍ଖଳିତ ପରିବେଷଣରେ ସେ ଥିଲେ ସିଦ୍ଧହସ୍ତ । ତାଙ୍କ ଗଳ୍ପ ଶୈଳୀ ପ୍ରତୀକଧର୍ମୀ । ତାଙ୍କ ଉପନ୍ୟାସ ଶୈଳୀ ବିଶ୍ଳେଷଣାତ୍ମକ । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ତାଙ୍କ ରଚନାର ଅନ୍ୟତମ ବୈଶିଷ୍ଟ୍ୟ ।

ମୋର ଏବେ ମାନସପଟରେ ଅଙ୍କିତ ହେଉଛି ଦୀର୍ଘ ୧୫ ବର୍ଷ ତଳର କଥା । ରାଜକିଶୋର ବାବୁଙ୍କ ଘନିଷ୍ଠ ବନ୍ଧୁ ନିମୁଦା (ଶୈଳେନ୍ ଭଟ୍ଟାଚାର୍ଯ୍ୟ) ଓ ରାଜୁବାବୁ ଉଭୟ ସାଇକେଲ୍‌ରେ ଯିବା ଆସିବା କରନ୍ତି । କେତେ କଥା ଗପନ୍ତି – କେତେ ଆଲୋଚନା କରନ୍ତି – ଡିଷ୍ଟ୍ରିକ୍ଟ ଜଜ୍ କୋର୍ଟର ବାର୍‌ରେ । ରାଜୁବାବୁ, ନିମୁଦା ସେଇଠି ଅନେକ ସମୟରେ ବସିଥାନ୍ତି । ପାଟିରେ ଖଣ୍ଡେ ବିଡ଼ି – ପୁଣି ବାରମ୍ବାର ଚାହା ପିଉଥାନ୍ତି ରାଜୁବାବୁ । ମୁଁ ସେତେବେଳେ ଏମ୍.ଏ. ପଢ଼ୁଥାଏ । ମୋର ଲେଖା 'ଡଗର'ରେ ପ୍ରକାଶ ପାଉଥାଏ । ପ୍ରଥମ ପ୍ରଥମ ଲେଖା ବାହାରିବାବେଳେ ଯେଉଁ ଅପୂର୍ବ ଶିହରଣ । ଦୁଇ ତିନି ଦିନ ପରେ ପୋଷ୍ଟକାର୍ଡ଼ଟେ ପାଇଲି, ପଢ଼ିଲି । ରାଜକିଶୋର ପଟ୍ଟନାୟକ ଲେଖିଛନ୍ତି । ମୋ ଗପଟିକୁ କେତେ ଭଲ ଭାବରେ ପଢ଼ିଛନ୍ତି, ଅନୁଶୀଳନ କରିଛନ୍ତି । ମୋତେ ଭଲ ଲାଗିଲା, ପ୍ରେରଣା ବି' ମିଳିଲା । ଏହା ପରେ ପ୍ରାୟତଃ ଯେତେ ମୋର ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି ସେ ଲେଖା ସମ୍ପର୍କରେ ବିଭିନ୍ନ ମନ୍ତବ୍ୟ ସହ ବାରମ୍ବାର ଚିଠି ଲେଖିଛନ୍ତି । କେତେବଡ଼ ସ୍ରଷ୍ଟା ! ପୁଣି ଘାସଟିକୁ ବଢ଼ାଇବା ପାଇଁ ତାଙ୍କର ଏହି ଉଦ୍ୟମ । ଜଣେ ତରୁଣକୁ ଗଢ଼ିବା ପାଇଁ ଜଣେ ପ୍ରବୀଣର ଐକାନ୍ତିକ ନିଷ୍ଠା - ବାସ୍ତବିକ୍ ବିରଳ ।





କେତେଦିନ ପରେ ମୁଁ ନିମୁଦାଙ୍କ ସହ ରାଜୁବାବୁଙ୍କୁ ସେହି ବାର୍‌ର ଶେଷ ରୁମ୍‌ରେ ସାକ୍ଷାତ କରିଥିଲି । ଦେଖା ହେଲା ମାତ୍ରେ କେତେ ସ୍ନେହ ଶ୍ରଦ୍ଧା, କେଉଁଠି କେଜାଣି ରଖିଥିଲେ ସେ ମୋ ଉପରେ ଅଜାଡ଼ି ଦେଲେ । ସେହିଦିନୁ ମୋର ତାଙ୍କ ସହ ସମ୍ପର୍କ । ଅନେକ ସମୟରେ ପ୍ରାୟତଃ ସେ ଲେଖୁଥାନ୍ତି । ସାହିତ୍ୟ ସଂସ୍କୃତି ପ୍ରତି ତାଙ୍କର ଅପୂର୍ବ ମୋହ । କୌଣସି ପରିସ୍ଥିତିରେ ସେ ସାଲିସ୍ କରିବାର ମଣିଷ ନଥିଲେ । ମୁଁ ପୁଣି ତାଙ୍କୁ ସାକ୍ଷାତ କରିଛି ଯେତେବେଳେ ତାଙ୍କୁ 'ସାରଳା ସମ୍ମାନ' ପ୍ରଦାନ କରିବା ପାଇଁ ନିଷ୍ପତ୍ତି ହେଲା । ରାଜୁବାବୁ ଗ୍ରହଣ କରିବେ କି ନାହିଁ ଏକ ବିରାଟ ପ୍ରଶ୍ନବାଚୀ । ପରମ ପୂଜ୍ୟ ପଠାଣି ସାର୍‌ଙ୍କ ନିର୍ଦ୍ଦେଶ କ୍ରମେ 'ସାରଳା ସାହିତ୍ୟ ସଂସଦ'ର ସମ୍ପାଦକ, ଇଂ. ପ୍ରଭାକର ସ୍ୱାଇଁ ଓ ମୁଁ ରାଜୁବାବୁଙ୍କୁ ତାଙ୍କ ତଳ ତେଲେଙ୍ଗା ବଜାର ବାସଭବନରେ ଭେଟି ଥିଲୁ । ଏହି ପ୍ରସ୍ତାବ ସମ୍ପର୍କରେ ତାଙ୍କୁ କହିବା ମାତ୍ରେ ସେ କେତେ ସମୟ ଚୁପ୍ ହୋଇଗଲେ ଏବଂ ପରେ ପରେ ନିଜର ଅସମ୍ମତି ପ୍ରକାଶ କଲେ । ମୁଁ ସେଦିନ ଦେଖିଛି — ଜଣେ ମଣିଷ କେମିତି ନିଜ ନିଷ୍ପତ୍ତିରେ ଦୃଢ଼ ରହିପାରେ । କୌଣସି ପ୍ରଲୋଭନ ତାଙ୍କୁ ସ୍ପର୍ଶ କରିପାରିନଥିଲା ।

ରାଜୁବାବୁଙ୍କ ବହୁଚର୍ଚ୍ଚିତ ଉପନ୍ୟାସ 'ରାସ୍‌କେଲ୍' ରଚନା କରୁଥାନ୍ତି । ଏହା ସମ୍ପର୍କରେ କେତେ ଆଲୋଚନା କରିଛନ୍ତି ତାହାର ତୁଳନା ନାହିଁ । 'ରାସ୍‌କେଲ୍' ସମ୍ପର୍କରେ ତାଙ୍କର ଭାବନା ପ୍ରକାଶ କରି ଆମ ମତାମତ ଲୋଡୁଥାନ୍ତି । ମୁଁ ବିସ୍ମିତ ହୁଏ, ଆମେ ସତରେ କ'ଣ ତାଙ୍କୁ ଏ ସମ୍ପର୍କରେ ଉଚିତ୍ ପ୍ରସ୍ତାବ ଦେଇପାରିବୁ ? ଆମ କଥା ମନକୁ ପାଇଲେ ସେ ଲେଖି ପକାନ୍ତି ଓ କୁହନ୍ତି 'ସାବାସ୍' ।

ମୁଁ ଅନୁରୋଧ କରିଥିଲି ତାଙ୍କୁ 'ଡଗର'ରେ ଧାରାବାହିକ ଭାବରେ ଲେଖିବା ପାଇଁ । ମୋର ଅନୁରୋଧ ରକ୍ଷା କଲେ । ଅଡୁଆ ସୂତ୍ର ପ୍ରକାଶ ପାଇଁ ସେ ଆମକୁ ଦେଲେ ।

ମଣିଷ ଜୀବନକୁ ସେ ଛୁଇଁଥିଲେ ଏବଂ ହୃଦୟର ଗଭୀରତାକୁ ମାପିଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ ତାଙ୍କର ସ୍ୱାଭିମାନକୁ ରକ୍ଷା କରିଥିଲେ । ତାଙ୍କ ପରି ସ୍ୱତନ୍ତ୍ର ମଣିଷ, ମୌଳିକ ପ୍ରତିଭାଧାରୀ ବ୍ୟକ୍ତିତ୍ୱ ଆମ ସାହିତ୍ୟରେ ଆଉ ମିଳିବେ ନାହିଁ ।

ମାହାଙ୍ଗା, କଟକ





# ସ୍ୱୀକୃତି ଚାହିଁନଥିବା ଲେଖକ

**ବିଜୟ କୁମାର ପଡ଼ିହାରୀ**

ଲେଖକ ଲେଖେ । ନିଜର ଜ୍ଞାନ, ଗାରିମା, ବିବେକ ଖଟାଇ ଲେଖେ । ଯାହା କଳ୍ପନାକୁ ଆସେ ଲେଖେ । ନିଜ ସମ୍ମୁଖରେ ଦୁନିଆରେ ନିତିଦିନ ଘଟୁଥିବା ଘଟଣାକୁ ଦେଖି ଲେଖେ । ନିଜର ପ୍ରତିକ୍ରିୟା ପ୍ରକାଶ କରେ ତା'ର ଲେଖା ମାଧ୍ୟମରେ । ସମାଜ ଗ୍ରହଣ କରୁ ବା ନକରୁ ସେ ଲେଖେ । ସେ ଲେଖି ଚାଲିଥାଏ ତା'ର ହାତ ରହିଯିବା ଯାଏ । ମୁଣ୍ଡ କାମ କରୁଥିବା ଯାଏ ଓ ଆଖି ବୁଜି ହେବା ଯାଏ । ତା'ର ଖାତିର ନଥାଏ ତା'ର ସ୍ୱୀକୃତିକୁ । କିଏ ତାକୁ ସ୍ୱୀକୃତି ଦେଲା କି ନ ଦେଲା । ସେଥିପାଇଁ ତା'ର କଲମ ବନ୍ଦ ହୋଇଯାଏ ନାହିଁ । ସମ୍ମାନ କିମ୍ବା ପୁରସ୍କାର ପାଇଁ ଲାଳାୟିତ ହୋଇ ସେ ଲେଖେନି । ଏହି ଚିନ୍ତା ଚେତନାର ଜଣେ ବଳିଷ୍ଠ ଲେଖକ – ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକ । ତାଙ୍କ ଲେଖନୀ ଥିଲା ସଦା ଚଳଚଞ୍ଚଳ । ସେ ଅବାରିତ ଗତିରେ ଲେଖି ଯାଇଛନ୍ତି ଅନେକ ଗଳ୍ପ ଓ ଉପନ୍ୟାସ । ପ୍ରେମିକର ଡାଏରୀ, ସିନ୍ଦୂର ଗାର, କଳା ପରଦା, ସକାଳ କୁହୁଡ଼ି, ପ୍ରୀତିର ବଣିକ, ପ୍ରେମର ନିୟତି, ପଞ୍ଜୁରୀ ପକ୍ଷୀ, ସପନ କୁହୁଡ଼ି, ବିରହିଣୀ, ନିଶାଣ ଖୁଣ୍ଟ, ସ୍ମୃତିର ମଶାଣି, ସଞ୍ଜବତୀ, ଅଷ୍ଟମୀ ଚାନ୍ଦ, ତ୍ରିବର୍ଣ୍ଣର ମକରା, ଅତୁଆ ସୂତା, ଜୀବନର ସନ୍ଧ୍ୟା, ଜୀବନରେ ସମ୍ଭବ, ହୃଦୟ ବନ୍ଧନ, ଓ ପୋଡ଼ା କପାଳ ପ୍ରଭୃତିରେ ଶ୍ରୀଯୁକ୍ତ ପଟ୍ଟନାୟକ ଅତି ସରଳ ଭାଷାରେ ଓ ସାବଲୀଳ ପ୍ରଭାଶ ଭଙ୍ଗୀରେ ରୂପାୟିତ କରିଛନ୍ତି ପ୍ରେମିକ ଓ ପ୍ରେମିକାଙ୍କ ମନସ୍ତତ୍ତ୍ୱ ବିଶ୍ଳେଷଣ, ପ୍ରେମିକ ଓ ପ୍ରେମିକାର ମାନସିକ ଦ୍ୱନ୍ଦ୍ୱ । ରକ୍ଷଣଶୀଳ ସାମାଜିକ ପ୍ରଥା ମଧ୍ୟରେ ସଂଘର୍ଷର କାହାଣୀ । ସେ ଜଣେ କୁଶଳୀ କଥାକାର ଓ ବିଷୟବସ୍ତୁ ନିର୍ବାଚନରେ ଅତୀବ ସଚେତନ । ମାନବ ଚରିତ୍ର ଅଧ୍ୟୟନରେ ପାରଙ୍ଗମ ।

ଲେଖି ଲେଖି କଲମ ଦବି ଯାଇନି । ଜୀବନର ଚିରନ୍ତନ ସତ୍ୟ – ମୃତ୍ୟୁକୁ ଚାହିଁ ରହିଛନ୍ତି ଅତି ଦୁଃଖ ଦୈନ୍ୟ ମଧ୍ୟରେ । ମୋର ମନେ ପଡ଼େ ସେ ଦିନର କଥା । ଏହି ଅବସ୍ଥାରେ ଯେଉଁ ଦିନ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ ସମ୍ମାନିତ କରିଥିଲା ଅତିବଡ଼ୀ ଜଗନ୍ନାଥ ଦାସ ସମ୍ମାନରେ । ଉପସ୍ଥିତ ଥାଆନ୍ତି ଏକାଡେମୀର ସଭାପତି କିଶୋରୀ ଚରଣ ଦାସ, ସଂପାଦକ ହରପ୍ରସାଦ ପରିଚ୍ଛା ପଟ୍ଟନାୟକ ଓ ବିଶିଷ୍ଟ ଶିକ୍ଷାବିତ୍ ଡଃ ଖଗେଶ୍ୱର ମହାପାତ୍ର ଓ ବହୁ ମାନ୍ୟଗଣ୍ୟ ସାହିତ୍ୟ ପ୍ରେମୀ ଜନସାଧାରଣ । ତାଙ୍କର ସମ୍ମାନର ଉତ୍ତରରେ ଭାବଗଦ୍‌ଗଦ୍ ସ୍ୱରରେ ସେ କହିଥିଲେ କେଇପଦ ଉପାଦେୟ କଥା । ସେଥିରୁ ଗୋଟିଏ ହେଲା – 'ସମସ୍ତ ଅବସରପ୍ରାପ୍ତ କର୍ମଚାରୀ ଓ ବର୍ତ୍ତମାନ ସରକାରୀ ଚାକିରୀରେ ଥିବା

ପ୍ରତ୍ୟେକ କର୍ମଚାରୀ ଯଦି ବର୍ଷକୁ ୧୦୦୦ ଟଙ୍କାର ବହି କିଣନ୍ତେ ତାହେଲେ ନିଶ୍ଚୟ ଓଡ଼ିଆ ସାହିତ୍ୟ ବିକାଶ ଲାଭ କରିପାରନ୍ତା ।

ଏଇଟି ତାଙ୍କ ଅନ୍ତରର କଥା । ଦୀର୍ଘ ଦିନର ଅଭିଜ୍ଞତା କଥା । ଅଙ୍ଗେ ଲିଭାଇଥିବାର କଥା । ସେ ବହି ଲେଖିଛନ୍ତି ଓ ପ୍ରକାଶ କରିଛନ୍ତି । ତା'ର ପ୍ରସାର ଓ ପ୍ରଚାର ପାଇଁ କେତେ ଯେ ବାରମ୍ବାର ଶୁଣ୍ଢିପିଣ୍ଡା ହୋଇଛନ୍ତି ତା'ର ଇୟତ୍ତା ନାହିଁ । ବହି ପ୍ରକାଶ କରି କେତେକ ବ୍ୟକ୍ତି, ଅନୁଷ୍ଠାନ ଓ ବ୍ୟବସାୟ ପ୍ରତିଷ୍ଠାନକୁ ଦେଇଛନ୍ତି । ବିକ୍ରିଲବ୍ଧ ଅର୍ଥ ମିଳିବାତ ଦୂରର କଥା ଅବିକ୍ରି ବହି ମଧ୍ୟ ଫେରସ୍ତ ମିଳିନି । ଓଡ଼ିଶାରେ ବହି କିଣିବା, କିଣି ପଢ଼ିବା କଥା ନକହିଲେ ଭଲ । ଯାଚିକରି ମାଗଣାରେ ଦେଲେ ବି କେହି ପଢ଼ନ୍ତି ନାହିଁ । ଓଡ଼ିଶାରେ ପାଠକ କମ୍ । ବହି ପଢ଼ିବା ପ୍ରତି ଆଗ୍ରହ ନାହିଁ । ପରିବେଶ ନାହିଁ କି ଶିକ୍ଷା ନାହିଁ । ପାଠକ ସୃଷ୍ଟି ପାଇଁ ବେସରକାରୀ କି ସରକାରୀ ଉଦ୍ୟମ ନାହିଁ । ଏହାଥିଲା ରାଜୁବାବୁଙ୍କ ବିଶେଷ ଚିନ୍ତା, ଜୀବନର ଶେଷଯାଏ ।

ପ୍ଲଟ୍ ନଂ - ୭

ଶାନ୍ତିନଗର, କଟକ-୧୨







# ଏକ ସ୍ମରଣୀୟ ବ୍ୟକ୍ତିତ୍ୱ

**ସଂଘମିତ୍ରା ମହାନ୍ତି**

ରାଧାନାଥ ତାଙ୍କ 'ମହାଯାତ୍ରା' କାବ୍ୟରେ ଗୋଟିଏ ପଂକ୍ତିରେ ଉଲ୍ଲେଖ କରିଥିଲେ— ''ସ୍ଥିରଟି ନୁହଁଇ ଜୀବ, ସ୍ଥିରଟି ମରଣ / ମାଟିର ଏ ଘଟ ଦିନେ ମିଶିବ ମାଟିରେ।'' ରାଧାନାଥଙ୍କ ଏ ଉକ୍ତିଟି ଯଥାର୍ଥରେ ଠିକ୍। ଦିନ ଚାଲିଯିବ, ଚିହ୍ନ ରହିଯିବ। ଏ ଧୂଳି ଧୂସରିତ ମାଟିକୁ ଅନେକ ଆସିଛନ୍ତି, ନିଜ ନିଜର ଅଭିନୟର ପରାକାଷ୍ଠା ଦେଖାଇଛନ୍ତି ପୁଣି ନିଶ୍ଚିହ୍ନ ହୋଇଯାଇଛନ୍ତି। ଯିବା ଆସିବାରେ କିଛି ଯାଏ ଆସେ ନାହିଁ, କିନ୍ତୁ ଯେତେ ଦିନ ପାଇଁ ଏଠିକି ଆସିବୁ ସେହି ଦିନମାନଙ୍କରେ ନିଜ ନିଜର ଚାତୁରୀ ଦେଖାଇ ଗଲେ ସବୁଦିନ ପାଇଁ ଜନମାନସରେ ସ୍ମରଣୀୟ ହୋଇ ରହିବେ। ସେ ଆଜି ଆଉ ନାହାନ୍ତି, କିନ୍ତୁ ତାଙ୍କ ଶିଳ୍ପ ଚାତୁରୀ ଏମିତି ଜନମାନସରେ ଛାପି ହୋଇ ରହିଯାଇଛି ଯାହାକି ଯୁଗ ଯୁଗ ଧରି ସେ ମଣିଷ ହୃଦୟରେ ସ୍ମରଣୀୟ, ବନ୍ଦନୀୟ, ପୂଜନୀୟ ହୋଇ ରହିବେ। ସେ ହେଉଛନ୍ତି ପ୍ରଥିତଯଶ ବରେଣ୍ୟ କଥାକାର ରାଜକିଶୋର ପଟ୍ଟନାୟକ। ସେ ଏକ ସ୍ମରଣୀୟ ବ୍ୟକ୍ତିତ୍ୱ। ଓଡ଼ିଆ ବାଣୀ ଭଣ୍ଡାରକୁ ତାଙ୍କର ଦାନ ସ୍ୱୀକାର୍ଯ୍ୟ। କଥା ସାହିତ୍ୟର ପେଡ଼ିଖୋଲି ଦେଲେ ରାଜକିଶୋରଙ୍କ ଗଳ୍ପର ଚରିତ୍ରଗୁଡ଼ିକ ଯେମିତି ଜୀବନ୍ତ ହୋଇ ଉଠନ୍ତି। ତାଙ୍କ ଗଳ୍ପ, ଉପନ୍ୟାସର ଚରିତ୍ରଗୁଡ଼ିକ ଏ ମାଟିର, ଏ ଧୂଳି ଧୂସରିତ ଧରଣୀର। ସେମାନେ ଯେମିତି ଆମରି ଭିତରେ ବଞ୍ଚି ରହିଛନ୍ତି। ଯଦିଓ ସଂଖ୍ୟା ଦୃଷ୍ଟିରୁ କମ୍, ତଥାପି ଗୁଣାତ୍ମକ ଦୃଷ୍ଟିରୁ ତାହା ଅନନ୍ୟ। ଅଳ୍ପ କଥାରେ ଅନେକ ଭାବ ପରଶି ଦିଅନ୍ତି ସେ। ମାନବ ଚରିତ୍ରର ଗଭୀର ଅଧ୍ୟୟନ ଓ ତାର ରୂପାୟନ ତାଙ୍କ ସୃଷ୍ଟିର ଅନ୍ୟ ଏକ ଆକର୍ଷଣ। ରାଜକିଶୋର ପଟ୍ଟନାୟକ ତାଙ୍କର ଅନେକ ଗଳ୍ପରେ ଆମ ପ୍ରାକୃତିକ ଦୃଶ୍ୟରାଜି ମଧ୍ୟରେ ନିହିତ ଥିବା ନାନା ପ୍ରକାର ଅପାଂକ୍ତେୟ ପରିବେଶ ମଧ୍ୟରୁ ତାଙ୍କ ଜୀବନାଦର୍ଶର ଭାବରାଜି ସଂଗ୍ରହ କରିଛନ୍ତି। ନରନାରୀମାନଙ୍କର ବୃହତ୍ତର ଦିଗନ୍ତକୁ ଛୁଇଁଯିବାପାଇଁ ତାଙ୍କ ଗଳ୍ପଗୁଡ଼ିକ ଯେପରି ଅଂଗୀକାରବଦ୍ଧ। ତୁଠ ପଥର, ଘାସ, ବାଲି, ଧୂଳି, ପଥର ଡିମା, ପାଉଁଶ, ଅପରାଜିତା ଫୁଲ ପ୍ରଭୃତି ଗଳ୍ପଗୁଡ଼ିରେ ରହିଛି ତାଙ୍କର ଜୀବନାଦର୍ଶ। ଏହା ଯେମିତି ତାଙ୍କ ଜୀବନ ସହିତ ସଂପୃକ୍ତ। 'ତୁଠପଥର'ରେ ସେ କହିଛନ୍ତି ଗାଧୁଆ ତୁଠରେ ଅଧା ପାଣି ଓ ଅଧା ଶୁଖିଲା ହୋଇ ଯେଉଁ ଚଉରାସିଆ ପଥର ଖଣ୍ଡଟିମାନ ସମସ୍ତଙ୍କର ଗୋଡ଼ ଘସା ପାଇଁ ପଡ଼ି ରହିଥାଏ, ସେଇଟି ସଂସାରର ଗୋଟିଏ ଇଂଗିତପୂର୍ଣ୍ଣ ନିଶାଣ, କାରଣ ସଂସାରର ଅନେକ ନରନାରୀ କର୍ମବୀରମାନଙ୍କୁ ତୁଠପଥର ପରି ବ୍ୟବହାର କରି ଗୋଇଠା ଦେଇ ହସି ହସି ଚାଲିଯାନ୍ତି। ଅନ୍ୟମାନଙ୍କ ଆଖିରେ ସେହି ତୁଠ ପଥର ଖଣ୍ଡିକ ନିଷ୍ପ୍ରାଣ ପଥର ଖଣ୍ଡିଏ ହୋଇ ଥାଇ ପାରେ, ମାତ୍ର ତାହା ରାଜକିଶୋରଙ୍କ ଆଖିରେ ଜୀବନ୍ତ ପାଲଟି ଯାଇଛି।

ତାଙ୍କ ଜୀବନ ଯେମିତି ତୁଠପଥର ପରି । ସେଠି ସେ ଆବିଷ୍କାର କରିଛନ୍ତି ମଣିଷର ମନକୁ । ମଣିଷ ଜୀବନର ଅନେକ ଦିଗ ସଂପର୍କରେ ତାଙ୍କ ଗଳ୍ପରେ ବର୍ଣ୍ଣନା କରାଯାଇଛି । ତାଙ୍କର ଅଧିକାଂଶ ଗଳ୍ପରେ ସମାଜ ଓ ମଣିଷ ଜୀବନର ମୂଲ୍ୟ ଆଙ୍କିଛନ୍ତି । ଜୀବନର ଦୁଇଟି ପାର୍ଶ୍ୱକୁ ସେ ତଉଲିଛନ୍ତି । ସମାଜ ବ୍ୟବସ୍ଥା ମଧ୍ୟରେ ଦ୍ୱୈତ ଜୀବନର ଆନନ୍ଦ ଓ କାରୁଣ୍ୟକୁ ସେ ଲକ୍ଷ୍ୟ କରିଛନ୍ତି । ଏଠି ଦଳେ ଖଟିଖିଆ, ଆଉ ଦଳେ ଲୁଟିଖିଆ । ଖଟିଖିଆ ଜୀବନକୁ ସନ୍ତୁଳିତ କରି ବଞ୍ଚି ଥିବା ଲୋକ । ସାମାଜିକ ବ୍ୟବସ୍ଥା ସେହିମାନଙ୍କ ନିର୍ଦ୍ଦେଶରେ ଚାଲେ । ସେମାନେ ଅନ୍ୟମାନଙ୍କ ଆଖିରେ ମହାନ୍, ଧନୀ, ଦାର୍ଶନିକ, ବୁଦ୍ଧିଆ । ଅନ୍ୟ ପକ୍ଷେ ଖଟିଖିଆ, ମଜୁରିଆର ସନ୍ତୁଳିତ ଜୀବନ । ସେ ଜୀବନର ମାନେ କିଛି ନାହିଁ । ସେ ବଞ୍ଚେ ନିଜ ପେଟ ଟିକକୁ ପୋଷିବା ପାଇଁ, ତା' ପକ୍ଷରେ ବଡ଼ଲୋକ ଶବ୍ଦ ନିରର୍ଥକ । ସେ ବଞ୍ଚି ଥାଏ ଏଇ ବଡ଼ ଲୋକମାନଙ୍କ ପାଇଁ । ରାଜକିଶୋର ଏହି ଧନୀ, ଦରିଦ୍ରର ଭେଦଭାବ ସଂପର୍କରେ ତାଙ୍କ ଗଳ୍ପଗୁଡ଼ିକରେ ପ୍ରାଣବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି ଦାରିଦ୍ର୍ୟର ଚିତ୍ର ଆଙ୍କିଛନ୍ତି, କେଉଁଠି ଶୁଣିଆ ଶୁଖିଲା କଣ୍ଠ ହୋଇଛନ୍ତି । ସତୁରାମାନେ ଏଠି ଅସହାୟ, ସରଳ ବିଦିଆର ପ୍ରାଣ ଏଠି ଛଟପଟ ହୋଇ ଚାଲିଛି । ତା'ର ପ୍ରାଞ୍ଜଳ ବର୍ଣ୍ଣନା ଗାଳ୍ପିକଙ୍କ ଶିଳ୍ପ ଚାତୁରୀରୁ ଜଣାଯାଇ ଥାଏ । ଏଠି ଏହିମାନେ ସମାଜର ଜଣେ ଜଣେ ଦରିଦ୍ର ଲୋକ । ସହରୀ ଜୀବନକୁ ରାଜକିଶୋର ବିଫଳତା ବୋଲି ମନେ କରନ୍ତି । ସହରୀ ସଭ୍ୟତାରେ ବଢ଼ି ଆଜିର ବ୍ୟକ୍ତି କିପରି ନିଜର ହୃଦୟବତ୍ତାକୁ ଭୁଲିବାରେ ଲାଗିଛି । ଉଚ୍ଚ ଆସନର ମୋହ, ପଦପଦବୀର ଲାଳସା ତାଙ୍କୁ ପାତାଳଗାମୀ କରାଉଛି । ଏହା ଦ୍ୱାରା ସେ ନିଜେ ନିଜକୁ ଭୁଲିବାରେ ଲାଗିଛି ।

ମୋଟ ଉପରେ ତଥାକଥିତ ଶିକ୍ଷିତ ଶ୍ରେଣୀମାନଙ୍କ ପ୍ରତି ତାଙ୍କର ତାଚ୍ଛଲ୍ୟଭାବ ପ୍ରକଟିତ ହୋଇଛି । ଆଜି ଶିକ୍ଷାର ସର୍ବୋତ୍ତମ ଲକ୍ଷ୍ୟ ହୋଇଛି ଚାକିରି । ଅନେକ ଗଳ୍ପ ତାଙ୍କର ଜୀବନ ସର୍ବସ୍ୱ ହୋଇଛି । ମଣିଷ ଜୀବନର ବାସ୍ତବିକତାକୁ ସେ ତାଙ୍କ ଗଳ୍ପରେ ରୂପାୟନ କରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକରେ ରହିଛି ମଣିଷକୁ ବିବେକୀ ଓ ବିଚାରବନ୍ତ କରି ଗଢ଼ିତୋଳିବାର ଏକ ଅନ୍ତରଙ୍ଗ ସ୍ୱପ୍ନ । ବାସ୍ତବ ଜୀବନର ନିଖୁଣ ସତ୍ୟକୁ ପ୍ରକାଶ କରିବା ବେଳେ ତାଙ୍କ ଭିତରର ରୁଦ୍ଧ ଭାବୋଚ୍ଛ୍ୱାସ ଓ ହୃଦୟର ବ୍ୟାକୁଳତା ଗଳ୍ପର କଥାବସ୍ତୁ ଓ ଶୈଳୀରେ ଏକ ଲକ୍ଷ୍ୟଭେଦୀ ଅବସର ସୃଷ୍ଟି କରି ଅଛି । ତେଣୁ ରବୀନ୍ଦ୍ର ନାଥ ଯାହା କହିଥିଲେ ''ଛୋଟ ପ୍ରାନ୍ ଛୋଟ ବ୍ୟଥା, ଛୋଟ ଛୋଟ ଦୁଃଖକଥା'' ତାହା ରାଜ କିଶୋରଙ୍କ ଗଳ୍ପରେ ଲକ୍ଷଣୀୟ । ତାଙ୍କ ଭାଷାର ଶୈଳୀ ଅତ୍ୟନ୍ତ ରୁଚିକର, ସରଳ ଓ ଆବେଗ ଧର୍ମୀ । ସର୍ବୋପରି ତାଙ୍କ ଗଳ୍ପରେ ରହିଛି ମଣିଷ ଜୀବନର ରସଘନ ପରିପୁଷ୍ଟି ।

ତଗରପଡ଼ା, କଟକ-୨



# ସ୍ମୃତିରୁ ଖିଏ

**ମାଧବାନନ୍ଦ ଦାସ**

ସେ ଦିନ ମୋର ପରମବନ୍ଧୁ ଶ୍ୟାମସୁନ୍ଦର ମହାନ୍ତି (କାହ୍ନୁବାବୁ ଓ ଗୋପି ବାବୁଙ୍କ ପୁତୁରା)ଙ୍କ ସହିତ ରାଜୁବାବୁଙ୍କୁ ଦେଖିବାକୁ ଯିବାକୁ ଭାବିଥିଲି । ହଠାତ୍ ଶୈଳେନ୍ ଭଟ୍ଟାଚାର୍ଯ୍ୟ ଓରଫ ନିମୁ ତାଙ୍କ ଭଙ୍ଗା ସାଇକେଲ୍‌ରେ ଆସି ଓହ୍ଲେଇ ପଡ଼ିଲେ । ମୁହଁ ଶୁଖି ଯାଇଛି । ମତେ ଦେଖି କାନ୍ଦ କାନ୍ଦ ହୋଇ କହିପକାଇଲେ, 'ଶୁଣିଲେଣି, ରାଜୁବାବୁ କାଲି ରାତି ସାଢ଼େ ଦୁଇଟାବେଳେ ଚାଲିଗଲେ ।'

ମୁଁ ଅବାକ୍ ହୋଇଗଲି । ହଠାତ୍ ରାଜୁବାବୁଙ୍କ ମୁହଁଟା ଜଳଜଳ ହୋଇ ଦିଶିଗଲା । ନିମୁକୁ ଧ୍ରୁବଚରଣ ସାହୁଙ୍କୁ ଖବର ଦେବା ପାଇଁ ପଠାଇ ଦେଲି । ସେ ଆସିବା ପରେ ରାଜୁବାବୁଙ୍କ ଶେଷ ଦର୍ଶନ ପାଇଁ ବାହାରୁଛୁ, ରବି ମହାପାତ୍ର ଆସି ଖବର ଦେଲେଯେ ତାଙ୍କୁ ଖାନ୍‌ନଗର ଶ୍ମଶାନକୁ ନେଇ ଗଲେଣି । ତେଣୁ ଆମେ ଶ୍ମଶାନକୁ ଯାଇ ଦେଖିଲୁ ଯେ ତାଙ୍କୁ ଚିତା ଉପରେ ଶୁଆଇ ଦିଆଯାଇଛି । ତାଙ୍କ ମୁହଁଟା ମଲା ପରି ଦେଖାଯାଉ ନଥିଲା । ଜୀବନ୍ତ ବେଳ ମୁହଁର ପ୍ରକାଶ କମିନାହିଁ ।

ଗଛମୂଳେ ଧ୍ରୁବ ବାବୁ, ନିମୁ ଓ ମୁଁ ତିନିଜଣ ବସିରହିଲୁ । ଚିତାଗ୍ନି ଜଳି ଉଠିଲା । ଆସ୍ତେ ଆସ୍ତେ ଅଗ୍ନି ସମସ୍ତ ଶରୀର ଗ୍ରାସ କଲା । ସେହି ଅଗ୍ନାନଳର ଶିଖାରେ ଭାସି ଯାଉଥାଏ ଅତୀତର କେତେକ ଦୃଶ୍ୟ । ତାଙ୍କ ସହିତ ପ୍ରଥମେ ଦେଖାହୁଏ ୧୯୩୬ରେ । ସେତେବେଳେ ସୁନାମଧନ୍ୟ ସାହିତ୍ୟିକ କାହ୍ନୁଚରଣ ମହାନ୍ତି ଏବଂ ଗୋପିନାଥ ମହାନ୍ତି ବଙ୍ଗାଳି ସାହି ମଠ ଅଞ୍ଚଳରେ ଗୋଟିଏ ଚାଳଘରେ ରହୁଥାନ୍ତି । ବାହାରର ଉଚ୍ଚ ପିଣ୍ଡାରେ ସେମାନେ ବସାବସି କରନ୍ତି ।

ସେହି ଘର ଆର ପାଖରେ ଗୋଟିଏ ପଡ଼ିଆ ଥାଏ । ସେଠାରେ ବ୍ୟାଡ଼ମିଣ୍ଟନ ଖେଳନ୍ତି ରାଜୁବାବୁ, ଗୋପିବାବୁ ଏବଂ ଏଙ୍କର ଘନିଷ୍ଠ ବନ୍ଧୁ ରଘୁନାଥ ଦାସ (ଅବସରପ୍ରାପ୍ତ ମାଜିଷ୍ଟ୍ରେଟ୍) । ମୁଁ ଓ ମୋ ବନ୍ଧୁ ଶ୍ୟାମସୁନ୍ଦର ମଧ୍ୟ ଖେଳୁ । ଆମେ ସେତେବେଳେ ସେମାନଙ୍କ ଆଗରେ ପିଲା । ତେବେ ରାଜୁବାବୁ ଏବଂ ଗୋପିବାବୁ ଆମକୁ ଯେପରି ସ୍ନେହ ଓ ଶ୍ରଦ୍ଧା କରୁଥିଲେ, ତାହା ଭୁଲି ହେବ ନାହିଁ । ବେଳେ ବେଳେ ରାଜୁବାବୁ ଏବଂ ଗୋପିବାବୁ ବଳ କଷାକଷି ହୁଅନ୍ତି । ଗୋଟାଏ ଲମ୍ବା ବାଡ଼ିର ଏକ ପାଖରେ ଗୋପିବାବୁ ଏବଂ ଆର ପାଖରେ ରାଜୁବାବୁ ଠେଲା ଠେଲି ହୁଅନ୍ତି । ଆମେ ମଜା



ଦେଖୁ । କିଏ ଜିତିବ ? କାହ୍ନୁ ବାବୁ ପିଣ୍ଡା ଉପରେ ବସି ହସନ୍ତି ଏବଂ ହାର୍‌ଜିତ୍ ଠିକ୍ କରନ୍ତି ।

ଏହାପରେ ଅନେକ ଦିନ ତାଙ୍କ ଦେଖା ହୋଇନାହିଁ । ୧୯୪୫ରେ ମୁଁ ଓକିଲାତି ଆରମ୍ଭ କଲି । ସେତେବେଳକୁ ଓକିଲ ମହଲରେ ରାଜୁବାବୁଙ୍କର ଚାରିଆଡ଼େ ନାଁ ଡାକ ଏବଂ ପ୍ରଶଂସା । ସେତେବେଳେ ସେ 'ସତକଥା' ମାନହାନି ମକଦ୍ଦମା ଚଳାଉଥିଲେ । ସେ ସମୟର ନାମଜାଦା ଓକିଲ 'ଭାଷାକୋଷ' ପ୍ରଣେତା ରାୟବାହାଦୂର ଗୋପାଳ ଚନ୍ଦ୍ର ପ୍ରହରାଜ, ନାରୀ ନେତ୍ରୀ ସରଳା ଦେବୀ ଏବଂ ଅନ୍ୟାନ୍ୟ ବହୁ ନାମଜାଦା ବ୍ୟକ୍ତିମାନଙ୍କୁ ରାଜୁବାବୁ ଜେରା କଲାବେଳେ କଟକ କଚେରୀ ଜନ-ଗହଳିରେ ଭରପୂର ହୋଇ ଯାଉଥିଲା । ସେତେବେଳେ ମୁଁ ଏବଂ ପ୍ରଜାସମାଜବାଦୀ ନେତା ଓକିଲ ଧ୍ରୁବଚରଣ ସାହୁ ପୁରୁଣା କଟକ ବାର୍ ଲାଇବ୍ରେରୀ (ବର୍ତ୍ତମାନର ସ୍ଲୋଫିକ୍ୟାଲ୍ ସୋସାଇଟି)ରେ ବସୁଥାଉ । ଠିକ୍ ଏଗାରଟା ବେଳକୁ ସୁଟ୍ ଟାଇ ପିନ୍ଧି ଗୋଟାଏ ବଙ୍କା ବେତଛଡ଼ି ଧରି ବୁଲେଇ ବୁଲେଇ ମୁହଁରେ ପାଇପ୍ ଲଗାଇ ବାରିଷ୍ଟର ଷ୍ଟାଇଲ୍‌ରେ ରାଜୁବାବୁ ଆସନ୍ତି । ଆମେ ତାଙ୍କୁ ଦେଖୁ । ତାଙ୍କଠାରୁ ବହୁତ ସିନିୟର ଓକିଲମାନେ ତାଙ୍କୁ କାହିଁକି କେଜାଣି ଡରନ୍ତି । ରାଜୁବାବୁ ଆସି ସିଧା ଯାଇ ହରିଆ କ୍ୟାଣ୍ଟିନ୍‌ରେ ବସନ୍ତି । ଆମେ ବି ଗଲେ ଆମକୁ ମିକ୍ସଚର ଓ ଚାହା ଦିଅନ୍ତି । ସମୟେ ସମୟେ ସ୍ୱନାମଧନ୍ୟ ଓକିଲ ଦୀନବନ୍ଧୁ ସାହୁ ମଧ୍ୟ ଆସି ବସନ୍ତି । ବହୁ ସମୟ ଧରି ବହୁ ବିତର୍କ ଚାଲେ ।

ପରେ କଟକ ବାର୍ ଆସୋସିଏସନ୍ ବର୍ତ୍ତମାନ ଯେଉଁଠି ଅଛି ସେଠିକି ଉଠି ଆସିଲା । ଏହି ନୂଆ ସ୍ଥାନରେ ରାଜୁବାବୁ ପୂରାପୂରି ଏକ ଭିନ୍ନ ମଣିଷ । ଢିଲା ପ୍ୟାଣ୍ଟ ଓ ସାର୍ଟ ପିନ୍ଧି ସେ ବାର୍ ଲାଇବ୍ରେରୀର ପୂର୍ବ ପଟେ ପାଣିଘର ପାଖରେ ବସନ୍ତି । ଆମେ ଯାଇ ତାଙ୍କ ପାଖରେ ବସୁ । ସେଠାରେ ବସି ସେ କ'ଣ ସବୁ ଲେଖନ୍ତି । ସେତେବେଳକୁ ତାଙ୍କର ଆଉ ସାହେବୀ ଠାଣି ନାହିଁ । ବେକରେ ମୋଟା ତୁଳସୀ ମାଳି । ଆମକୁ ଅନେକ ସମୟରେ ତନ୍ତ୍ର, ଭୂତ ଏବଂ ବେତାଳ ବିଷୟରେ କହନ୍ତି ।

ତାଙ୍କ ମନ ସେତେବେଳକୁ ତନ୍ତ୍ରାଭିମୁଖୀ । ସେତେବେଳକୁ ସେ ଖାନ୍‌ନଗର ଶ୍ମଶାନରେ ରହୁଥିବା ତାନ୍ତ୍ରିକ ବୀର ବାବାଙ୍କ ପାଖକୁ ଯାଉଥାନ୍ତି । ପରେ ମତେ ସେ ତନ୍ତ୍ର ବିଦ୍ୟାର ଅଭିଜ୍ଞତା ବିଷୟରେ କହିଛନ୍ତି । ସେ ତନ୍ତ୍ରବିଦ୍ୟାକୁ ବିଶ୍ୱାସ କରୁଥିଲେ । କିଛି ଦିନ ପରେ ରାଜୁବାବୁ ବାର୍ ଲାଇବ୍ରେରୀର ଉତ୍ତର-ପଶ୍ଚିମ କୋଣରେ ଥିବା ଟିକି ଘରେ ବସିଲେ । ଏ ପର୍ଯ୍ୟନ୍ତ ସେହି ରୁମ୍‌ର ନାଁ ହେଉଛି - ରାଜୁବାବୁଙ୍କ ରୁମ୍ । ସେଠାରେ ଭୂପେନ୍ ବାବୁ (ଭୂପେନ୍ ଘୋଷ), ଧ୍ରୁବଚରଣ ସାହୁ, ଶୈଳେନ୍ ଭଟ୍ଟାଚାର୍ଯ୍ୟ, ରାଜେନ୍ଦ୍ର ନାରାୟଣ ସାହୁ ଓ ତାଙ୍କର ଅନେକ ବନ୍ଧୁ ପ୍ରାୟ ବସନ୍ତି ।

ସେହି ରୁମ୍‌ରେ ବସି ରାଜୁବାବୁ ଶହଶହ ପୋଷ୍ଟକାର୍ଡ଼ ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ବିଚାରପତିଙ୍କ ଠାରୁ ଆରମ୍ଭ କରି ଛୋଟ ବଡ଼ ଅଫିସର ଓ ତାଙ୍କର ଅଗଣିତ ବନ୍ଧୁମାନଙ୍କୁ ସେମାନଙ୍କର ତ୍ରୁଟି ବିଚ୍ୟୁତି ବିଷୟରେ ଲେଖନ୍ତି ଏବଂ କୃତିର ପ୍ରଶଂସା ମଧ୍ୟ କରନ୍ତି । ସେମାନଙ୍କୁ ସାଧାରଣ ମଣିଷର ସମସ୍ୟା ବିଷୟରେ ଅବଗତ କରାନ୍ତି ଏବଂ ସମାଧାନର ସୂଚନା ମଧ୍ୟ ଦିଅନ୍ତି । ତାଙ୍କର ନିର୍ଭିକ ମତାମତ ପାଇଁ ଅନେକେ ତାଙ୍କୁ ଡରନ୍ତି ଏବଂ ଦୂରେଇ ରହନ୍ତି ।

ରାଜୁବାବୁ କିନ୍ତୁ କାହା ଦୁଆରକୁ ଯାଇ କିଛି ମାଗିବାର ବା ନିଜର ପ୍ରଚାର କରିବାର ମୁଁ ଦେଖି ନାହିଁ କି ଶୁଣି ନାହିଁ । ବରଂ ସେ କୌଣସି ପଦପଦବୀ ପ୍ରତି ବିତସ୍ପୃହ । କାହାରିକୁ ଖୋସାମତ କରିବା, କାହା ପାଖରେ ଠିଆ ହେବା ବା ନିଜର ଡିଣ୍ଡିମ ବଜାଇବାକୁ ସେ ଘୃଣା କରନ୍ତି । ମୁଁ ତାଙ୍କୁ କେବେ ଦୁଃଖରେ ଉଦ୍‌ବିଗ୍ନ ହେବା ବା ମଉଳି ପଡ଼ିବା ଦେଖି ନାହିଁ । ଜୀବନରେ ସବୁ ଭୋଗ କରି ମଧ୍ୟ ସେ ଅନାସକ୍ତ । ସେ ଥିଲେ ସ୍ଥିତପ୍ରଜ୍ଞ ।

ସବୁବେଳେ ସେ ଅନ୍ୟଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ । ଜୋତା ସିଲେଇରୁ ଚଣ୍ଡୀପାଠ ଯାଏ ତାଙ୍କ ସହିତ କଥାବାର୍ତ୍ତା ହୁଏ । ଥରେ ମୁଁ ତାଙ୍କୁ ଲେଖକ ହେବାର ଉପାୟ କ'ଣ ବୋଲି ପଚାରିଲି, ସେ ହସିଲେ, ତା'ପରେ କହିଲେ, 'ଆପଣ ଗୋଟିଏ କଥା ମନେ ରଖନ୍ତୁ, ଏ ପୃଥିବୀରେ ସବୁ ସମୟରେ ବିଭିନ୍ନ ଚିନ୍ତାଧାରା ଶୂନ୍ୟରେ ଉଡ଼ି ବୁଲୁଚି । ସେ ସବୁ ମଣିଷ ମନକୁ ଛୁଇଁ ଯାଉଛି । ମଣିଷ ଅନେକ ଉଚ୍ଚ ଚିନ୍ତା କରୁଛି । ମାତ୍ର ସେ ସବୁ ଲେଖିବାକୁ ସେ ଅକ୍ଷମ ହେଉଛି । କାରଣ ଯେତେ ଶୀଘ୍ର ଚିନ୍ତାଧାରା ତା'ର ମୁଣ୍ଡକୁ ଆସୁଛି, ସେତେ ଶୀଘ୍ର ତାର କଲମ ଚାଲି ପାରୁ ନାହିଁ ଇଚ୍ଛାଶକ୍ତିର ଅଭାବରୁ । ଏଣୁ ଲେଖକ ହେବାକୁ ହେଲେ ପ୍ରଥମେ ଲେଖିବା ଅଭ୍ୟାସ କରିବା ଦରକାର । ସବୁବେଳେ ଯାହା ମନକୁ ଆସୁଛି ଲେଖିବାର ଅଭ୍ୟାସ କରିବା ଦ୍ୱାରା ଧୀରେ ଧୀରେ ଚିନ୍ତାଧାରା ବିକ୍ଷିପ୍ତ ନ ହୋଇ ଗୋଟାଏ ବାଟରେ ପଡ଼ିଯିବ । ତା'ପରେ ତୁମ ଅନୁଭୂତିର ଛାପ ତୁମ ଲେଖାରେ ପରିସ୍ଫୁଟ ହେବ ।'

ରାଜୁବାବୁ ମତେ ଓ ମୋର ବନ୍ଧୁ ଶ୍ୟାମବାବୁଙ୍କୁ ଭାରି ଭଲପାଉଥିଲେ । ତାଙ୍କ ପରେ ତାଙ୍କରି ପରେ ଜଣେ ସ୍ଥିତପ୍ରଜ୍ଞ ସ୍ନେହୀ ଲୋକ କେଜାଣି ଏ ଜୀବନରେ ଆମକୁ ଆଉ ମିଳିବ କି ନାହିଁ ।

ଆଡ୍‌ଭୋକେଟ୍,
ବଙ୍ଗାଳୀ ସାହି, କଟକ-୯

■



# ନମସ୍ୟ ବ୍ୟକ୍ତିତ୍ୱ

ସାଧ୍ୱୀ ଚିନ୍ମୟୀ

ସେ କେବଳ ବଳିଷ୍ଠ ସାହିତ୍ୟିକ-ବ୍ୟକ୍ତିତ୍ୱ ନୁହଁନ୍ତି, ସେ ବୁଦ୍ଧିଦୀପ୍ତ ଅସାମାନ୍ୟ ଚରିତ୍ର ମଧ୍ୟ । ତାଙ୍କର କହିବା ଓ କରିବା ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା । ସମସାମୟିକ ବୁଦ୍ଧିଜୀବୀମାନଙ୍କ ପରି ସେ ଛଳନା କରୁନଥିଲେ । ନିଜର ମତାମତ ସେ ସ୍ପଷ୍ଟ ଓ ନିର୍ଭୀକ ଭାବରେ ହାନିଲାଭ ବିଚାର ନକରି ପ୍ରକାଶ କରି ଦେଉଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ମାତ୍ର ଏକ ସପ୍ତାହ ପରେ ତାଙ୍କର ପ୍ରଥମ ଉପନ୍ୟାସ ସିନ୍ଦୁରଗାର ପ୍ରକାଶ ପାଏ । ସେ ଲେଖନ୍ତି ଏବଂ ଉଚ୍ଚକୋଟୀର ଲେଖା ଲେଖି କରି ପାରିବେ, ଏହା ପ୍ରମାଣ ଦେବା ପାଇଁ ସେ ୧୯୩୪ରୁ ୧୯୯୭, ଏହି ଦୀର୍ଘ ସମୟ ଅବଧି ଲେଖି ଚାଲିଲେ। ତାଙ୍କର ବଳିଷ୍ଠ କୃତିକୁ ସମସାମୟିକ ସମାଜ ଯଥାର୍ଥ ସ୍ୱୀକୃତି ଦେଇ ପାରିଲା ନାହିଁ । ୧୯୬୪ ଡଗର ମାସିକ ପତ୍ରିକାରେ 'ମୁଁ କାହିଁକି ଲେଖେ' ଶିରୋନାମାରେ ସେ ଲେଖିଛନ୍ତି ଯେ "ଓଡ଼ିଶା ଶାଖା ଅଲ୍ ଇଣ୍ଡିଆ ରେଡ଼ିଓର ସାହିତ୍ୟିକ ତାଲିକା ଭିତରୁ ବାଦ ପଡ଼ିଛୁ । ସରକାରୀ ଲେଖକ ଓ ପ୍ରକାଶକ ତାଲିକାରୁ ବାଦ୍ ପଡ଼ିଛୁଁ । ପାଠକମାନଙ୍କର ପ୍ରିୟ ସାହିତ୍ୟିକ ଶ୍ରେଣୀରୁ କଟି ଯାଇଛୁ ।"

ବାସ୍ତବରେ ରାଜୁବାବୁ ଜଣେ ବିଶୁଦ୍ଧ ହେତୁବାଦୀ ଅନନ୍ୟ ବ୍ୟକ୍ତିତ୍ୱ । ଅଗଣିତ 'ହଁ ଜୀ'ଙ୍କ ସୁଅ ମଧ୍ୟରେ ଭାସିଯିବା କି ସୁବିଧା ହାସଲ ପାଇଁ ନିଜର ମତର ପରିବର୍ତ୍ତନ କରିବା ତାଙ୍କର ପ୍ରକୃତିଗତ ନଥିଲା । ସୁଅର ପ୍ରତିକୂଳରେ ଏକାକୀ ଦମ୍ଭ ଓ ସାହସର ସହିତ ସନ୍ତରଣ କରିଛନ୍ତି ସେ । ପ୍ରକୃତିର ସ୍ୱାଭାବିକ ଧାରାରେ ସେହି ସଂଗ୍ରାମୀ ବ୍ୟକ୍ତିତ୍ୱ ସବୁଦିନ ପାଇଁ ନୀରବ ନିଥର ହୋଇଗଲା ।

ଜୀବନର ଅପରାହ୍ନରେ ସେ ପ୍ରତିଦିନ ପୋଷ୍ଟକାର୍ଡରେ ଚିଠି ଲେଖୁଥିଲେ । ସମସାମୟିକ ସମାଜର ବିଭିନ୍ନ ସ୍ତରର ବନ୍ଧୁମାନଙ୍କୁ ସମ୍ମାନର ସହିତ ସରଳଭାଷାରେ ସେ ଚିଠି ଲେଖନ୍ତି । ଏଥିରେ ବ୍ୟକ୍ତିଗତ ବିଷୟର ସୂଚନା ସ୍ୱଳ୍ପ ମାତ୍ର ସମ୍ପୃକ୍ତ ସମସ୍ୟା ଉପରେ ତାଙ୍କର ଦୃଷ୍ଟିଭଙ୍ଗୀ ସେ ନିର୍ଭୀକ ଭାବରେ ସରଳ ଭାଷାରେ ସଂକ୍ଷିପ୍ତରେ ପ୍ରକାଶ କରନ୍ତି । ସାମ୍ବାଦିକତାର ଜନ-ସଂପର୍କ ଏବଂ ସମସ୍ୟା ସମ୍ପର୍କରେ ସୂଚନା ଦେବାର କାର୍ଯ୍ୟକ୍ରମ ସେ ଏକାକୀ ସାଧ୍ୟମତେ ତୁଲାଇ ଯାଇଛନ୍ତି । ଏହା ଫଳପ୍ରଦ ଭାବରେ ରାଜନୀତିଜ୍ଞ, ପ୍ରଶାସକ, ସାହିତ୍ୟିକମାନଙ୍କୁ ପ୍ରଭାବିତ କରିଛି । ଏହିପରି ଭାବରେ ସାହସର ସହିତ ଜୀବନ ଯାପନ କରି ଯାଇଥିବା ବରେଣ୍ୟ ସାରସ୍ୱତ ପ୍ରତିଭା ରାଜକିଶୋର ପଟ୍ଟନାୟକ ହେଉଛନ୍ତି ନମସ୍ୟ ବ୍ୟକ୍ତିତ୍ୱ ।

ଗୋପାଳଜୀ ଲେନ୍, କଟକ-୯